# ଆମ
# ପର୍ବ ପର୍ବାଣି

ଭଗବାନ ମହାନ୍ତି



ଓଡ଼ିଆ ସାହିତ୍ୟ ଏକାଡେମୀର ଅନୁଦାନରେ ପ୍ରକାଶିତ

# ଆମ ପର୍ବପର୍ବାଣି : ଏକ ସାହିତ୍ୟିକ ଆଲୋଚନା

## (OUR FESTIVALS : A LITERARY TREATISE)

ପ୍ରଥମ ଭାଗ—ଚୈତ୍ର ଠାରୁ ଭାଦ୍ରବ
ଦ୍ୱିତୀୟ ଭାଗ—ଆଶ୍ୱିନ ଠାରୁ ଫାଲ୍‌ଗୁନ

1st Part—From Chaitra to Bhadrapada
2nd Part—From Aswina to Phalguna

ଲେଖକ :—
ଶ୍ରୀ ଭଗବାନ ମହାନ୍ତି, ଏମ୍. ଏ.; ବି. ଇଡ.,
ଶିକ୍ଷକ, କ୍ୟାପିଟାଲ ହାଇସ୍କୁଲ
ୟୁନିଟ-୩ ( ଭୁବନେଶ୍ୱର )

ଲେଖକ ଓ ପ୍ରକାଶକ :
**ଶ୍ରୀ ଭଗବାନ ମହାନ୍ତି**
ଏମ୍. ଏ., ବି. ଇଡ଼୍
( ରାଜ୍ୟ ପୁରସ୍କାର ପ୍ରାପ୍ତ )
ଗ୍ରାମ ଓ ପୋ:—ବାଲକାଟୀ
ଜିଲ୍ଲା—ପୁରୀ

ମୁଖ୍ୟ ପରିବେଷକ :
**ଶ୍ରୀ ବିପ୍ରଚରଣ ଦାଶ**
କ୍ୟାପିଟାଲ ଷ୍ଟୁଡେଣ୍ଟ ଷ୍ଟୋର
୧୪୫ ଅଶୋକ ନଗର
ଭୁବନେଶ୍ୱର-୯

ମୁଦ୍ରାକର :
**ଶ୍ରୀ ପ୍ରତାପ କୁମାର ଦାସ**
ବ୍ରଜେନ୍ଦ୍ର ପ୍ରେସ, କାଜିବଜାର
କଟକ-୧

ପ୍ରଚ୍ଛଦପଟ :
**ଶ୍ରୀ ଅସିତ ମୁଖାର୍ଜି**

ସହଯୋଗୀ ପ୍ରକାଶକ :
**ଶ୍ରୀ ସୁଦର୍ଶନ ମହାନ୍ତି**
ଲକ୍ଷ୍ମୀ ଆର୍ଟ ଓ୍ୱାର୍କସ୍
ବଲାଙ୍ଗୀର

ପ୍ରଥମ ମୁଦ୍ରଣ—**୧୯୭୯**

ମୂଲ୍ୟ:—୧୮ ଟଙ୍କା

ସାହିତ୍ୟ ଏକାଡେମୀ ସାହାଯ୍ୟ ହେତୁ
ହ୍ରାସପ୍ରାପ୍ତ ବିକ୍ରୟ **ମୂଲ୍ୟ ୧୫ ଟଙ୍କା**
ବନ୍ଧେଇସହ ବିକ୍ରୟ **ମୂଲ୍ୟ ୧୭ ଟଙ୍କା**

Writer & Publisher:
**Bhagaban Mohanty**
M.A., B. ED
( Recipient of State Award )
At : & P. O.—Balkati
Dist - Puri

Chief Distributor :
**Bipra Charan Dash**
Capital Student Store
145 Ashok Nagar
Bhubaneswar

Printer :
**Sri Pratap Kumar Das**
Brajendra Press, Kajibazar
Cuttack-1

Cover Design
**Sri Asit Mukherjee**

Associate Publisher :
**Sri Sudarsan Mohanty**
Lakshmi Art Works
Balangir

First Edition—**1979**

Price—R 18/ -

Reduction Price for Grant
of O. S. Academy Rs **15/**
With Binding Rs **17/**

# ଅଭିମତ

ଭାରତୀୟ ଜୀବନଧାରାରେ ଧର୍ମଭାବର ପ୍ରଭାବ ଅତ୍ୟନ୍ତ ଗଭୀର ଓ ବ୍ୟାପକ । ଯୁଗ ଯୁଗ ଧରି ଏ ଦେଶର ରାଜନୈତିକ ଓ ସାମାଜିକ ଜୀବନପ୍ରବାହରେ ବହୁ ଝଡ଼ଝଞ୍ଜା ପ୍ରବାହିତ ହୋଇ ଆସୁଥିଲେ ହେଁ ଜାତି ଓ ବ୍ୟକ୍ତିର ଜୀବନ ଆଭି-ମୁଖ୍ୟରେ ଧର୍ମଭାବ ତା'ର ଅମଳିନ ଦୀପ୍ତି କେବେ ହରାଇ ଦେଇଥିବାର ପରିଲକ୍ଷିତ ହୁଏ ନାହିଁ । ଧର୍ମଭାବ ହିଁ ଭାରତୀୟ ଜୀବନବୋଧର ସାର୍ଥକ ପରିଚୟ ପ୍ରଦାନ କରିଥାଏ ମାତ୍ର ।

ଜାତି, ସମାଜ ଅଥବା ବ୍ୟକ୍ତିର ଜୀବନଧାରାରେ ଅନୁଷ୍ଠିତ ଓ ପ୍ରତିପାଳିତ ବିଭିନ୍ନ ଯାନିଯାତ୍ରା, ଉତ୍ସବ, ପର୍ବପର୍ବାଣି ଅଥବା ବ୍ରତ ଉପବାସ (ଉପାସ) ଅନୁଧ୍ୟାନ କଲେ ଗଣଜୀବନ ଉପରେ ଧର୍ମଭାବର ସୁଦୂରପ୍ରସାରୀ ପ୍ରଭାବ ଆମେ ସ୍ପଷ୍ଟ ଅନୁଭବ କରିପାରିବୁ । ଜାତିର ଏହି ପାରମ୍ପରିକ ଜୀବନ-ଧାରା-ଧର୍ମ-ବୋଧର ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇ ସମଗ୍ର ଜାତି ଓ ସମାଜକୁ ଅଧିକ ବଳିଷ୍ଠ, ଅଧିକ ପ୍ରାଣବନ୍ତ ଓ ଅଧିକ ସୌନ୍ଦର୍ଯ୍ୟସମନ୍ୱିତ କରି ତୋଳିବାରେ ସମର୍ଥ ହୋଇଅଛି କହିଲେ ଚଳେ ।

ଗତ ଶତାବ୍ଦୀର ଆଦ୍ୟଭାଗରୁ ଦେଶରେ ପାଶ୍ଚାତ୍ୟ ଶିକ୍ଷାର ପ୍ରସାର ଫଳରେ ଗୋଟିଏ ନୂତନ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ଅଭ୍ୟୁଦୟ ଲାଭ କରିଥିଲା । ବିଦେଶୀ ଶାସକର ଶାସନଗତ ସୁବିଧା ପାଇଁ ଏହି ଶିକ୍ଷିତଶ୍ରେଣୀକୁ ନେଇ ସମସ୍ତ-କ୍ରମେ ଦେଶରେ ବିଭିନ୍ନ ସହର ମଧ୍ୟ ଗଢ଼ିଉଠିବାରେ ଲାଗିଲା । ସହରଜୀବନ ବହୁ ଦିଗରୁ ଲୋଭନୀୟ ଓ ଆକର୍ଷଣୀୟ ହୋଇଥିବାରୁ ଗ୍ରାମ୍ୟଜୀବନ ଏହା ପ୍ରତି ଆକୃଷ୍ଟ ହେବା ଏକାନ୍ତ ସ୍ୱାଭାବିକ । ଫଳରେ ଗ୍ରାମ୍ୟଜୀବନ ଉପେକ୍ଷିତ ହେବାକୁ ବାଧ୍ୟ ହେଲା । ଦେଶରେ ପାରମ୍ପରିକ ଜୀବନଧାରାରେ ଯାହା ଥିଲା ଏକାନ୍ତ ସୌନ୍ଦର୍ଯ୍ୟ-ପୂର୍ଣ୍ଣ, ଆଧୁନିକ ଯୁଗରେ ଏକ ନୂତନ ସହରଜୀବନର ଅଭ୍ୟୁଦୟ ହେତୁ ସେହି ସୌନ୍ଦର୍ଯ୍ୟପୂର୍ଣ୍ଣ ଜୀବନବୋଧ କ୍ରମଶଃ ଅନାଦୃତ ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ଜାତିର ଅତୀତ ପରମ୍ପରାରେ ଅନୁଷ୍ଠିତ ଯାନିଯାତ୍ରା, ପର୍ବପର୍ବାଣି ଅଥବା ବ୍ରତ ଉପବାସ ଆଦିର ସାମାଜିକ ଜୀବନରେ ତାର ପୂର୍ବ ଔଜ୍ଜ୍ୱଲ୍ୟ ଅକ୍ଷତଭାବେ ସଂରକ୍ଷଣ କରିପାରିଛି ବୋଲି ମନରେ ପୂର୍ଣ୍ଣ ବିଶ୍ୱାସ ହୁଏ ନାହିଁ ।

ଆଧୁନିକ ଜୀବନଧାରା ନିକଟରେ, ଅତୀତ ପରମ୍ପରାର ପର୍ବପର୍ବାଣି ଏକ ଇତିହାସର ବିଷୟବସ୍ତୁ ରୂପେ ଆଜି ବିବେଚିତ । ବର୍ତ୍ତମାନର ଜୀବନପ୍ରଣାଳୀରେ ଧର୍ମଭିତ୍ତିକ ପର୍ବପର୍ବାଣିର ସ୍ଥାନ ନ୍ୟୁନ ନ ହେଲେହେଁ ସେହି ପର୍ବପର୍ବାଣିଗୁଡ଼ିକ

ଉପରେ ଆମ୍ଭମାନଙ୍କର ଜ୍ଞାନ ଅତ୍ୟନ୍ତ ସୀମିତ । ପର୍ବପର୍ବାଣିର ଅନୁସରଣ ସଙ୍ଗେ ସଙ୍ଗେ ସେଗୁଡ଼ିକର ବିକାଶ ଇତିହାସ ଅନୁଷ୍ଠାନ କରିବା ଯେ ଏକ ଅପରିହାର୍ଯ୍ୟ ଆବଶ୍ୟକତା; ଏ ବିଷୟ ପ୍ରତି ଆମେ କେବେ ସଚେତନ ହୋଇଛୁ ବୋଲି ମନେ ହୁଏ ନାହିଁ ।

ଦେଶର ପ୍ରଚଳିତ ପର୍ବପର୍ବାଣିର ଆଲୋଚନା ମାଧ୍ୟମରେ ଯେଉଁମାନେ ଜାତିର ଅତୀତ ଆଧ୍ୟାତ୍ମିକ ଜୀବନ ଅବବୋଧ ଦିଗରେ କିଛି କିଛି ଚେଷ୍ଟା କରି ଆସୁଛନ୍ତି ସେମାନେ ଏ ଜାତିର ଯେ ନମସ୍ୟ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏ କ୍ଷେତ୍ରରେ ଶ୍ରୀ ଭଗବାନ ମହାନ୍ତିଙ୍କ ରଚିତ 'ଆମ ପର୍ବପର୍ବାଣି' ପୁସ୍ତକ କେବଳ ଗତାନୁଗତିକ ଏକ ପ୍ରଚେଷ୍ଟା ନୁହେଁ, ବହୁ ଦିଗରୁ ଏହା ଏକାନ୍ତ ଅଭିନନ୍ଦନୀୟ ମଧ୍ୟ ।

ବର୍ଷକ ବାର ମାସରେ ଅନୁଷ୍ଠିତ ବିଭିନ୍ନ ପର୍ବପର୍ବାଣି ମଧ୍ୟରୁ କେତୋଟି ବିଶିଷ୍ଟ ପର୍ବପର୍ବାଣିକୁ ନିର୍ବାଚନ କରି ଲେଖକ ସେଗୁଡ଼ିକର ସବିଶେଷ ପରିଚୟ ଦେବାରେ ଯତ୍ନଶୀଳ ହୋଇଛନ୍ତି । ପ୍ରତ୍ୟେକ ବ୍ରତ ଉପବାସ, ଯାନିଯାତ୍ରା, ଉତ୍ସବ, ପର୍ବପର୍ବାଣିର ଆଏ ଦୁଇଟି ଦିଗ, ଯଥା :—ତାର ଉତ୍ପତ୍ତିର ଇତିହାସ ବା ଇତିବୃତ୍ତି ଓ ତାର ପାଳନବିଧି । ଲେଖକ ପ୍ରତ୍ୟେକ ପର୍ବପର୍ବାଣିର ଆଲୋଚନା ପ୍ରସଙ୍ଗରେ ଏଇ ଉଭୟ ଦିଗ ପ୍ରତି ଗୁରୁତ୍ୱ ଦେଇଥିବାରୁ ସେଇ ପର୍ବପର୍ବାଣି ଗୁଡ଼ିକର ପୂର୍ଣ୍ଣଚିତ୍ର ଆମକୁ ପରିବେଷଣ କରିବାରେ ସେ ସମର୍ଥ ହୋଇଛନ୍ତି । ବିଶେଷତଃ ଆଲୋଚନାର ଭାଷା ଅତ୍ୟନ୍ତ ସୁଖପାଠ୍ୟ ହୋଇଥିବାରୁ ସବୁ ଶ୍ରେଣୀର ପାଠକ ପାଠିକାମାନଙ୍କ ନିକଟରେ ଏହା ସମଧିକ ଆଦୃତ ହେବାର ସମ୍ଭାବନା ମଧ୍ୟ ଅଛି । ପ୍ରତ୍ୟେକ ପର୍ବପର୍ବାଣିର ଆଦି ଇତିହାସ ଉନ୍ମୋଚନ କଲାବେଳେ ସେ ଯେପରି ବିଭିନ୍ନ ପୁରାଣ, ଇତିହାସ, କିମ୍ବଦନ୍ତୀ ଓ ବହୁ ଶାସ୍ତ୍ରର ଉପାଦାନ ଅନୁସନ୍ଧାନର ପରିଚୟ ଦେଇଛନ୍ତି ତାହା ଏ ଦେଶର ସାଧାରଣ ପାଠକ ତଥା ଗମ୍ଭୀର ସମାଲୋଚକମାନଙ୍କୁ ବିଶେଷ ମାନସିକ ଖାଦ୍ୟ ପରିବେଷଣ କରିବା ସଙ୍ଗେ ସଙ୍ଗେ ୯ ଦିଗରେ ଅଧିକ ଅଗ୍ରସର ହେବାରେ ଯେ ଉତ୍ସାହିତ କରିବ ଏଥିରେ ଆଦୌ ସନ୍ଦେହ ନାହିଁ ।

ଲେଖକଙ୍କ ଅଧ୍ୟୟନର ଗଭୀରତା ଓ ଅନୁଧ୍ୟାନର ଆନ୍ତରିକତା ଏ ଦେଶବାସୀଙ୍କ ନିକଟରେ ସ୍ୱୀକୃତ ଓ ସମ୍ମାନିତ ହେବ ବୋଲି ଆମର ପୂର୍ଣ୍ଣ ବିଶ୍ୱାସ ।

ମହାଳୟା }
୨୧-୯-୬୯ } ନଟବର ସାମନ୍ତରାୟ
ଭୁବନେଶ୍ୱର

**ଉତ୍କଳର ଅନ୍ୟତମ ଶ୍ରେଷ୍ଠ ଗାଳ୍ପିକ ତଥା ସାହିତ୍ୟିକ ଶ୍ରୀଯୁକ୍ତ ବସନ୍ତକୁମାର ଶତପଥୀଙ୍କ ପ୍ରଥମ ଖଣ୍ଡ ଉପରେ ସମୀକ୍ଷଣ ମନ୍ତବ୍ୟ—**

ଚୈତ୍ର ଠାରୁ ଆରମ୍ଭ କରି ଭାଦ୍ର ପର୍ଯ୍ୟନ୍ତ ୬ ମାସରେ ପଡ଼ୁଥିବା ୧୬ଟି ପ୍ରସିଦ୍ଧ ଲୋକପ୍ରିୟ ଭାରତୀୟ ପର୍ବପର୍ବାଣୀ ଉପରେ ଆଧାରିତ ପାଣ୍ଡୁଲିପି ପ୍ରସ୍ତୁତ ହୋଇଛି । ଏଥିମଧ୍ୟରୁ ଅନ୍ତତଃ ୫ଟି ପ୍ରବନ୍ଧ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ହୋଇ ସାରିଛି । ପର୍ବପର୍ବାଣୀର ପାଳନବିଧି ଉପରେ ସେତେ ଗୁରୁତ୍ୱ ନ ଦେଇ ସେଗୁଡ଼ିକର ପୌରାଣିକ ଓ ଐତିହାସିକ ଭିତ୍ତିଭୂମି ଉପରେ ସମ୍ୟକ୍ ଦୃଷ୍ଟି ଲେଖକ ଦେଇଛନ୍ତି । ପର୍ବପର୍ବାଣୀ ଗୁଡ଼ିକ କ୍ରମାନୁସାରେ ସଜ୍ଜା ହୋଇଛି । ପ୍ରବାଦ, କିମ୍ବଦନ୍ତୀ, ଲୋକକଥାରୁ ଆରମ୍ଭକରି ଶାସ୍ତ୍ରପୁରାଣର ପ୍ରମାଣ ଦେଇ ପ୍ରବନ୍ଧଗୁଡ଼ିକ ଉପଯୁକ୍ତ ଶୈଳୀରେ ସୁଖପାଠ୍ୟ ଓ ଚିତ୍ତାକର୍ଷକ କରାଯାଇଛି । ପ୍ରବନ୍ଧ ଗୁଡ଼ିକ ପାଠପରେ ଲେଖକଙ୍କର ନିଷ୍ଠା, ଆନ୍ତରିକତା ଓ ଗବେଷଣାପ୍ରବଣ ମାନସର ପରିଚୟ ମିଳେ । ପ୍ରକାଶିତ ହେଲେ ପୁସ୍ତକଟି ନିଶ୍ଚୟ ସର୍ବଜନାଦୃତ ହେବ ଏବଂ ପର୍ବପର୍ବାଣିର ସାମାଜିକତା ଓ ନୈତିକତାର ମୂଲ୍ୟାୟନ କରିବା ସଙ୍ଗେ ସଙ୍ଗେ ପ୍ରବନ୍ଧଗୁଡ଼ିକର ସାହିତ୍ୟିକ ମୂଲ୍ୟବୋଧ ଉପଲବ୍ଧି କରିହେବ । ଆମର ଜାତୀୟ ସଂସ୍କୃତି ଓ ପରମ୍ପରା ଏହି ପର୍ବପର୍ବାଣୀ ଜରିଆରେ ସୁନ୍ଦର ରୂପେ ପ୍ରବର୍ତ୍ତିତ ହୋଇ ପାଠକକୁ ଚମତ୍କୃତ କରିବ । ନାନା ଦୃଷ୍ଟିରୁ ପାଣ୍ଡୁଲିପି ସୁଖପାଠ୍ୟ ଓ ଉପାଦେୟ ହୋଇଛି ।

**ପଣ୍ଡିତ ଶ୍ରୀ ରଘୁନାଥ ମିଶ୍ର, ସମ୍ପାଦକ,**

'ଯୁଗବାଣୀ' ରାଉରକେଲା-୪

'ଆମ ପର୍ବପର୍ବାଣୀ : ଏକ ସାହିତ୍ୟିକ ଆଲୋଚନା' ଏକ ଅନନ୍ୟ ଉପାଦେୟ, ବହୁ ଆବଶ୍ୟକ ଅନୁଭୂତ ପୁସ୍ତକ । × × ବର୍ଷର ବାରମାସଯାକର ସମସ୍ତ ପର୍ବ-ପର୍ବାଣିର ବିଶେଷ ବର୍ଣ୍ଣନା ଏଥିରେ ରହିଛି । ପ୍ରତ୍ୟେକ ପର୍ବର ଐତିହାସିକ, ବୈଜ୍ଞାନିକ ତଥା ତାତ୍ତ୍ୱିକ ପୃଷ୍ଠଭୂମି, ସମ୍ପର୍କିତ କମ୍ବଦନ୍ତୀ, ପ୍ରଚଳିତ ଗୀତମାଳା, ପୌରାଣିକ ତତ୍ତ୍ୱ ଓ ନିର୍ଦ୍ଦେଶନା ସହିତ ସରଳ, ସାବଲୀଳ! ରୁଚିକର ଭାଷାରେ ଲିଖିତ। ଏହି ପୁସ୍ତକଟି କେବଳ ତ ଆମ ସମାଜକୁ ଆମ ସଂସ୍କୃତି ବିଷୟରେ ପ୍ରେରଣା ଦେବନାହିଁ, ଏହା ଆମକୁ ଅନୁପ୍ରାଣିତ ଓ ପ୍ରଭାବିତ କଲାଭଳି ବହୁ ଉପାଦେୟ ତଥ୍ୟ ବହନ କରିଛି । ଲେଖକ ବହୁକାଳବ୍ୟାପୀ କମ୍ ସାଧନା କରି ନ ଥିବେ । × × ଲେଖକ ଏହି ବହିଟି ରଚନା କରି ସବୁ ପର୍ବର ପୁଣ୍ୟଫଳ ପାଇବେ ।

('ଯୁଗବାଣୀ'-ପୁସ୍ତକ ସମୀକ୍ଷା ପୃଷ୍ଠାରୁ)

**ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ** ଏମ୍. ଏ, (ସଂସ୍କୃତ, ଓଡ଼ିଆ) ସାହିତ୍ୟ ଶାସ୍ତ୍ରୀ, ସମ୍ପାଦକ, ସାଂସ୍କୃତିକ ବ୍ୟାପାର ବିଭାଗ, ଓଡ଼ିଶା ।

ପ୍ରତି ଜାତିର ପର୍ବପର୍ବାଣୀ ଭିତରେ ଥିବା ଏକାତ୍ମାନୁଭୂତି ହିଁ ଜାତିକୁ ଏକତାସୂତ୍ରରେ ବାନ୍ଧି ରଖିଛି । ତେଣୁ ସେହି ଏକାତ୍ମାନୁଭୂତି ବା ଅସ୍ମିତାରୁ ହିଁ ଜାତିର ଚରିତ୍ର, ଐତିହ୍ୟ ଓ ପରମ୍ପରା ଅବଗତ କରାଯାଏ । ଦେଶୀୟ ଓଷା, ବ୍ରତ, ପର୍ବପର୍ବାଣୀ ଗୁଡ଼ିକୁ ଧାର୍ମିକ, ସାହିତ୍ୟିକ, ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମିରୁ ଓ ବୈଜ୍ଞାନିକ ଦୃଷ୍ଟିକୋଣରୁ ଦକ୍ଷତାର ସହ ଆମ ପର୍ବପର୍ବାଣୀ : ଏକ ସାହିତ୍ୟିକ ଆଲୋଚନାରେ ବିସ୍ତାର କରିଛନ୍ତି ଲେଖକ । ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଇତିହାସ ଅଧ୍ୟୟନରେ ଲେଖକଙ୍କର ଏହି କୃତିଟି ଯେ ନିଶ୍ଚିତ ଭାବରେ ସହାୟକ ।

**ଅଧ୍ୟାପକ ଧରଣୀଧର ପାଣିଗ୍ରାହୀ,** ଏମ୍. ଏ.

ବି. ଜେ, ବି. କଲେଜ, ଭୁବନେଶ୍ୱର ।

ପର୍ବପର୍ବାଣୀ ଓ ଯାନଯାତ୍ରା ଆମ ସାମାଜିକ ଜୀବନ ଓ ସଂସ୍କୃତିର ଏକ ପ୍ରଧାନ ଅଙ୍ଗ । 'ଆମ ପର୍ବପର୍ବାଣୀ ଏକ ସାହିତ୍ୟିକ ଆଲୋଚନା' ପୁସ୍ତକ ଲେଖକ କେତୋଟି ବିଶିଷ୍ଟ ପର୍ବପର୍ବାଣୀର ବିସ୍ତୃତ ଇତିହାସ ଉନ୍ମୋଚନ କରି ଆମର ଯେ ଏକ ବଡ଼ ଅଭାବ ପୂରଣ କରିପାରିଛନ୍ତି ସାଧାରଣ ପାଠକ ଏ ଗବେଷକ ନିଶ୍ଚୟ ସ୍ୱୀକାର କରିବେ । ଶ୍ରୀ ମହାନ୍ତିଙ୍କର ଏହା ଏକ ସାର୍ଥକ ସୃଷ୍ଟି । ଗଭୀର ଅଧ୍ୟୟନ ଓ ଗବେଷଣାପ୍ରସୂତ ତାଙ୍କର ଏହି ମୂଲ୍ୟବାନ୍ ଅବଦାନ ଅଭିନନ୍ଦନୀୟ ।

---

# ଆତ୍ମକଥନ

ଭାରତୀୟ ବର୍ଷପଞ୍ଜି ବିଭିନ୍ନ ପର୍ବପର୍ବାଣିର ଏକ ବିଚିତ୍ର ଲମ୍ବମାନ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରା । କାଶ୍ମୀରରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ସମସ୍ତେ ଏହି ବର୍ଣ୍ଣିଳ ଶୋଭା-ଯାତ୍ରାରେ ଜଣେ ଜଣେ ଅଂଶଗ୍ରହୀତା । ସେଥିରୁ କେବଳ ହିନ୍ଦୁ ପର୍ବପର୍ବାଣି ଓ ଅଳ୍ପ କେତୋଟି ଓଷା ବ୍ରତ ଉପରେ ଏ ପୁସ୍ତକରେ ଯତ୍‌ସାମାନ୍ୟ ଆଲୋକପାତ କରାଯାଇଅଛି । କେବଳ ଲୋକପ୍ରିୟ ତଥା ସର୍ବଭାରତୀୟ ପର୍ବଗୁଡ଼ିକର କେତେକ ସାହିତ୍ୟିକ ଆଲୋଚନା ଏ ପୁସ୍ତକରେ ସ୍ଥାନ ପାଇଛି । ପର୍ବପର୍ବାଣିର ପାଳନବିଧି ଉପରେ ବିଶେଷ ଗୁରୁତ୍ୱ ନ ଦେଇ ମୁଁ ସେଗୁଡ଼ିକର ପୌରାଣିକ, ଐତିହାସିକ ତଥା ବୈଜ୍ଞାନିକ ପୃଷ୍ଠଭୂମି ଉପରେ ଯତ୍‌କିଞ୍ଚିତ୍ ଆଲୋଚନା କରିବାକୁ ଚେଷ୍ଟା କରିଛି । ଏଣୁ ବିଭିନ୍ନ ସାହିତ୍ୟିକ ପ୍ରବନ୍ଧ ମାଧ୍ୟମରେ ସମ୍ପୃକ୍ତ ପର୍ବର ଗୁରୁତ୍ୱପୂର୍ଣ୍ଣ ଉତ୍ପତ୍ତି, ଜନଜୀବନ ଉପରେ ଏହାର ସୁଦୂରପ୍ରସାରୀ ପ୍ରଭାବ ଓ ସର୍ବଭାରତୀୟ ସ୍ତରରେ ଏହାର ସ୍ଥାନ ନିରୂପଣ ହିଁ ପୁସ୍ତକର ଉଦ୍ଦେଶ୍ୟ । ନିର୍ଦ୍ଦିଷ୍ଟ ପର୍ବକୈନ୍ଦ୍ରିକ କେତେକ ଆନୁଷଙ୍ଗିକ ଲେଖା ମଧ୍ୟ ସନ୍ନିବିଷ୍ଟ । ବହୁ ଇଂରେଜୀ, ପ୍ରାଚୀନ ପୁରାଣ, ସଂସ୍କୃତ ଓ ହିନ୍ଦୀ ଲେଖାର ଲେଖକଙ୍କ ଦ୍ୱାରସ୍ଥ ହୋଇ ଆଞ୍ଜୁଳା ପୂର୍ଣ୍ଣ କରିଛି । ବିଶେଷତଃ 'ଭାରତୀୟ ବ୍ରତୋତ୍ସବ' ମୋର ଚଳପଥର ପାଥେୟ ।

ଦୀର୍ଘ ୧୦।୧୫ ବର୍ଷ ଧରି ଓଡ଼ିଶାର ବିଭିନ୍ନ ଲୋକପ୍ରିୟ 'ଦୈନିକ ସମାଜ', 'ପ୍ରଜାତନ୍ତ୍ର', 'ସ୍ୱରାଜ୍ୟ', 'ଧରିତ୍ରୀ'ର ସାହିତ୍ୟ ପୃଷ୍ଠାରେ ଏଥିରୁ ବହୁଲେଖା ବିଭିନ୍ନ ସମୟରେ ଲିଖିତ ହୋଇ ପ୍ରକାଶ ପାଇଛି । ଏହାଛଡ଼ା ମରୁତୀର୍ଥ 'ଜୀବନରଙ୍ଗ'ରେ କେତେକ 'ପର୍ବପର୍ବାଣି' ପ୍ରକାଶ ପାଇଥିଲା । ଏଣୁ ସମ୍ପୃକ୍ତ 'ସମ୍ପାଦକ'ମାନଙ୍କ ନିକଟରେ ମୁଁ କୃତଜ୍ଞ । ଏହିସବୁ ପ୍ରକାଶିତ ଲେଖା ସହ କେତେକ ଅପ୍ରକାଶିତ ଲେଖାକୁ ଏକତ୍ରକରି ୧୯୭୭ ମସିହାରେ 'ଓଡ଼ିଆ ସାହିତ୍ୟ ଏକାଡ଼େମୀ'ରେ ଦାଖଲ କରିଥିଲି । ଶୁଣିଲି ଓଡ଼ିଶାର ଦୁଇଜଣ ପ୍ରଖ୍ୟାତ ସାହିତ୍ୟିକ ଓ କୃତୀ-ସମାଲୋଚକ ଡକ୍ଟର ନଟବର ସାମନ୍ତରାୟ ଓ ଶ୍ରୀ ବସନ୍ତ କୁମାର ଶତପଥୀ ଏହାର ସମୀକ୍ଷକ ଥାଇ ଅନୁକୂଳ ମତଦେବାରୁ ପାଣ୍ଡୁଲିପିର ପ୍ରଥମ ଭାଗଟି ଓଡ଼ିଆ ସାହିତ୍ୟ-ଏକାଡ଼େମୀ ଦ୍ୱାରା ୧୯୭୮ରେ ମନୋନୀତ ହୋଇ ଅର୍ଥ ସାହାଯ୍ୟ ଲାଭ କରିଛି । ଏଣୁ ସାଧାରଣତଃ ଉଲ୍ଲସିତ ଓ ଉତ୍ସାହିତ ହେବା କଥା । ଏଣୁ ସପୃକ୍ତ ସମ୍ମାନାସ୍ପଦ ଯୁଗ୍ମ ସମୀକ୍ଷକ ଓ ଓଡ଼ିଆ ସାହିତ୍ୟ ଏକାଡ଼େମୀ ନିକଟରେ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ପୁସ୍ତକଟି ପ୍ରଥମେ ଦୁଇ ଖଣ୍ଡରେ ପ୍ରକାଶ ପାଇବାର ପରିକଳ୍ପନା ଥିଲା । ପୂର୍ବାର୍ଦ୍ଧ ଚୈତ୍ରଠାରୁ ଭାଦ୍ରବ ପର୍ଯ୍ୟନ୍ତ ଓ ଉତ୍ତରାର୍ଦ୍ଧ ଆଶ୍ୱିନଠାରୁ ଫାଲ୍‌ଗୁନ ପର୍ଯ୍ୟନ୍ତ । ତଦନୁଯାୟୀ ପ୍ରସ୍ତୁତିକରଣ ଚାଲିଲା; ମାତ୍ର ବହୁ ବନ୍ଧୁ ଓ ହିତୈଷୀ ଏହାର ଏକତ୍ର ରୂପ ଚାହିଁଲେ । ଫଳତଃ ଏହାର ପ୍ରକାଶ ସମସ୍ତ ବିଳମ୍ବିତ ହେଲା । ମଝିରେ କଟକ ସହରରୁ ହଠାତ୍ 'ହାତୀ କାଗଜ' (Elephant) ଉଭେଇଗଲା ଓ ସବୁଠୁ 'ହଂସ' (Swan) ମୋର ଦୃଷ୍ଟିକୁ ଆସିଲା । ଫଳରେ 'ହାତୀ' ପାଦ ଛାଡ଼ି 'ହଂସ' ପାଦ ଧରିଲି । ଏଣୁ ପାଠକେ କ୍ଷମାଦେବେ ପ୍ରଥମଭାଗ ମୋଟା ହାତୀ ସହ ଦ୍ୱିତୀୟଭାଗ 'ହଂସ'ର ଏକ ବିଚିତ୍ର ସମନ୍ୱୟ ହୋଇଛି । ଏ 'ହଂସ' ପୁଣି ମଝିରେ ମଝିରେ ଏପରି ଅନ୍ତର୍ଦ୍ଧାନ, ବହୁରୂପୀ ଓ ଦୁର୍ମୂଲ୍ୟ ହେଲେ ଯେ ବହୁ ଉପାଦେୟ ଓ ସହାୟକ ଲେଖାସବୁ ଆଲୋକକୁ ଆସି ପାରିଲା ନାହିଁ ।

ଗୋଟିଏ କଥା କହିରଖେଁ ଯେ ପରମ୍ପରା ପ୍ରସିଦ୍ଧ 'ମାର୍ଗଶୀର୍ଷ' ମାସ ବଦଳରେ ଏ ପୁସ୍ତକରେ ଚୈତ୍ରଠାରୁ ମାସ ଆରବ୍ଧ ହୋଇ ପର୍ଯ୍ୟାୟକ୍ରମେ ପ୍ରବନ୍ଧଗୁଡ଼ିକର ସନ୍ନିବେଶ ହୋଇଛି । ଚୈତ୍ରମାସ ଯେ ବର୍ଷର ପ୍ରଥମ ମାସ ହେବାର ଯୋଗ୍ୟତା ଅର୍ଜନ କରିଛି ଓ ଏହାର ଶୁକ୍ଳ ପ୍ରତିପଦା ଯେ ଚାନ୍ଦ୍ରବର୍ଷର ଆରମ୍ଭ ଦିବସ ଏହା କ୍ୟାଲେଣ୍ଡର ସଂସ୍କାର କମିଟିରେ ବିଜ୍ଞ ସଭ୍ୟଗଣ ମଧ୍ୟ ସମସ୍ୱରରେ ସ୍ୱୀକାର କରିଛନ୍ତି—Chaitra should be the first month of the year. The Committee agreed that the lunar months should be new moon ending and the lunar year should begin with Chaitra Sukla Pratipat. ( Report of the Calender Reform Committee, Govt. of India ) ଉକ୍ତ ପୁସ୍ତକର ଟେବୁଲ-୨୮ର ୨ୟ ଧାଡ଼ିରେ ଦିଆଯାଇଥିବା ମାସ ଗୁଡ଼ିକ ( ଚୈତ୍ରଠାରୁ ଆରମ୍ଭ କରି ) ପ୍ରଥମେ ବୈଦିକରେସ୍ତ ପଦ୍ଧତିରେ ଦେଖିବାକୁ ମିଳେ ବୋଲି ଉଲ୍ଲେଖ ଅଛି । ପ୍ରତ୍ୟେକ ମାସର ବୈଶିଷ୍ଟ୍ୟକୁ କେନ୍ଦ୍ରକରି ସମ୍ପୃକ୍ତ ମାସର ନାମକରଣ ହୋଇଛି । ଯଥା – Madhu ( Chaitra ) Means 'Honey' and the name indicates that the month was pleasant with honey Madhaba ( Baisakh ) – means 'honey-like' or 'sweet one' ( R. O. C. R. C)

× × × ×

ପୁସ୍ତକର ପ୍ରଥମ ଭାଗଟି ମୋର ପୂର୍ବତନ ସହକର୍ମୀ, ବର୍ତ୍ତମାନ ବି. ଜେ. ବି. କଲେଜର ସୁନାମଧନ୍ୟ ଓଡ଼ିଆ ଅଧ୍ୟାପକ ଲବ୍ଧପ୍ରତିଷ୍ଠ ଲେଖକ ଶ୍ରୀ ଦେବରାଜ ପାଠୀ ଆବଶ୍ୟକ ସ୍ଥଳେ ସଂଶୋଧନ କରି ପରାମର୍ଶ ଦେଇ ମୋତେ ଉତ୍ସାହିତ କରାଇଛନ୍ତି । ପୁସ୍ତକର ଦ୍ୱିତୀୟାର୍ଦ୍ଧ ଉତ୍କଳର ଅନ୍ୟତମ ସାହିତ୍ୟକ

ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗର ସୁଯୋଗ୍ୟ ସମ୍ପାଦକ ପଣ୍ଡିତ ଶ୍ରୀ ଦୁଃଖୀଶ୍ୟାମ ପଟ୍ଟନାୟକ ଓ ମୋର ପୂଜ୍ୟପାଦ ଗୁରୁଦେବ ବି. ଏ. ହାଇସ୍କୁଲ, ଭୁବନେଶ୍ୱରର ଛାତ୍ରବତ୍ସଳ ପୂର୍ବତନ ସଂସ୍କୃତ ପଣ୍ଡିତ ଶ୍ରୀ ବୈକୁଣ୍ଠନାଥ ପ୍ରଧାନଙ୍କ ବହୁ କଷ୍ଟ ସ୍ୱୀକାର ପୂର୍ବକ ବହୁସ୍ଥଳରେ ଆବଶ୍ୟକୀୟ ପରିବର୍ତ୍ତନ, ସଂଶୋଧନ ଓ ନୂତନ ଶବ୍ଦ-ସଂଯୋଜନ କରିଥିବାରୁ ମୁଁ ଏହି ପଣ୍ଡିତ 'ଦ୍ୱୟ'ଙ୍କ ନିକଟରେ ନତମସ୍ତକ । ଦୁଃଖୀଶ୍ୟାମ ବାବୁ 'ମାସାନୁକ୍ରମୀ ଗ୍ରନ୍ଥ ତାଲିକା' ସଙ୍କଳନରେ ମୋର ମୁଖ୍ୟ ସହାୟକ ଓ ତାଙ୍କ ସ୍ୱକୀୟ ଗ୍ରନ୍ଥାଗାରର ଦ୍ୱାର ମୋ ପରି ନଗଣ୍ୟ ଲେଖକମାନଙ୍କ ପାଇଁ ସଦା ଉନ୍ମୁକ୍ତ । ଦ୍ୱିତୀୟାଙ୍କ ଶେଷରେ ଏହି 'ପର୍ବତାଳିକା' ସଂଲଗ୍ନ । ଭୁବନେଶ୍ୱର କ୍ୟାପିଟାଲ ଷ୍ଟୁଡେଣ୍ଟସ୍ ଷ୍ଟୋରର ପ୍ରୋପ୍ରାଇଟର ବନ୍ଧୁ ଶ୍ରୀ ବିପ୍ରଚରଣ ଦାଶଙ୍କ ଉତ୍ସାହ ଓ ସାହସିକ ପଦକ୍ଷେପ ଏହି ପୁସ୍ତକ ପ୍ରକାଶନ କାର୍ଯ୍ୟକୁ ତ୍ୱରାନ୍ୱିତ କରିଛି । ଲକ୍ଷ୍ମୀ ଆର୍ଟ ଓ୍ୱାର୍କସ୍, ବଲାଙ୍ଗୀରର ପ୍ରୋପ୍ରାଇଟର 'ରଞ୍ଜିକର୍ ବାଳିକା'ର ବର୍ତ୍ତମାନ ପ୍ରକାଶକ, ମୋର ଅନୁଜ ଶ୍ରୀ ସୁଦର୍ଶନ ମହାନ୍ତଙ୍କ ପୁସ୍ତକ ପ୍ରକାଶନରେ ସହାୟତା ମୋର ସମ୍ବଳ । ଏହାଛଡ଼ା ମୋର ପିତା 'ଖୁଦୁରୁକୁଣି ଓଷା'ର ପ୍ରଣେତା ଶ୍ରୀ ଦଇତାରି ମହାନ୍ତଙ୍କ ପ୍ରେରଣା ଓ ଆଶୀର୍ବାଦ, ମୋର ଶୁଭଚନ୍ତକ ବନ୍ଧୁ ଶ୍ରୀ ନଳିନୀକାନ୍ତ ନାୟକ (ଦନ୍ତଡ଼ା, ଗୋପ)ଙ୍କ ସ୍ନେହ ଓ ସହାନୁଭୂତି, ପତ୍ନୀ ଶ୍ରୀମତୀ କମଳାକୁମାରୀ ମହାନ୍ତ ଓ ଭ୍ରାତୃବଧୂ ଶ୍ରୀମତୀ ସ୍ନେହଲତା ମହାନ୍ତଙ୍କ ସମେତ ଶ୍ରୀମାନ୍ ସନ୍ତୋଷ, ସ୍ମୃତିରେଖା, ସ୍ମିତରେଖା ଓ ସୁଶ୍ରୀରେଖା ପ୍ରଭୃତି 'ଟୁହକୁମୁନି' ଗଣ ଗୁଣ୍ଡୁଚିମୂଷା ବାଲିଝାଡ଼ିବା ନ୍ୟାୟରେ ସମ୍ପ୍ରତି ଲେଖାଲେଖି କାମରେ ସାହାଯ୍ୟ କରିଛନ୍ତି । ଏଣୁ ଏମାନଙ୍କ ନାମୋଲ୍ଲେଖ ନ କରି ରହିପାରୁ ନାହିଁ ।

ଏହାଛଡ଼ା ଲେଖା ପ୍ରକାଶ ଦିଗରେ ଯେଉଁ ସହୃଦୟ ସାହିତ୍ୟିକ ବନ୍ଧୁଗଣ ଆଲୋକବର୍ତ୍ତିକା ରୂପେ ମୋତେ ପ୍ରଥମରୁ ସାହାଯ୍ୟ କରି ଆସୁଛନ୍ତି ସେମାନେ ହେଲେ ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗର ଅନ୍ୟତମ ସମ୍ପାଦକ ଓ ଗବେଷକ ଶ୍ରୀ ଭଗବାନ ପଣ୍ଡା, ଓଡ଼ିଆ ସାହିତ୍ୟ ଏକାଡେମୀର ସହକାରୀ ସମ୍ପାଦକ, ଲେଖକ ଶ୍ରୀ ଧୀରେନ୍ଦ୍ରନାଥ ପଟ୍ଟନାୟକ, ବି. ଜେ. ବି. କଲେଜର ସୁନାମଧନ୍ୟ ଅର୍ଥନୀତି ଅଧ୍ୟାପକ ଓ ଲେଖକ ଶ୍ରୀ ଧରଣୀଧର ପାଣିଗ୍ରାହୀ ଓ ସୋନପୁର ଗଡ଼ର ଶ୍ରୀ ଦେବେନ୍ଦ୍ରନାଥ ପଟ୍ଟନାୟକ ।

ପୁସ୍ତକ ମୁଦ୍ରଣ କ୍ଷେତ୍ରରେ ବ୍ରଜେନ୍ଦ୍ର ପ୍ରେସ୍‌ର ପ୍ରୋପ୍ରାଇଟର ସହୃଦୟ ଶ୍ରୀ ପ୍ରତାପ କୁମାର ଦାସ ଓ ତାଙ୍କ ସହକର୍ମୀମାନଙ୍କ ମଧୁର ବ୍ୟବହାର ମୋ ପକ୍ଷେ ସ୍ମରଣୀୟ ।

ଆଧୁନିକ ଓଡ଼ିଆ ସାହିତ୍ୟ-ସମାଲୋଚନା କ୍ଷେତ୍ରର ନୂତନ ବାର୍ତ୍ତାବହ, ବହୁ ସମାଲୋଚନା ଶାସ୍ତ୍ରପ୍ରଣେତା, କୃତବିଦ୍ୟ ସାହିତ୍ୟିକ ମୋର ଗୁରୁକଳ୍ପ

ଡକ୍ଟର ନଟବର ସାମନ୍ତରାୟ ଏମ୍. ଏ., ପି. ଏଚ୍. ଡି ମହାଶୟ ପୁସ୍ତକ ଲାଗି 'ଅଭିମତ' ପ୍ରଦାନ କରିଥିବାରୁ ଓ ଏହି ପୁସ୍ତକ ପ୍ରକାଶନ କ୍ଷେତ୍ରରେ ପ୍ରତି ପଦକ୍ଷେପ ରେ ମୋତେ ସମୟୋଚିତ ମାର୍ଗଦର୍ଶନ ଦେଇଥିବାରୁ ସେ ମହାଶୟଙ୍କ ନିକଟରେ ମୁଁ କୃତଜ୍ଞ ।

ପୁସ୍ତକଟିର ପ୍ରକୃତ ନାମ 'ଭୀମ ଓଙ୍କ ପର୍ବାଣୀ : ଏକ ସାହିତ୍ୟିକ ଆଲୋଚନା' ମାତ୍ର ସ୍ଥାନ ଅସୁବିଧା ହେତୁ କେବଳ 'ଭୀମ ଓଙ୍କପର୍ବାଣୀ' ବୋଲି କଭର ପୃଷ୍ଠାରେ ଲେଖାହୋଇଛି । ତଥାପି ବହିର ଭିତର ପୃଷ୍ଠାରେ ପୂର୍ଣ୍ଣ ନାମଟି ଦିଆଯାଇଛି ।

ପୁସ୍ତକର ବିଭିନ୍ନ ସ୍ଥାନରେ ଛାପାଗତ, ଭାଷାଗତ ଓ ବିଷୟଗତ ତ୍ରୁଟି ବିଚ୍ୟୁତି ରହିଛି । ସାହିତ୍ୟ-ରସ-ପିପାସୁ ସୁଧୀ-ପାଠକ ବର୍ଗ ସହୃଦୟତାର ସହ ପାଠକରି ତୃପ୍ତି ଲାଭ କଲେ ମୋର ଶ୍ରମ ସାର୍ଥକ ହେଲା ବୋଲି ଜାଣିବି ।

ଲେଖକ

# ସୂଚୀପତ୍ର

## ପ୍ରଥମାର୍ଦ୍ଧ

ବିଷୟ　　ସୂଚୀପତ୍ର　　ପୃଷ୍ଠା



—*—

# ମଧୁମାସ 'ଚୈତ୍ର'

ଧରଣୀ ବକ୍ଷରେ ମହୁଆ ପୁଲକ ଖେଳାଇ, କଳକଲ୍ପନାରେ ରଙ୍ଗିନ୍ ଡେଣା ଲଗାଇ, ମନ୍ଦମଳୟକୁ ଛନ୍ଦଚପଳ କରି, ରସସ୍ରାବୀ କୋକିଳ କଣ୍ଠରେ ନୂତନ ମାଦକତା ବୋଳି ମଧୁମାସ ଚୈତ୍ର ପୁଣି ଉପଗତ ହୋଇଛି । ସ୍ୱପ୍ନୋତ୍‌ଥିତ ଧରାବକ୍ଷରେ ଆଜ ଅଭିନବ ଗୁଞ୍ଜରଣ, ବାସନ୍ତୀ ମହୋତ୍ସବରେ ତାର ଅଙ୍ଗଲତିକା ବର୍ଣ୍ଣାଢ୍ୟ, ଜଗଙ୍ଗନା ଆଜ ଉନ୍ମନା, ସ୍ଥାବର ଜଙ୍ଗମ ସମସ୍ତେ ସତେ ଯେପରି ଅନଙ୍ଗଲୀଳାଗାରରେ ଆନନ୍ଦ-ମଦ-ବିଭୋର । ଭାବୁକ ଭାବବିହ୍ୱଳ, ରସିକ ରହସିକ୍ତ । କାଳିଦାସଙ୍କ 'ସର୍ବଂ ପ୍ରିୟେ ଚାରୁତରଂ ବସନ୍ତେ' ଆଜ ସଫଳ । ସେହି ରସଦ ମଧୁମାସ ଚୈତ୍ର ସମ୍ବନ୍ଧରେ ସଂକ୍ଷିପ୍ତାଲୋଚନା ଏ ପ୍ରବନ୍ଧର ଲକ୍ଷ୍ୟ ।

'ଋତୁ' ଶବ୍ଦ 'ଋ' (ଗତି କରିବା) ଧାତୁ ନିଷ୍ପନ୍ନ ଅର୍ଥାତ୍ 'ଯେ ସର୍ବଦା ଚାଲୁଅଛି ବା ଗମନ କରୁଅଛି' । ଏ 'ଋତୁ' ଅନୁସାରେ ପ୍ରତ୍ୟେକ ପ୍ରାଣୀ, ବୃକ୍ଷଲତା ପ୍ରଭୃତିଙ୍କର ଜୀବନଚକ୍ର ନିୟନ୍ତ୍ରିତ ହୋଇଥାଏ । ଏଣୁ ବୈଜ୍ଞାନିକ ଦୃଷ୍ଟିରୁ ଏହି ଋତୁ ହିଁ 'କାଳ' । ବେଦରେ 'ଚନ୍ଦ୍ରମା' ଋତୁର ବିଧାତା ରୂପେ କଳ୍ପିତ । ମାତ୍ର ସୂର୍ଯ୍ୟ ଓ ଚନ୍ଦ୍ର ଯେ ଉଭୟେ ଋତୁସ୍ରଷ୍ଟା— ଏହା ପରେ ବୈଦିକ ଆର୍ଯ୍ୟମାନେ ସ୍ୱୀକାର କରିଛନ୍ତି । ସୂର୍ଯ୍ୟଙ୍କ ଋତାଗ୍ନି ଓ ଚନ୍ଦ୍ରଙ୍କ 'ସୋମରସ'ର ମିଶ୍ରଣ ହିଁ ଋତୁ । ବରଂ ଋତୁସକଳ ନିୟନ୍ତ୍ରଣ କରିବାରେ ସୂର୍ଯ୍ୟଙ୍କର ଭୂମିକା ବିଶେଷ ଉଲ୍ଲେଖଯୋଗ୍ୟ । ରାଧାନାଥଙ୍କ ଚନ୍ଦ୍ରଭାଗାରେ ସୂର୍ଯ୍ୟଙ୍କ ଉକ୍ତି—"ବର୍ଷମାସ ଦିନ ଲତାର ମୁହିଁ ଅଟି ଅଧିପ, ଖଟନ୍ତି ଋତୁଏ ସେବକ ପ୍ରାୟେ ମୋର ସମୀପ" ବାସ୍ତବିକ ଚିରନ୍ତନ । ବହୁ ପଣ୍ଡିତ ୩ ଋତୁ ସମର୍ଥକ । ସେମାନଙ୍କ ମତରେ ଗ୍ରୀଷ୍ମ, ବର୍ଷା ଓ ହେମନ୍ତ (ଶୀତ) ହିଁ ଋତୁସାର । ପ୍ରଥମ ଋତୁରେ ଜଳ ଶୁଷ୍କ ହୁଏ ଓ ଦ୍ୱିତୀୟରେ ଜଳ ବର୍ଷଣ ହୁଏ । ତୃତୀୟ ହେମନ୍ତ ବା 'ହିମ' ଶବ୍ଦ ଧ୍ୱଂସାର୍ଥକ, 'ହନ' ଧାତୁ ବା ବୃଦ୍ଧ୍ୟର୍ଥକ 'ହି' ଧାତୁ ନିଷ୍ପନ୍ନ । ଶୈତ୍ୟ ଆଧିକ୍ୟରୁ କମଳର ଏ ଧ୍ୱଂସକର୍ତ୍ତା ଓ ଅନ୍ୟ ବ୍ୟୁତ୍ପତ୍ତି ଅନୁସାରେ ନାନାଦି ଧାନ୍ୟଶସ୍ୟ ସମ୍ପଦର ଏ ବୃଦ୍ଧିକାରକ ।

ଯେଉଁ ପ୍ରାଚୀନ ମତବାଦୀମାନେ ୬ ଋତୁର କଳ୍ପନା କରିଛନ୍ତି, ତା' ପଛରେ ବୈଜ୍ଞାନିକ କାରଣ ଥିବାର ଜଣାଯାଏ । ଅବଶ୍ୟ ଏ ଋତୁ ତାଲିକା ଆଧୁନିକ ମତପୋଷକମାନଙ୍କଠାରୁ ଭିନ୍ନ, ମାତ୍ର ଏହା ପୃଷ୍ଠରେ ଥିବା ବୈଦିକ ବସ୍ତୁରଧାରା ସୁସ୍ପଷ୍ଟ । ଏହାଛଡ଼ା ପରସ୍ପର ମାସ ମଧ୍ୟରେ ଥିବା ସମ୍ପର୍କ ଏଠାରେ ଦ୍ରଷ୍ଟବ୍ୟ । ଏହି ବୈଦିକ ମତାନୁଯାୟୀ 'ବସନ୍ତ'ରେ ମଧୁ (ଚୈତ୍ର) ଓ ମାଧବ (ବୈଶାଖ) ମାସ (ମଧୁଶ୍ଚ ମାଧବଶ୍ଚ ବାସନ୍ତିକା ଋତୁ—ଯଜୁଃସଂହିତା) ଗ୍ରୀଷ୍ମରେ 'ଶୁକ୍ର' (ଜ୍ୟେଷ୍ଠ) ଓ 'ଶୁଚି' (ଆଷାଢ଼) ମାସ, ବର୍ଷାରେ ନଭସ୍ (ଶ୍ରାବଣ) ଓ 'ନଭସ୍ୟ' (ଭାଦ୍ରପଦ) ମାସ, ଶରତ୍‌ରେ 'ଇଷ' (ଆଶ୍ୱିନ) ଓ 'ଊର୍ଜ' (କାର୍ତ୍ତିକ) ମାସ, ହେମନ୍ତରେ ସହସ (ମାର୍ଗଶିର) ଏବଂ ସହସ୍ୟ (ପୌଷ) ମାସ ଏବଂ ଶିଶିରରେ 'ତପସ୍' (ମାଘ) ଓ ତପସ୍ୟ (ଫାଲ୍‌ଗୁନ) (ତପା ମାଘେ ସ୍ୟାତ୍ ତପସ୍ୟଃ ଫାଲ୍‌ଗୁନିକଃ ......ଅମରକୋଷ, କାଳବର୍ଗ) ।

ଉପର ନାମକରଣରୁ ପାଠକମାନେ ପ୍ରତ୍ୟେକ ଋତୁର ଦୁଇ ମାସର ନାମ ସାମ୍ୟ ଦେଖିପାରିବେ । ବସନ୍ତର 'ମଧୁ' ଗ୍ରୀଷ୍ମର 'ଶୁକ୍ର' ବର୍ଷାର 'ନଭସ୍' ଶରଦର 'ଇଷ' ଓ 'ଊର୍ଜ' ହେମନ୍ତର 'ସହସ୍' ଓ ଶିଶିରର 'ତପସ୍' ସହ ସମ୍ପର୍କ ଅଛି ।

ମଧୁମାସ ଚୈତ୍ର ବସନ୍ତ ଋତୁର ଆଦ୍ୟମାସ (ଯଦିଓ ବର୍ତ୍ତମାନ ଫାଲ୍‌ଗୁନ ଗ୍ରହଣୀୟ) । ଏହାର ଅପର ମାସ 'ବୈଶାଖ' ମାଧବ ନାମରେ ନାମିତ । ପ୍ରାଚୀନ ଋତୁପର୍ଯ୍ୟାୟରେ ଏହାର ସ୍ଥାନ (ଚୈତ୍ର) ସର୍ବପ୍ରଥମ । ଏହାର ନାମ ମଧୁ ହେବାର କାରଣ ନିରୁକ୍ତରେ ଲେଖାଅଛି ଯେ— ମଧୁ ଏକ ପ୍ରକାର ରସ, ଯାହାକି ବୃକ୍ଷଲତା, ପ୍ରାଣୀ ସମସ୍ତଙ୍କୁ ଉନ୍ମତ୍ତ କରେ । ଏ ମାସରେ ବୃଷ୍ଟି ନ ଥାଇ ପାଦପବଲ୍ଲରୀ କୁସୁମିତ ହୁଅନ୍ତି । ପ୍ରକୃତ ତାର ଶୋଭାସମ୍ଭାରରେ ନୂତନ ରଙ୍ଗ ଢାଳି ନୟନମନ ସାର୍ଥକ କରେ । ବାସନ୍ତିକ ସୁଷମାରେ ଚତୁର୍ଦ୍ଦିଗ ସୁଷମାନ୍ୱିତ ଓ ସୌରଭିତ ହୋଇଉଠେ ।

'ଚୈତ୍ର' ବର୍ଷର ପ୍ରଥମ ମାସ କାହିଁକି ? ବୈଦିକ ଆର୍ଯ୍ୟମାନେ ଏହାକୁ କାହିଁକି ଶୀର୍ଷସ୍ଥାନ ଦେଇଅଛନ୍ତି ? 'ମାସାନାଂ ମାର୍ଗଶୀର୍ଷେଽହଂ

ଋତୂନାଂ କୁସୁମାକରଃ'' ଉକ୍ତି ମଧ୍ୟ ପଣ୍ଡିତମଣ୍ଡଳ ସମର୍ଥିତ । ମାର୍ଗଶିର ବା 'ଅଗ୍ରହାୟଣ' ଶ୍ରେଷ୍ଠ ମାସ ରୂପେ କେତେକ କହୁଥିବା ବେଳେ ଆଜି କେତେକ 'ଚୈତ୍ର' ମାସ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଏହା ମୂଳରେ ଉଭୟ ପୌରାଣିକ ଓ ବୈଜ୍ଞାନିକ ତଥ୍ୟସବୁ ଥିବାର ଜଣାଯାଏ ।

ବସନ୍ତଋତୁ ନୂତନ ପତ୍ରପୁଷ୍ପରେ ଧରିତ୍ରୀର ଅଙ୍ଗ ମଣ୍ଡନ କରେ । ଜୀର୍ଣ୍ଣତା, ଶୀର୍ଣ୍ଣତା, ନୀରସତା ଓ ରୁକ୍ଷତାର ଅବସାନ ଘଟେ । ସମସ୍ତଙ୍କ ମନରେ ଅପୂର୍ବ ଆହ୍ଲାଦ, ଉତ୍ସାହ ଦେଖାଯାଏ । ମୃତ-ପ୍ରକୃତି ନବ-ଯୌବନା ହୁଏ । ମଧୁମାସ 'ଚୈତ୍ର' ଫୁଲର ମହକରେ ମହକାଏ । ସୌନ୍ଦର୍ଯ୍ୟରେ ଦର୍ଶକକୁ ଅନ୍ଧ କରେ । ମାତ୍ର ବୈଶାଖ (ମାଧବ) ଫଳରେ ଦୁନିଆକୁ ଭରିଦିଏ । ଏଣୁ ବୈଶାଖ 'ଫଳ'ର ମାସ, ମାତ୍ର ଚୈତ୍ର ଫୁଲର ମାସ । ଫଳ ଫୁଲର ପରିଣତି ମାତ୍ର । ପ୍ରଥମେ ଫୁଲ, ତାପରେ ଫଳ । ଚୈତ୍ରର ମହତ୍ତ୍ୱ ଏଇଠି । ଦ୍ୱିତୀୟତଃ, ସୂର୍ଯ୍ୟ ରାଶିଚକ୍ରର ପ୍ରଥମ ରାଶି ମେଷକୁ ଏହି ଋତୁରେ ଆସନ୍ତି । ତୃତୀୟତଃ ଛ' ଋତୁମାନଙ୍କୁ ଯଦି ଆମେ ମୁଖ୍ୟତଃ ଗ୍ରୀଷ୍ମପ୍ରଧାନ ଓ ଶୀତପ୍ରଧାନ ଏହିପରି ଦୁଇ ଭାଗରେ ବିଭକ୍ତ କରିବା, ତେବେ ଚୈତ୍ର ଏପରି ଗୋଟାଏ ମାସ ଯାହାକି ଉଭୟର ମଧୁର ସମନ୍ୱୟ ଅଟେ । ଶୀତଳତା ଓ ଉଷ୍ଣତା ଉଭୟ ଏ ମାସର ବୈଶିଷ୍ଟ୍ୟ । ପୁଣି କେତେକଙ୍କ ମତରେ ଉଷ୍ଣତାର ଏହି ମାସରୁହିଁ ଆରମ୍ଭ ହେଉଥିବାରୁ ସମ୍ବତ୍ସରର ପ୍ରଥମ ମାସ ପଦବୀ ପ୍ରାପ୍ତି ଏହାର ପ୍ରାପ୍ୟ ।

ପୂର୍ଣ୍ଣିମାରେ ଚନ୍ଦ୍ରସହ ଚିତ୍ରାନକ୍ଷତ୍ରଯୁକ୍ତ ମାସ ଚୈତ୍ର ଫାଲ୍‌ଗୁନର ପରବର୍ତ୍ତୀ ଓ ବୈଶାଖର ପୂର୍ବବର୍ତ୍ତୀ ଚାନ୍ଦ୍ରମାସ ରୂପେ ପରିଚିତ ଓ ଆଧୁନିକ ପ୍ରତିଷ୍ଠିତ ମତାନୁଯାୟୀ ବସନ୍ତର ଦ୍ୱିତୀୟ ମାସ । ପାଶ୍ଚାତ୍ୟ ଦେଶରେ 'ବସନ୍ତର' ପ୍ରାଧାନ୍ୟ ଦୃଷ୍ଟିଗୋଚର ହୁଏ । 'ବହୁ-ବସନ୍ତକୁ ତୁମେ ଉପଭୋଗ କର'—ଆଶୀର୍ବାଦାତ୍ମକ ବାକ୍ୟ ମୂଳରେ ସୁଖମୟ ଜୀବନଚକ୍ରର ସଙ୍କେତ ମିଳେ । ବସନ୍ତକୁ ବିଶେଷତଃ 'ଏପ୍ରିଲ୍' ମାସକୁ କେନ୍ଦ୍ରକରି ସେ ଦେଶରେ ବହୁ କବିତା ରଚିତ ହୋଇଥିବା ପରି ଭାରତରେ ବସନ୍ତ ଆବାହନ ବିଭିନ୍ନ ଭାଷାଭାଷୀ ବହୁ କବି ଲେଖକଙ୍କ ଲେଖନୀରେ ପ୍ରାଣବନ୍ତ । ଋକ୍‌ବେଦ ସମୟରେ ଯେଉଁ ୩ ଟି

ଋତୁ ପ୍ରାଧାନ୍ୟ ଲାଭ କରିଥିଲା ତନ୍ମଧ୍ୟରୁ ବସନ୍ତ ଥିଲା ମହାନ୍ ପୁରୁଷଙ୍କ ଉଦ୍ଦେଶ୍ୟରେ ଆହୃତ ଦେବତାଯଜ୍ଞର ଆଜ୍ୟ (ଆହବନୀୟ ଘୃତ) ଗ୍ରୀଷ୍ମ ଥିଲା ସମିଧ (ଯଜ୍ଞ କାଷ୍ଠ) ଓ ଶରତ ହବ୍ୟ (ପୂଜୋପହାର) ।

ଶ୍ରୀବିଷ୍ଣୁ ପୁରାଣରେ ଯେଉଁ ଦ୍ୱାଦଶ ସୂର୍ଯ୍ୟଙ୍କ ବର୍ଣ୍ଣନା କରାଯାଇଛି ସେଥିରୁ ପ୍ରଥମ ସୂର୍ଯ୍ୟ ଆଦିତ୍ୟ)ଙ୍କ ଗତି ମଧୁମାସ ଚୈତ୍ରରୁ ହିଁ ଆରବ୍ଧ ।

ଯଥା—

"ଧାତା କ୍ରତୁସ୍ଥଳା ଚୈବ ପୁଲସ୍ତ୍ୟୋ ବାସୁକିସ୍ତଥା
ରଥଭୃଦ୍ ଗ୍ରାମଣୀଃ ହେତ୍ୟ ସ୍ତୁମ୍ବୁରୁ ଶ୍ଚୈବ ସପ୍ତମଃ
ଏତେ ବସନ୍ତି ବୈ ଚୈତ୍ରେ ମଧୁମାସେ ସଦୈବ ହି
ମୈତ୍ରେୟ ସ୍ୟନ୍ଦନେ ଭାନୋଃ ସପ୍ତମାସାଧି କାରଣଃ"

(ଶ୍ରୀବିଷ୍ଣୁପୁରାଣ— ୨ୟ ଅଂଶ — ଦଶମ ଅଧ୍ୟାୟ, ଶ୍ଳୋକ ୩।୪)

ଅର୍ଥାତ୍ ମଧୁମାସ ଚୈତ୍ରରେ ସୂର୍ଯ୍ୟଙ୍କ ରଥରେ ସର୍ବଦା 'ଧାତା' ନାମକ ଆଦିତ୍ୟ, କ୍ରତୁସ୍ଥଳା ଅପସରା, ପୁଲସ୍ତ୍ୟ ଋଷି, ବାସୁକି ସର୍ପ, ରଥଭୃତ୍ ଯକ୍ଷ, ହେତି ରାକ୍ଷସ ଓ ତୁମ୍ବୁରୁ ଗନ୍ଧର୍ବ — ଏ ସାତମାସ ସାରା ରହନ୍ତି ।

ଚୈତ୍ର ମାସର ମହତ୍ତ୍ୱ ସମ୍ପ୍ରସାରିତ ହୋଇ ପାରିଛି ଏ ମାସରେ ଅନୁଷ୍ଠିତ ହେଉଥିବା ବିଭିନ୍ନ ଐତିହାସିକ ତଥା ପୌରାଣିକ ପର୍ବପର୍ବାଣି ପୃଷ୍ଠଭୂମିରୁ । ସେଗୁଡ଼ିକ ହେଲା ଚୈତ୍ର ଶୁକ୍ଳ ପ୍ରତିପଦା, ଏହା ସାମ୍ବତ୍ସରୀୟ ଦିବସ ରୂପେ ପରିଚିତ । ଚୈତ୍ର ଶୁକ୍ଳ ଅଷ୍ଟମୀ (ଅଶୋକାଷ୍ଟମୀ) ଚୈତ୍ର ଶୁକ୍ଳ ନବମୀ ରାମନବମୀ), ଚୈତ୍ର ଶୁକ୍ଳ ଦ୍ୱାଦଶୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଦମନଭଞ୍ଜ ଉତ୍ସବ ଓ ଏହାଛଡ଼ା ଚୈତ୍ର ପରିଶ ଦିନ ଅନଙ୍ଗ ତ୍ରୟୋଦଶୀ ବା କାମଦେବ ପୂଜା ଅର୍ଥାତ୍ ମଦନୋତ୍ସବ । ପୁଣି ଚୈତ୍ର ଶୁକ୍ଳ ପୂର୍ଣ୍ଣିମା (କେତେକଙ୍କ ମତରେ ହନୁମଜ୍ଜୟନ୍ତୀ ହୋଇଥିବାରୁ) ଏ ମାସର ମହତ୍ତ୍ୱ ବଢ଼ାଇଅଛି । ଏହାଛଡ଼ା ବହୁ ବୈଷ୍ଣବ ଗୋସ୍ୱାମୀମାନଙ୍କର ଜନ୍ମ ଓ ତିରୋଧାନୋତ୍ସବ ମଧ୍ୟ ଏହି ମାସରେ ପାଳିତ ହୋଇ ଆସୁଅଛି । ପୁଣି ପଣା, ଝାମୁଯାତ୍ରା, ଚଇତିପର୍ବ ଓ ପଞ୍ଚୁଦୋଳ ଯାତ୍ରା

ଏହି ଚୈତ୍ରର ଗୌରବ ବର୍ଦ୍ଧନ କରେ । ଏମାନଙ୍କ ମଧ୍ୟରୁ କେତେକଙ୍କ ସମ୍ବନ୍ଧରେ ଅନ୍ୟତ୍ର ଆଲୋଚନା କରାଯାଇଅଛି । ଜିଜ୍ଞାସୁ ପାଠକଗଣ ସମ୍ବତ୍ସରାରମ୍ଭ, ଅଶୋକାଷ୍ଟମୀ, ରାମନବମୀ ଓ ହନୁମଜ୍ଜୟନ୍ତୀ ପରି କେତୋଟି ସର୍ବଭାରତୀୟ ପର୍ବ ଉପରେ ଆଧାରିତ ନିବନ୍ଧ ଲେଖାରୁ ତତ୍‌ସମ୍ବନ୍ଧୀୟ ତଥ୍ୟ ପାଇପାରିବେ ।

ଦମନକୋତ୍ସବ ବା ଦମ୍ଭଣାଗ୍ରେର ଏବେ ମଧ୍ୟ ପାଳିତ ହୋଇ ଆସୁଥିଲେ ସୁଦ୍ଧା କାମଦେବ ପୂଜା ବା ମଦନୋତ୍ସବ ନିଜର ସତ୍ତା 'ହୋଲି' ପର୍ବରେ ହରାଇଲଣି । ଓଡ଼ିଶାର ଚଇତ୍ର ପୂର୍ଣ୍ଣିମାରେ 'ଚଇତି ଘୋଡ଼ା' ପର୍ବ ଉଦ୍‌ଯାପିତ ହୁଏ । ଦୋଳ ଓ ଚଇତିପର୍ବ ଯଥାକ୍ରମେ ଗୋପାଳ ଓ କେଉଟମାନଙ୍କ ଅର୍ଥାତ୍ ଶୂଦ୍ରପର୍ବ ନାମରେ ନାମିତ । ରାମଙ୍କ ବନବାସ ସମୟରେ ତାଙ୍କୁ ଯେଉଁ ଧୀବର ବା 'ଦାସରାଜା' ଡଙ୍ଗାରେ ବସାଇ ସରଯୂ ନଦୀକୁ ପାରି କରାଇ ଦେଇଥିଲା, ରାମ ତାକୁ ଆନନ୍ଦରେ ଗୋଟିଏ ଘୋଡ଼ା ପୁରସ୍କାର ଦେଇଥିଲେ । ପାଟୁଆନାଚ ଓ ମଙ୍ଗଳା ପୀଠରେ ଝାମୁଯାତ୍ରାର ଉପଭୋଗ୍ୟ ଦୃଶ୍ୟ ଏବେ ବି ଦର୍ଶକଙ୍କୁ ବିହ୍ୱଳ କରେ । ଚଇତ୍ରମାସର ମଙ୍ଗଳବାର ପୂଜା ଉତ୍କଳୀୟ ନାରୀ ସମାଜରେ ସୁପରିଚିତ । ଏହି ଓଷା ମାଧ୍ୟମରେ ଉପବାସ, ନିରାଜନା ବିଧି ସେମାନଙ୍କର ଶାରୀରିକ ତଥା ମାନସିକ ପ୍ରସନ୍ନତା ବଢ଼ାଏ । ଚୈତ୍ର-ମଙ୍ଗଳା ଓଷା ଉତ୍କଳରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଅଛି । ଉତ୍କଳ ଶାକ୍ତପୀଠ । ବିଶେଷତଃ ଏହି ଚୈତ୍ରମାସ ହିଁ ଦେବୀପୂଜନ ନିମନ୍ତେ ପ୍ରଶସ୍ତ ସମୟ । ସ୍ୱୟଂ ରାମଚନ୍ଦ୍ର ମଧ୍ୟ ବାସନ୍ତିକ ପୂଜାରେ ଦେବୀଙ୍କୁ ସନ୍ତୁଷ୍ଟକରି ରାବଣ-ଜୟୀ ହୋଇଥିଲେ । ଶ୍ରୀମନ୍ଦିର ସମାଚାରରେ ଲେଖାଅଛି—ପୁରୁଷୋତ୍ତମ କ୍ଷେତ୍ର ଅନ୍ତର୍ବେଦୀକୁ ସମଗ୍ର ଓଡ଼ିଶାରେ ଅଷ୍ଟମହାଶକ୍ତି ରକ୍ଷା କରିବା ନିମନ୍ତେ ନଦୀ, ପର୍ବତ, ମହୋଦଧିକୁ ଅବଲମ୍ବନ କରି ରହିଅଛନ୍ତି । ସେହି ଅଷ୍ଟଦେବୀ ହେଲେ—

ବୈତରଣୀ ତଟସ୍ଥା ଶ୍ରୀ ବିରଜା ବରଦପ୍ରଦା
ଚତ୍ରୋତ୍ପଳାତଟେ ଦେବୀ ଶାରଦା ସିଦ୍ଧିରୂପିଣୀ
ମହାନଦ୍ୟୋତ୍ତରେ ବାସୀ ଚର୍ଚ୍ଚିକାଗୁହ୍ୟରୂପିଣୀ
ମହାଭଣ୍ଡାରିକା ଦେବୀ ସିଦ୍ଧାନାଂ ସିଦ୍ଧିଦାୟିକା ।

ଘଣ୍ଟଶିଳୋଦଗ୍ରବାସା ଦେବୀ ଭଗବତୀ ସ୍ୱୟମ୍
ତାରଣୀ ମଚଳାରୂଢ଼ା ଦୁର୍ଗା ସଙ୍କଟତାରଣୀ
ପ୍ରାଚ୍ୟୋତ୍ତରେ ବଟେ ଦେବୀ ମଙ୍ଗଳା ମଙ୍ଗଳପ୍ରଦା
ମହୋଦଧ୍ୟୋତ୍ତରେ ପାର୍ଶ୍ୱେ ସା ଦେବୀ ହରଚଣ୍ଡିକା
ଏବଂ ଭୂଷ୍ଟକାଳା ମୁଖ୍ୟାଃ ଶକ୍ତ୍ୟୋଷ୍ଟ ପ୍ରକୀର୍ତ୍ତିତାଃ
ରକ୍ଷନ୍ତୁ ଦେବୀକା ଗୋପ୍ତଂ ପାବନଂ ପୁରୁଷୋତ୍ତମେ ।"

(ଇନ୍ଦ୍ରନୀଳମଣୀ)

ଶ୍ରୀମନ୍ଦିର ସମାଚାର—No. 1-9 (୧୯୭୯)

× × × ×.

ବହୁସ୍ପୃଶ୍ୟ ଅଧାରକ ମଧୁମାସ ଚୈତ୍ର ଏହ୍ୱପର ବର୍ଷକେ ଥରେ ତାର ପାଦପକାଇ ମହୀ-ମଣ୍ଡଳକୁ ନୂତନ ଛନ୍ଦରେ, ଅପୂର୍ବ ପୁଲକରେ, ବିପୁଳ ସୁଷମାରେ, ନବୀନ ଉଲ୍ଲାସରେ ମଧୁଗର୍ଭ କରୁଥାଉ ।

[ ୩-୪-୭୭ 'ଧରିତ୍ରୀ'ରେ ପ୍ରକାଶିତ ]



# ସମ୍ବତ୍ସରାରମ୍ଭ

**ପୁ**ଣ୍ୟ ଚୈତ୍ରମାସ ପ୍ରାଚୀନ ମତବାଦୀଙ୍କ ମତରେ ସୃଷ୍ଟିର ଆଦ୍ୟମାସ । ମହାକାଳ ସିଦ୍ଧାନ୍ତରେ ଏହି ମାସ କାଳଚକ୍ରର ପ୍ରଥମ ମାସ ବୋଲି ଉଲ୍ଲେଖ ଅଛି । ସୃଷ୍ଟିକର୍ତ୍ତା ବ୍ରହ୍ମା ପ୍ରଥମେ ଏହି ମାସର ଶୁକ୍ଳ ପ୍ରତିପଦା ତିଥିରେ ସୂର୍ଯ୍ୟୋଦୟ ସମୟରେ ସମଗ୍ର ବିଶ୍ୱ ସୃଷ୍ଟି କରିଥିଲେ । ଗ୍ରହ, ନାଗଗଣ, ଋତୁ, ମାସ ଇତ୍ୟାଦି ଏ ସମସ୍ତେ ଏହି ମାସରୁ ପ୍ରବର୍ତ୍ତିତ ହୋଇଥିଲେ । ଯଥା—

‘ଚୈତ୍ରେମାସି ଜଗଦ୍‌ବ୍ରହ୍ମା ସସର୍ଜ ପ୍ରଥମେଽହନି
ଶୁକ୍ଳେପକ୍ଷେ ସମଗ୍ରଂ ତୁ ତଥା ସୂର୍ଯ୍ୟୋଦୟେ ସତି
ପ୍ରବର୍ତ୍ତୟା ମାସ ତଦା କାଳସ୍ୟ ଗଣନାମପି
ଗ୍ରହାନ୍, ନାଗାନ୍, ଋତୂନ୍, ମାସାନ୍ ବତ୍ସରାନ୍ ବତ୍ସରାଧିପାନ୍’

ବିଶେଷତଃ ପ୍ରକୃତିରୂପିଣୀ ଜଗଜ୍ଜନନୀ ଆଦ୍ୟାଶକ୍ତିଙ୍କର ଏହା ପ୍ରିୟମାସ ରୂପେ ପରିଚିତ । ଉତ୍କଳ ପୁଣି ମୁଖ୍ୟ ଶାକ୍ତପୀଠରୂପେ ଖ୍ୟାତ । ଚୈତ୍ର ମଙ୍ଗଳବାର ପୂଜା ଉତ୍କଳର ଏକ ଜନପ୍ରିୟ ଉତ୍ସବ । ଏହାର ସୂଚନା ପୂର୍ବ ଲେଖାରେ ଦିଆଯାଇଛି । ଏଣୁ ବାସନ୍ତିକ ସୁଷମାରେ ସୁଷମାନ୍ୱିତ ଓ ଜଗନ୍ମାତାଙ୍କ ପ୍ରିୟମାସ ହିଁ ବାସ୍ତବିକ ସମ୍ବତ୍ସରାରମ୍ଭ ମାସ-ରୂପେ ସର୍ବଥାସ୍ୱୀକରଣୀୟ ।

**ବିଧି**—ଏହି ଉତ୍ସବର ପାଳନ ବିଧି ସମ୍ପର୍କରେ ଲେଖାଅଛି – ସୃଷ୍ଟିର ଏହି ପ୍ରଥମ ଦିବସରେ ଘର ଉପରେ ପତାକା ଉଡ଼ାଇବ । ଶୁଦ୍ଧସ୍ନାନ କରି ପବିତ୍ର ବ୍ରାହ୍ମଣଙ୍କ ଦ୍ୱାରା ପୂଜା କରିବ । ଏ ଦିନ ପାଦ୍ୟାର୍ଘ୍ୟ, ପୁଷ୍ପ, ଧୂପଦାନ, ବସ୍ତ୍ର, ଅଳଙ୍କାର ଧାରଣ ଓ ବ୍ରାହ୍ମଣତୃପ୍ତି ଦ୍ୱାରା ବ୍ରହ୍ମାଙ୍କ ପୂଜନ ପୁରାଣସମ୍ମତ । ପୁଣି କାଳର ଅବୟବରୂପୀ ଯେଉଁ ଦେବତା-ମାନଙ୍କୁ ପୃଥକ ପୃଥକ ପୂଜା କରିବାର ବିଧି ଅଛି, ସେମାନେ ହେଲେ— ବ୍ରହ୍ମା, କାମ, ନିମେଷ, ତ୍ରୁଟି, ଲବ, କ୍ଷଣ, କାଷ୍ଠା, କଳା, ନାଡ଼ି, ମୁହୂର୍ତ୍ତ,

ରତି, ଦିବସ, ପକ୍ଷ, ମାସ, ଋତୁ, ଅୟନ, ବର୍ଷ, ଯୁଗାଦି, ଗ୍ରହ, ନକ୍ଷତ୍ର ରାଶି, କରଣ, ଯୋଗ, ବର୍ଷାଧିପତି ଅନୁଚର ସହିତ ଏମାନେ ମଧ୍ୟ ପୂଜିତ ହେବା ବିଧେୟ—ଯଥା : କୁଳନାଗ, ମନୁ, ଇନ୍ଦ୍ର, ଦକ୍ଷକନ୍ୟାଗଣ, ସୁଭଦ୍ରା, ଜୟା, ଶସ୍ତ୍ର, ଅସ୍ତ୍ର, ବୁଦ୍ଧି, ଧନଦ (କୁବେର) ନଳକୁବର (କୁବେରପୁତ୍ର) ନିଧି, ଭଦ୍ରକାଳୀ, ସୁରଭି, ବେଦ, ବେଦାଙ୍ଗ ଓ ବେଦାନ୍ତ ବିଦ୍ୟାର ଅଧିଦେବତା ନାଗ, ଯକ୍ଷ, ସୁପର୍ଣ୍ଣ ଗରୁଡ, ସମୁଦ୍ର, ଉତ୍ତରକୁରୁ, ନବଖଣ୍ଡ, ପାତାଳ, ସାତନରକ, ବିଶ୍ୱାବତାର, ସାତ-ଲୋକ, ପଞ୍ଚମହାଭୂତ, ପ୍ରକୃତି ପୁରୁଷ, ଅଭିମାନ (ଅହଂ), ପର୍ବତ, ଗଙ୍ଗାଦିନଦୀ, ସପ୍ତର୍ଷି ପୁଷ୍କରାଦିତୀର୍ଥ, ଛନ୍ଦ, କାମଧେନୁ, ଐରାବତ, ଉଚ୍ଚୈଃଶ୍ରବା, ଧନ୍ୱନ୍ତରୀ, ଗଣେଶ, କାର୍ତ୍ତିକେୟ, ବିଘ୍ନସ୍କନ୍ଦଗ୍ରହ, ସ୍କନ୍ଦମାତା, ଜ୍ୱରାଦିରୋଗ, ବାଲ୍ୟଖିଲ୍ୟ ଋଷି, କେଶବ, ଅଗସ୍ତ୍ୟ, ନାରଦ, ବ୍ୟାସାଦିକ, ଅପ୍ସରା, ସୋମପ ଏବଂ ଅସୋମପ, ଦେବତା, ତୁଷିତ ଦ୍ୱାଦଶ ଆଦିତ୍ୟ । ଏକାଦଶ ରୁଦ୍ର, ଅଶ୍ୱିନୀକୁମାର, ଦ୍ୱାଦଶ ସାଧ୍ୟ, ଅଣଚାଶ ମରୁତ, ବିଶ୍ୱକର୍ମା, ଅନୁଚର ସହ ଅଷ୍ଟ ଲୋକପାଳ, ଆୟୁଧ, ବାହନ, କବଚ, ଆସନ ଦୁନ୍ଦୁଭି, ଦୈତ୍ୟ, ରାକ୍ଷସ, ଗନ୍ଧର୍ବ, ପିଶାଚ, ପିତୃ, ପ୍ରେତ ତଥା ଅନ୍ୟ ସୂକ୍ଷ୍ମ ଭାବଗମ୍ୟ ଦେବତା ଏବଂ ପରମାତ୍ମା ବିଷ୍ଣୁ, ଏ ସମସ୍ତ ଦେବତାଙ୍କ ଚତୁର୍ଥୀ ବିଭକ୍ତିରେ 'ନମଃ' ଶବ୍ଦ ଯୋଗ କରି ପୂଜା କରିବା ଦରକାର । ଫଳରେ ସମ୍ବତ୍ସର ଆରମ୍ଭରୁ ସବୁ ଦେବତା ପ୍ରୀତ ହୋଇ ସର୍ବସିଦ୍ଧି ପ୍ରଦାନ କରିବେ ।

ଅନ୍ୟ ଧର୍ମଶାସ୍ତ୍ରରେ ମଧ୍ୟ ଏ ଦିନ 'ମହାଶାନ୍ତି' ପୂର୍ବକ ବ୍ରହ୍ମାଙ୍କ ସହ ବର୍ଷ, ମାସ, ଋତୁ ପକ୍ଷ ଦିବସ ଆଦି କାଳାବୟବ ଯେ ନିଶ୍ଚୟ ପୂଜ୍ୟ ଏହା ଉଲ୍ଲେଖ ଅଛି ।

"ତତ୍ର କାର୍ଯ୍ୟା ମହାଶାନ୍ତିଃ ସର୍ବକଲ୍ମଷ ନାଶିନୀ
ସର୍ବୋପଘାତ ପ୍ରଶମନୀ କଲି ଦୁଃଖ ପ୍ରଣାଶିନୀ
ଆୟୁଃପ୍ରଦା ପୁଷ୍ଟିକରୀ ଧନସୌଭାଗ୍ୟବର୍ଦ୍ଧିନୀ
ମଙ୍ଗଲ୍ୟା ଚ ପବିତ୍ରା ଚ ଲୋକଦ୍ୱୟ ସୁଖାବହା
ତସ୍ୟା ମାଦୌ ଚ ସମ୍ପୂଜ୍ୟୋ ବ୍ରହ୍ମା କମଳସମ୍ଭବଃ ।
(ମୟୂଖକାର ଶ୍ରୀନୀଳକଣ୍ଠ ଭଟ୍ଟଙ୍କ ପୁତ୍ର ଶ୍ରୀ ଶଙ୍କର ଭଟ୍ଟଙ୍କ 'ବ୍ରତାର୍କ'ରୁ)

ସୃଷ୍ଟିର ଏ ପ୍ରଥମ ଉତ୍ସବରେ କପରି ଗୃହ ଉପରେ ଧ୍ୱଜା ରୋପଣ କରିବ, ଶୁଦ୍ଧସ୍ନାନ ପୂର୍ବକ ମଙ୍ଗଳକାର୍ଯ୍ୟ କରିବା, ପୂର୍ବରୁ 'ବିଧି' ପର୍ଯ୍ୟାୟରେ ଆଲୋଚନା କରାଯାଇଛି ଓ ଏହା ଶାସ୍ତ୍ରସମ୍ମତ । (୧) ବର୍ତ୍ତମାନ ଏ ଉତ୍ସବଟିର ତାତ୍ପର୍ଯ୍ୟ ସମ୍ବନ୍ଧରେ ବର୍ଣ୍ଣନା କରାଯାଉଛି ।

**ତାତ୍ପର୍ଯ୍ୟ**—ବୈଦିକ ଯୁଗରେ ଅନେକ ପ୍ରକାର 'ସମ୍ବତ୍ସରାରମ୍ଭ'ର ପ୍ରଚଳନ ଥିବାର ଦେଖାଯାଏ, କେବେ କେବେ 'ଋତୁ'କୁ ଓ କେବେ କେବେ 'ମାସ'କୁ କେନ୍ଦ୍ରକରି । ମାର୍ଗଶୀର୍ଷ ମାସରୁ କେହି କେହି ବର୍ଷାରମ୍ଭ ବୋଲି କହୁଥିଲେ । ଏହାର ନାମ ତେଣୁ ଥିଲା 'ଆଗ୍ରହାୟଣ' (ଅଗ୍ରେ-ହାୟନଂ ଯସ୍ୟ, ବା ଆଗ୍ରହାୟଣିକ । ପୁଣି 'ଶରଦ' ଓ 'ବର୍ଷା'ରୁ ମଧ୍ୟ ଆରମ୍ଭ ହୋଇଥିବାର ସୂଚନା ମିଳେ । ଏଣୁ ବେଦରେ ଶରଦ୍ (୨) ଓ ବର୍ଷ ନାମ ଥିବାର ଜଣାଯାଏ ।

ବିଶେଷତଃ ଭାରତ ପାଇଁ ଏହି 'ଚୈତ୍ର' ମାସ ହିଁ ପ୍ରକୃତ 'ସମ୍ବତ୍ସରାରମ୍ଭ' ମାସ ରୂପେ ଗଣ୍ୟ ହେବା ଆବଶ୍ୟକ । ନୂତନ ପତ୍ର-ପୁଷ୍ପଶୋଭିତା ପ୍ରକୃତି ଏହି ସମୟରେ ତାର ସୌନ୍ଦର୍ଯ୍ୟପସରା ମେଲାଇ ବସେ । ପାଦପବଲ୍ଲରୀଙ୍କର ନବଯୌବନ, ଚୂତଗହଳରେ ପିକ କୂଜନ, ସୁରଭି ଶୀତଳ ମୃଦୁମନ୍ଦ ପବନ ପ୍ରତି ଭାରତୀୟ ପ୍ରାଣରେ ସ୍ପନ୍ଦନ ଆଣେ । ଦ୍ୱିତୀୟ କାରଣ ହେଉଛି, ସୂର୍ଯ୍ୟ ନିରୟନ ପକ୍ଷ ଓ ସାୟନ ପକ୍ଷ ଅନୁସାରେ ସ୍ୱରାଶି ଚକ୍ରର ପ୍ରଥମ ରାଶି 'ମେଷ'କୁ ଏହି ଋତୁରେ ଆସନ୍ତି । ତୃତୀୟତଃ, ବର୍ଷର ୬ଟି ଋତୁ—ଉଷ୍ଣ ଓ ଶୀତ ଏହି ଦୁଇଭାଗରେ ମୁଖ୍ୟତଃ ବିଭକ୍ତ । ଉଷ୍ଣପ୍ରଧାନ ୩ଟି ଋତୁ ହେଲା—ବସନ୍ତ, ଗ୍ରୀଷ୍ମ ଓ ବର୍ଷା । ଶୀତପ୍ରଧାନ ୩ଟି ଋତୁ ହେଲା—ଶରତ, ହେମନ୍ତ ଓ ଶିଶିର । ଏହି 'ଉଷ୍ଣ' ଓ 'ଶୀତ'କୁ ବେଦରେ 'ଅଗ୍ନି' ଓ 'ସୋମ' କୁହାଯାଏ ଓ ଜଗତର ଏମାନେ ଜୀବନ ହେତୁ ଜଗତକୁ 'ଅଗ୍ନିସୋମାତ୍ମକ' ଜଗତ୍ ବୋଲି କୁହାଯାଏ ।

---

(୧) ପ୍ରାପ୍ତେ ନୂତନ ବତ୍ସରେ ପ୍ରତିଗୃହଂ କୁର୍ଯ୍ୟାଦ୍ଧ୍ୱଜାରୋପଣମ୍
ସ୍ନାନଂ ମଙ୍ଗଳମାଚରେଦ୍ଦ୍ୱିଜବରୈଃ ସାକଂ ସୁପୂଜ୍ୟୋତ୍ସବୈଃ
ଦେବାନାଂ ଗୁରୁଯୋଷିତାଂ ଚଷିଣବୋଽଲଙ୍କାର ବସ୍ତ୍ରାଦିଭିଃ
ସମ୍ପୂଜ୍ୟୋ ଗଣକଃ ଫଳଂ ଚ ଶୃଣୁୟାତ୍ତସ୍ମାଚ୍ଚ ଲଭପ୍ରଦମ୍

(୨) ଜୀବେମଃ ଶରଦଃ ଶତମ (ବର୍ଷଶତମ)—ଋକ୍‌ବେଦ

ଭାରତୀୟ ଜ୍ୟୋତିଷ ଲେଖକଙ୍କ ମତରେ 'ଶୀତ' ବା 'ଶୀତଳତା' ମୃତଶରୀର ଲକ୍ଷଣ । ଉଷ୍ଣତା ଜୀବନର ଲକ୍ଷଣ । ଉଷ୍ଣତା ନ ଥିଲେ ପ୍ରାଣୀଙ୍କ ଉତ୍ପତ୍ତି ଓ ବିକାଶ ନାହିଁ । ଏଣୁ ମୃତ-ପ୍ରକୃତିକୁ ଜୀବନ ଦିଅନ୍ତି ସୂର୍ଯ୍ୟ । ଏ ଉଷ୍ଣତାର 'ଆକର', ଏହାଙ୍କ ଅନ୍ୟ ନାମ 'ମାର୍ତ୍ତଣ୍ଡ' । ଋତୁମାନଙ୍କର ଉଷ୍ଣତା ଆରମ୍ଭ ହୁଏ ବସନ୍ତ ଋତୁରେ । ଏଣୁ ଏହି ଋତୁରେ ଧାତା ସୃଷ୍ଟି ସର୍ଜନା କରିଥିବା ଯୁକ୍ତିଯୁକ୍ତ । ଏହାର ପ୍ରକାଶ ତତ୍ତ୍ୱ ହେଉଛି ପ୍ରକୃତି ପ୍ରଥମେ ସର୍ବାଙ୍ଗଶୀତଳା ଥିଲା । ପରେ ଋତୁ ପରିବର୍ତ୍ତନ ସମୟରେ ଉଷ୍ଣତା ପ୍ରାପ୍ତା ହେଲା । ଏଣୁ ଭାରତରେ 'ବର୍ଷ' ଆରମ୍ଭ ଏହି ମାସରୁ ହୋଇଥିବା ବୈଦିକ ସିଦ୍ଧାନ୍ତ ମଧ୍ୟ ବିଜ୍ଞାନସମ୍ମତ ।

ଚୈତ୍ର ମାସରେ ପୁଣି ସୃଷ୍ଟି କାହିଁକି ? ଚୈତ୍ର ବସନ୍ତଋତୁର ଆରମ୍ଭ ମାସ, ଏହା ମଧୁ ମାସ (ପୂର୍ବାଲୋଚନା ଦ୍ରଷ୍ଟବ୍ୟ) । ଏହାର କୃଷ୍ଣପକ୍ଷ ଅପେକ୍ଷା ଶୁକ୍ଳପକ୍ଷ ଅଧିକ ମଞ୍ଜୁଳତର । 'ମଧୁ' କ୍ଷରଣ ଏହି ମାସରେ ହିଁ ସମ୍ଭବ । ଅପର ମାସ 'ବୈଶାଖ' 'ମାଧବ' ନାମରେ ନାମିତ ଓ ମଧୁ ରସର ଏହା ପରିଣାମ ମାତ୍ର । ଏଣୁ ଚୈତ୍ର ସମ୍ବତ୍ସର ଆରମ୍ଭ ପାଇଁ ଅଧିକତର ଅନୁକୂଳ ।

ପୁଣି ଶୁକ୍ଳପକ୍ଷ ଧର୍ମ କାର୍ଯ୍ୟ ସାଧନ ନିମନ୍ତେ ଅଧିକ ପ୍ରଶସ୍ତ, କାରଣ ଚନ୍ଦ୍ରମା ଏ ପକ୍ଷରେ ଅଧିକ ମହିମାନ୍ୱିତ ହୁଅନ୍ତି । ସକଳ ପ୍ରାଣୀଙ୍କ ଜୀବନ ଆଧାର ବୃକ୍ଷଲତାଦିଙ୍କୁ ସୋମରସ ଦାନ କରନ୍ତି ଚନ୍ଦ୍ରମା । ଏଣୁ ଏହାଙ୍କୁ 'ଓଷଧୀଶ' କୁହାଯାଏ— 'ଓଷଧୀଶୋ ନିଶାପତିଃ'—(ଅମରକୋଷ) । ଚନ୍ଦ୍ର ମଧ୍ୟ ବନସ୍ପତିଙ୍କ ରାଜା ରୂପେ ପରିଚିତ । ଏଣୁ ପରିବର୍ଦ୍ଧମାନ ଚନ୍ଦ୍ର କୃଷ୍ଣପକ୍ଷ ଅପେକ୍ଷା ଶୁକ୍ଳ ପ୍ରତିପଦାରେ ଅଧିକ ପ୍ରଭାବଶାଳୀ ଜଣାଯାନ୍ତି । ପୁଣି ଏହି ପ୍ରତିପଦାରୁ ତାଙ୍କର ପ୍ରଥମ କଳା ଆରମ୍ଭ ହୁଏ । ଚନ୍ଦ୍ର ଶୁକ୍ଳପକ୍ଷରେ ଦେବତାଙ୍କୁ ଓ କୃଷ୍ଣପକ୍ଷରେ ପିତୃଗଣଙ୍କୁ ଅମୃତଦାନ କରି ତୁଷ୍ଟ କରନ୍ତି ଏବଂ ପ୍ରତିପଦାର ଅବ୍ୟବହିତ ପୂର୍ବରୁ ସେ ପ୍ରଥମେ 'ଜଳ'ରେ ଓ ପରେ ବୃକ୍ଷଲତାଦିରେ ଓଷଧି ଉତ୍ପନ୍ନ କରି ମନୁଷ୍ୟ, ପଶୁ, କୀଟପତଙ୍ଗାଦିଙ୍କୁ ଉଲ୍ଲସିତ କରନ୍ତି । ଏହାର ପ୍ରମାଣ ଶାସ୍ତ୍ରରେ ଲିପିବଦ୍ଧ ।

"ଏବଂ ଦେବାନ୍ ସିତେପକ୍ଷେ ତଥାପିତ୍ରନ୍
ବୀରୁଧଶ୍ଚାମୃତମୟୈଃ ଶୀତୈରପରମାଣୁଭିଃ
ବୀରୁଧୌଷଧିପନ୍ୟା ମନୁଷ୍ୟପଶୁକୀଟକାନ୍
ଆପ୍ୟାୟୟତି ଶୀତାଂଶୁଃ ପ୍ରାକାଶ୍ୟାହ୍ଲାଦନେନ ତୁ ।
(ଶ୍ରୀବିଷ୍ଣୁ ପୁରାଣ—୨ୟ ଅଂଶ-୧୨ ଅଧ୍ୟାୟ-୧୪/୧୫)

ଏହିସବୁ କାରଣରୁ ସମ୍ପ୍ରଦାୟ ନିମନ୍ତେ ବାସ୍ତବିକ୍ ଶୁକ୍ଳ ପ୍ରତିପଦାଟି ପ୍ରକୃଷ୍ଟ ସମୟ ।

**ବୈଜ୍ଞାନିକ ପୃଷ୍ଠପଟ**—ଏ ଦିନ ତୈଳାଭ୍ୟଙ୍ଗ, ମିଶ୍ରି ଓ କଳାମରିଚ ସହ କଅଁଳ ନିମପତ୍ର ବାଟି ଭୋଜନ କରିବା ବିଧି ସ୍ୱାସ୍ଥ୍ୟ ପକ୍ଷେ ଅନୁକୂଳ । ଭାରତୀୟ ପର୍ବପର୍ବାଣି ମୂଳରେ ଏହି ସ୍ୱାସ୍ଥ୍ୟରକ୍ଷା ବିଧିଟି ପ୍ରଚ୍ଛନ୍ନଭାବେ ନିହିତ । ଶରୀରର ଅପରନାମ 'ରୋଗଭୂ' । ଏହା ରୋଗର ସ୍ଥଳୀ । ପୁଣି 'ଉଦର' ଏହି ରୋଗୋତ୍ପତ୍ତିରେ ମୁଖ୍ୟ ଅଂଶ ଗ୍ରହଣ କରେ । କାରଣ ଉଦରରେ ଅଶୁଦ୍ଧି ରହିଲେ ନାନା ଶାରୀରିକ ରୋଗ ଉତ୍ପନ୍ନ ହୁଏ । ଏଣୁ ଏ ଦିବସରେ ଯେ 'ତୈଳାଭ୍ୟଙ୍ଗ ବିଧି' ଅଛି ତାହା ବାସ୍ତବିକ ସ୍ୱାସ୍ଥ୍ୟବିଜ୍ଞାନସମ୍ମତ । ତୈଳମର୍ଦ୍ଦନର ଭୂରି ଭୂରି ପ୍ରଶଂସା ଆୟୁର୍ବେଦଶାସ୍ତ୍ରରେ କରାଯାଇଅଛି । ବାଗ୍‌ଭଟ ଲେଖିଛନ୍ତି—'ଅଭ୍ୟଙ୍ଗମାଚରେନ୍ନିତ୍ୟଂ ସ ଜରାଶ୍ରମ ବାତହା'—ଅର୍ଥାତ୍ ପ୍ରତିଦିନ ଅଭ୍ୟଙ୍ଗ ଅର୍ଥାତ୍ ତୈଳମର୍ଦ୍ଦନ କରିବା ଆବଶ୍ୟକ । ଏହାଦ୍ୱାରା ବାୟୁ ନିବୃତ୍ତ ହୁଏ, ଦୃଷ୍ଟିଶକ୍ତି ବଢ଼େ ଓ ଏହା ପ୍ରସନ୍ନତା, ପୁଷ୍ଟତା ଓ ସୁନିଦ୍ରା-କାରକ । ଏହାଛଡ଼ା ଚର୍ମର ମଧ୍ୟ ସୌନ୍ଦର୍ଯ୍ୟ ବଢ଼ାଇ ଏହାକୁ ଚିକ୍‌କଣ ରଖେ । 'ଚରକ ସଂହିତା'ରେ ଏହାର ଗୁଣ ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା ଦିଆଯାଇଛି । ଜିଜ୍ଞାସୁ ପାଠକଙ୍କ ଅବଗତି ନିମନ୍ତେ ନିମ୍ନରେ କେତୋଟି ମାତ୍ର ସଂସ୍କୃତ ଉଦ୍ଧୃତାଂଶ ଦିଆଯାଇଛି ।

ସ୍ନେହାଭ୍ୟଙ୍ଗାଦ୍ୟଥା କୁମ୍ଭଶ୍ଚର୍ମ ସ୍ନେହବିମର୍ଦ୍ଦନାତ୍
ଭବତ୍ୟୁପାଙ୍ଗୋଦକ୍ଷଶ୍ଚ ଦୃଢ଼ଃ କ୍ଲେଶସହୋ ଯଥା
ତଥା ଶରୀର ମଭ୍ୟଙ୍ଗାଦ୍ ଦୃଢ଼ଂ ସୁତ୍ୱକ୍ ଚ ଜାୟତେ
ପ୍ରଶାନ୍ତୋ ମରୁତା ବାଧଃ କ୍ଳେଶ ବ୍ୟାୟାମ୍ ସଂସହମ୍

× × × ×

ନ ଚ ସ୍ୟାଦ୍ ଗୃଧ୍ରସୀବାତଃ ପାଦୟୋଃ ସ୍ଫୁଟନଂ ନ ଚ
ନ ସିରସ୍ନାୟୁ ସଂକୋଚଃ ପାଦଭ୍ୟଙ୍ଗେନ ପାଦୟୋଃ"

ଅର୍ଥାତ୍ ତୈଳମର୍ଦ୍ଦନଦ୍ୱାରା ଅଙ୍ଗପ୍ରତ୍ୟଙ୍ଗ ଦକ୍ଷ ହୁଏ, ବାତ ରୋଗ ହୁଏ, ଗୃଧ୍ରସୀ ବାତ ଦୂର ହୁଏ, ସ୍ୱାସ୍ଥ୍ୟରକ୍ଷା ହୁଏ, ଶରୀରର କଷ୍ଟସହିଷ୍ଣୁତା ବୃଦ୍ଧିପାଏ ।

ବସନ୍ତାରମ୍ଭରେ ଏହାଠାରୁ ଅଧିକ ଉପଯୋଗୀ ବାତ୍ୟୋପଚାର କ'ଣ ଥାଇପାରେ ? ଏହାର କ୍ରମଶଃ ଅଭ୍ୟାସ ଦ୍ୱାରହିଁ ମନୁଷ୍ୟ ଚର୍ମ-ରୋଗରୁ ରକ୍ଷା ପାଏ । 'ବସନ୍ତେ ନିମ୍ବ-ସେବନମ୍' ବିଧି ମଧ୍ୟ ବିଜ୍ଞାନ-ସମ୍ମତ । ଏ ମଧ୍ୟ ଚର୍ମରୋଗବାରକ । ନିମ୍ବ ଅତ୍ୟନ୍ତ ତିକ୍ତ । ଏହା ବାୟୁ ଉତ୍ପନ୍ନ କରେ । ମାତ୍ର ଏହା ମହୁ କମ୍ବା ମିଶ୍ରି ସହିତ ମିଶାଇ ସେବନ କଲେ ବାୟୁ ଶାନ୍ତ ହୁଏ । ଲେଖାଅଛି—

"କଟୁତିକ୍ତ କଷାୟାବାତଂ ଜନୟନ୍ତି ।
ମଧୁରାମ୍ଳଲବଣାସ୍ତ୍ୱେନଂ ଶମୟନ୍ତି"
(ଚରକ ସଂହିତା)

ସେହିପରି ମିଠା ଦ୍ରବ୍ୟ ମଧ୍ୟ କଫ ବଢ଼ାଏ । ଏଣୁ ଏହା ସହ କଳାଜିରା ମିଳାଇ ସେବନ କରିବା ଉଚିତ । ଏଣୁ ସମ୍ବତ୍ସରାରମ୍ଭରୁ ହିଁ ଏହି ସେବନ ବିଧି ନିୟମିତରୂପେ ପାଳିତ ହେବା ବିଧେୟ । ମିଶ୍ରି ପରିବର୍ତ୍ତେ ଲବଣ ମିଶ୍ରଣ ବାତନାଶକ, କଫଜନକ ଏବଂ କଳାମରିଚ କଫନାଶକ ଅଟେ ।

ଧ୍ୱଜାସ୍ଥାପନ ବିଜୟର ଚିହ୍ନ । ସମ୍ବତ୍ସର ଆରମ୍ଭରେ ଐଶ୍ୱର୍ଯ୍ୟ ଓ ଆନନ୍ଦର ସୂଚକ । ପଞ୍ଚାଙ୍ଗଶ୍ରବଣ ମଧ୍ୟ ଏକ ଉତ୍ତମ ଅଭ୍ୟାସ, ଯାହାକି ଏହି ପ୍ରଥମ ଦିନରୁ ହିଁ ଆରବ୍ଧ ହୁଏ । ବ୍ରହ୍ମାଙ୍କ ଆରାଧନା ଧର୍ମମୂଳକ ଓ ମନରେ ପବିତ୍ରଭାବ ଉତ୍ପାଦକ । ବ୍ରହ୍ମା ସୃଷ୍ଟିକର୍ତ୍ତା । ଏଣୁ ଏହି ନବୀନ ବର୍ଷ ଆରମ୍ଭରୁ ସମସ୍ତେ ବ୍ରହ୍ମାଙ୍କ ପରି ସୃଜନଶୀଳ ହୋଇ ନୂଆ ନୂଆ ଦିଗ୍‌ଦର୍ଶନ ଦିଅନ୍ତୁ ଏହାହିଁ ଏହାର ତାତ୍ପର୍ଯ୍ୟ । ଦେଶ ସମୃଦ୍ଧିଶାଳୀ ହେଉ । ନୂତନ ଚିନ୍ତାଧାରା ସର୍ବତ୍ର ପ୍ରବେଶ କରୁ । ଏ ପୁଣ୍ୟ ଦିବସର ଏହି ମହାନ୍ ଆହ୍ୱାନପ୍ରତି ଭାରତୀୟମାନେ ସଚେତନ ହୁଅନ୍ତୁ ।

# ଅଶୋକାଷ୍ଟମୀ

ରଘୁକୁଳତିଳକ ରାମଚନ୍ଦ୍ର ବିଭୀଷଣଙ୍କୁ ପଚାରୁଛନ୍ତି—"ହେ ବିଭୀଷଣ ! ଦେବତାପ୍ରଦ ସମସ୍ତ ବାଣ ଲଙ୍କାପତି ରାବଣ ଉପରକୁ ନିକ୍ଷେପ କଲି, ମାତ୍ର ସବୁ ବ୍ୟର୍ଥ ହେଲା । ପଞ୍ଚାଶ କୋଟି ମୁକୁଟପିନ୍ଧା ଯୋଦ୍ଧା, ତାହାର ଅଠର ଗଣ୍ଡା କୁମର, ତେରଶତ ନାତି, ସାତ ଶଙ୍ଖ ମତ୍ତହସ୍ତୀ, ଦଶ ବୃନ୍ଦ ଅଶ୍ୱ, ପାଞ୍ଚ ଖର୍ବ ବାଦ୍ୟକାର ଏହି ହାତରେ ମୋର ମରିଛନ୍ତି । ମାତ୍ର ରାବଣ ମୋର ସମସ୍ତ ଶରକୁ ଭ୍ରୂକ୍ଷେପ ନ କରି ଔଦ୍ଧତ୍ୟ ପ୍ରକାଶ କରି ବରଂ ମୋତେ ଉପହାସ କରୁଛି । ଏହାର କାରଣ ତୁମେ କହିପାରିବ କି ?" ବିଭୀଷଣ ନତ ବଦନରେ କହିଲେ--"ହେ ରାଘବେନ୍ଦ୍ର ! ଏ ଅତି ଗହନ କଥା । ଶିବଭକ୍ତ ରାବଣ ଶକ୍ତିବଳରେ ବଳୀୟାନ । ପରମ ଶାକ୍ତ ଲଙ୍କାପତି ପ୍ରତିମାସରେ ଆଦ୍ୟାଶକ୍ତିଙ୍କୁ ଉପାସନା କରି ତାଙ୍କୁ ଆୟତ୍ତ କରିଛି । ଏଇ ଆପଣ ଲକ୍ଷ୍ୟ କରନ୍ତୁ, ରାବଣର ପୃଷ୍ଠଦେଶରେ ଯେଉଁ ନୀଳବର୍ଣ୍ଣର ବିକଟ ଜ୍ୟୋତିପୂର୍ଣ୍ଣ ଛଟା ଦେଖୁଛନ୍ତି, ସେ ସାକ୍ଷାତ କାଳିମୂର୍ତ୍ତି । ଆପଣଙ୍କର ସମସ୍ତ ବାଣ କରାଳ-ବଦନା ସେହି କାଳିକା ତାଙ୍କ ଗର୍ଭକୁ କ୍ଷେପଣ କରୁଅଛନ୍ତି । ଏଣୁ ଆପଣ ବସନ୍ତ ଋତୁର ଏହି ଚୈତ୍ର ମାସରେ ଦୁର୍ଗାପୂଜା କରି ଦେବୀଙ୍କୁ ସନ୍ତୁଷ୍ଟ କରନ୍ତୁ । ଧରିତ୍ରୀ ବର୍ତ୍ତମାନ ନବ କିଶଳୟରେ ମଣ୍ଡିତା । ଏଣୁ ନବପତ୍ର ଓ ପଦ୍ମ ଦ୍ୱାରା ଦୁର୍ଗାଙ୍କୁ ସନ୍ତୁଷ୍ଟ କରନ୍ତୁ । ଆପଣ ନିଶ୍ଚୟ ବିଜୟୀ ହେବେ ।"

ସାତ ଦିନ ଧରି ନବପତ୍ର, ଯଥା—ପଲାଶ, ତୁଳସୀ, ଅତସୀ ବିଲ୍ୱପତ୍ର, ପ୍ରିୟଙ୍ଗୁ, ମାରୁତକ, ଶମୀ, କମ୍ବିଲ ଓ ତମାଳ ଓ ସହସ୍ରପଦ୍ମ ଦ୍ୱାରା ଦେବୀ-ପୂଜା ଚାଲିଲା । ଶୁକ୍ଳପକ୍ଷ ମହାସପ୍ତମୀ ପରଦିନ ଅର୍ଥାତ୍ ଅଷ୍ଟମୀଦିନ ପୂଜାର ଶେଷ ଦିବସରେ ଶ୍ରୀରାମଚନ୍ଦ୍ର ପୂଜାରେ କାଳିକାଙ୍କୁ ସନ୍ତୁଷ୍ଟ କରାଇ ରାବଣଠାରୁ ତାଙ୍କର ମାୟା ତୁଟାଇଲେ ଓ ଶେଷରେ ବ୍ରହ୍ମଶରରେ ରାବଣ ବଧ ହେଲା । ଏଣୁ ଯୁଦ୍ଧକ୍ଷେତ୍ରରେ ଉପୁଜିଥିବା 'ଶୋକ'କୁ ଶିବ ଓ ଶିବାଙ୍କ ପ୍ରସାଦ ଦ୍ୱାରା ରାମଚନ୍ଦ୍ର ବିନଷ୍ଟ କରିଥିବାରୁ ଏହା 'ଅଶୋକାଷ୍ଟମୀ' ନାମ ଧାରଣ କରିଥିବା ପୁରାଣରୁ ଜଣାଯାଏ ଓ

ବିଜୟଶ୍ରୀ ମଣ୍ଡିତ ରାମଚନ୍ଦ୍ର ରଥରେ ହରପାର୍ବତୀଙ୍କୁ ଆନନ୍ଦରେ ବୁଲାଇ ଥିବାର ମଧ୍ୟ ଜଣାଯାଏ । ଏହା ମଧ୍ୟ ବାସନ୍ତିକ ଦୁର୍ଗୋତ୍ସବ ନାମରେ ନାମିତ ।

ବିଶେଷତଃ ଚୈତ୍ର ମାସରେ ଶିବଙ୍କର ଚତୁର୍ଦ୍ଦଶ ଉତ୍ସବ ମଧ୍ୟରୁ ଯେଉଁ ଦୁଇଟି ଉତ୍ସବ ପାଳିତ ହୁଏ, ଅଶୋକୋତ୍ସବ ବା ଅଶୋକାଷ୍ଟମୀ ତନ୍ମଧ୍ୟରୁ ଅନ୍ୟତମ । କପିଳସଂହିତା, ସ୍ୱର୍ଣ୍ଣାଦ୍ରିମହୋଦୟ ଓ ଏକାମ୍ର-ଚନ୍ଦ୍ରିକାରେ ଏହି ଯାତ୍ରାର ଅନୁବନ୍ଧ ସମ୍ପର୍କରେ ସ୍ଥୂଳ ବିବରଣୀ ଦିଆ-ଯାଇଅଛି । ଏକାମ୍ରକ୍ଷେତ୍ରରେ ଚୈତ୍ର ମାସରେ ଶୁକ୍ଳାଷ୍ଟମୀ ତିଥିରେ ଶ୍ରୀଲିଙ୍ଗ ରାଜଙ୍କ ଚଳନ୍ତିପ୍ରତିମା ଶ୍ରୀ ଚନ୍ଦ୍ରଶେଖର ବିଗ୍ରହଙ୍କୁ ରଥରେ ବେଢ଼ାର ଉତ୍ତର-ପୂର୍ବ କୋଣଠାରୁ ରାମେଶ୍ୱର ମନ୍ଦିର ପର୍ଯ୍ୟନ୍ତ ନିଆଯାଏ ଓ ଯେଉଁ ବ୍ୟକ୍ତି ଏହି ଦିନ ରଥସ୍ଥ ହରଗିରିଜଙ୍କୁ ସନ୍ଦର୍ଶନ କରେ ତାହାର ବ୍ରହ୍ମହତ୍ୟାଦି ପାତକ ନଷ୍ଟ ହୁଏ ଓ ଚଣ୍ଡାଳଯୋନିଜାତମାନେ ମଧ୍ୟ ମୁକ୍ତି-ଲାଭ କରନ୍ତି । ଶାସ୍ତ୍ରରେ ଅଛି—

"ଏକାମ୍ରେ ଚୈତ୍ର ମାସେ ଯଃ
ପଶ୍ୟେଦ୍ରଥ ଗତଂ ହରଂ
ବ୍ରହ୍ମହତ୍ୟାଦି ପାପାନି
ଛିତ୍ତ୍ୱା ମୋକ୍ଷ ମାପ୍ନୁୟାତ୍
ଉବାଚ ରାଘବଂ ଶମ୍ଭୁ
ଚୈତ୍ର ଶୁକ୍ଳାଷ୍ଟମୀ ଦିନେ
ଯାସ୍ୟେ ଗିରିଜୟା ସାର୍ଦ୍ଧଂ
ତବ ଲିଙ୍ଗସ୍ୟ ସନ୍ନିଧି
ରଥସ୍ଥଂ ତତ୍ର ମାଂ ଦୃଷ୍ଟ୍ୱା
ବ୍ରହ୍ମହତ୍ୟାଦି ପାତକୈ
ମୁଚ୍ୟତେ ଯତ୍ର ସନ୍ଦେହ
ସ୍ତ୍ୱପି ଚ୍ଣ୍ଡାଳ ଯୋନିଜଃ ॥
( ଏକାମ୍ରଚନ୍ଦ୍ରିକା—ପୃଷ୍ଠା ୮୯ )

ଶିବଙ୍କ ଏହି ରଥ ନିର୍ମାଣ ସମ୍ବନ୍ଧରେ ଏକାମ୍ରଚନ୍ଦ୍ରିକାରେ ବର୍ଣ୍ଣିତ ହୋଇଅଛି ଯେ, ପ୍ରଥମେ ଉତ୍ତମ ବର୍ଦ୍ଧକୀ (ବଢ଼େଇ) ମାନଙ୍କୁ ପୂଜା,

ବସ୍ତାଦ ଦ୍ୱାରା ଆମନ୍ତ୍ରଣ କରି ଆଣିବାକୁ ହେବ ଓ ରଥ ଅଶ୍ୱସଂଯୋଗ, ଦିବ୍ୟସିଂହାସନ ସଂଯୁକ୍ତ ସ୍ୱର୍ଣ୍ଣ କଳଶଯୁକ୍ତ ଷୋଡ଼ଶ କରମଣ୍ଡଳ, ରଥ ତୋରଣଯୁକ୍ତ ଓ ଧ୍ୱଜ ତ୍ରିଶୂଳଶୋଭିତ କରିବାକୁ ହେବ ଏବଂ ତତ୍ପରେ ଏହାକୁ ବିଧିପୂର୍ବକ ପ୍ରତିଷ୍ଠା କରିବାକୁ ହେବ । ଯଥା—

"ଚତୁସ୍ତୋରଣ ସଂଯୁକ୍ତଂ
ସୁବର୍ଣ୍ଣ କଲଶାନ୍ୱିତଂ
ସୋରଭେସ୍ୱଂ ଧ୍ୱଜଂ ଚୈବ
ତ୍ରିଶୂଳେ ପରିଶୋଭିତଂ
ଚତୁରଶ୍ୱସମାଯୁକ୍ତଂ ବ୍ରଗ ସାରଥିମୁତ୍ତମଂ
ଦିବ୍ୟସିଂହାସନଂ ଚୈବ
କୃର୍ଯ୍ୟାଦେବ ରଥୋତ୍ତମଂ ।"

ଏହି ରଥର ନାମ ପୁଣି "ଦେବ ଦଳନ' ବୋଲି ଉକ୍ତ ଶାସ୍ତ୍ରରେ ଲେଖାଅଛି । ଯଥା—

"ଏବଂ ରଥୋତ୍ତମଂ କୃତ୍ୱା
ସର୍ବାବସ୍ୱବ ସୁନ୍ଦରଂ
ନାମ୍ନା ଚ ଦେବଦଳନଂ ପ୍ରତିଷ୍ଠା
ବିଧି ମାଚରେତ୍ ।"

ମାତ୍ର ଏ ରଥ 'ରୁକୁଣାରଥ ନାମରେ ପରିଚିତ । ଗଣପତି, ନାରାୟଣ, ରୁଦ୍ର, ଅମ୍ବିକା ଓ ଭାସ୍କର ଏହି ପଞ୍ଚ ଦେବତାଙ୍କର ବିଭିନ୍ନ ନାମଧେୟ 'ରଥ' ଥିବାର ପ୍ରମାଣ ମିଳେ । ଗଣେଶଙ୍କ ରଥ 'ଖଦିର' ନାରାୟଣଙ୍କର 'ନନ୍ଦଘୋଷ' ରୁଦ୍ରଙ୍କର 'ଅମୋଘ' ଅମ୍ବିକା ଅର୍ଥାତ୍ ଶକ୍ତିଙ୍କର 'ରୁକ୍ମଣୀ' ଓ ଭାସ୍କର ଅର୍ଥାତ୍ ସୂର୍ଯ୍ୟଦେବଙ୍କ ରଥ ନାମ 'ହିରଣ୍ୟ ଚେତସ' ବୋଲି ଶାସ୍ତ୍ରୋଲ୍ଲେଖ ଅଛି । ଏଣୁ ଅଶୋକାଷ୍ଟମୀ ଦିନ ବ୍ୟବହୃତ ରଥ 'ରୁକୁଣାରଥ'ରେ ନାମିତ ହେବା ମୂଳରେ ଶକ୍ତିପୂଜା ପ୍ରାଧାନ୍ୟ ସୂଚିତ । ଏହି ରୁକ୍ମଣୀରଥ ସମ୍ଭବତଃ 'ରୁକୁଣାରଥ'ରେ ପରିଣତ ହୋଇଛି । ଏହି ରଥ ସମ୍ବନ୍ଧୀୟ ଲେଖାରେ ରାମଚନ୍ଦ୍ରଙ୍କର ନାମୋଲ୍ଲେଖ ବହୁ ସ୍ଥାନରେ ଦେଖାଯାଏ । ଏଣୁ ପ୍ରକାରାନ୍ତରେ ଗିରିଜା ବା କଳିକାଙ୍କ

ପ୍ରତି ରାମଙ୍କ ପ୍ରଚ୍ଛନ୍ନ ପୂର୍ବଭକ୍ତି ଓ ନିଷ୍ଠା ପ୍ରତିପାଦିତ ହେବାର ଜଣାଯାଏ । ପୁନଶ୍ଚ ରାମେଶ୍ବର ମନ୍ଦିର ପର୍ଯ୍ୟନ୍ତ ରଥ ଆସିବା ବିଧି ଥିବାରୁ ରାମଙ୍କ ପ୍ରତି ଶିବଙ୍କ ଆନ୍ତରିକତା ଥିବାର ଅନ୍ୟ ଏକ ମତ ସୁପ୍ରତିଷ୍ଠିତ । ଏହି ରଥ ଚଳିବା ପୂର୍ବରୁ ପ୍ରଥମେ 'ରଥ'ର ନିର୍ବିଘ୍ନ ଚଳନ ନିମନ୍ତେ ପ୍ରାର୍ଥନା କରାଯିବା ବିଧି ପୁରାଣରେ ଲେଖାଅଛି—

'ପୃଥ୍ୱୀଦେବୀ ନମସ୍ତୁଭ୍ୟଂ
ଶିବାନନ୍ଦ ପ୍ରବର୍ଦ୍ଧିନି
ରଥରୂପ ଧରାସି ତ୍ୱଂ
ମରୁଦ୍‌ବଦ୍ ଗମନଂ କୁରୁ
ଯଥା ପୁରବଧେ ଦେବି
ପୁରା ତ୍ୱଂ ଶୀଘ୍ରଗାମିନୀ
ତଥା ତୁ ରାମଚନ୍ଦ୍ରସ୍ୟ
ପ୍ରୀତୟେ ଗମନଂ କୁରୁ ।"

ରଥ ଚଳନ ସମୟରେ ଭେରୀ, ମୃଦଙ୍ଗ, ଶଙ୍ଖ ନାନାଦି ମଙ୍ଗଳବାଦ୍ୟ ବାଦିତ ହେବା ଓ ରଥ କର୍ପୂର ଜଳ ପୁଷ୍ପ ମଣ୍ଡିତ ହେବା ଓ ଧୀରେ ଧୀରେ ଟଣା ଯିବା ବିଧି ମଧ୍ୟ ଶାସ୍ତ୍ର ସମ୍ମତ ।

"ତତେ ଜୟ ଜୟେତ୍ୟୁକ୍ତ୍ୟା
କୁର୍ଯ୍ୟାଦ ବାଦ୍ୟାଂସ୍ତୁ ମଙ୍ଗଳଂ
ଭେରୀ ମୃଦଙ୍ଗ ଶଙ୍ଖାନାଂ
ବଲ୍ଲକୀନାଂଚ ନିସ୍ୱନଂ
ଘନସାରମ୍ବୁ ପୁଷ୍ପାଣି
ପ୍ରକ୍ଷିପେତ୍ତେ ହିୟୋ ଦ୍ୱିଜଃ
ଶନୈଃଶ୍ନୈର୍ନୟେତ୍ତାମ୍
ରଥଂ ତ୍ରିପୁର ବୈରିଣଃ"

ଅଶୋକାଷ୍ଟମୀ ଯାତ୍ରା ମୂଳରେ 'ଅଶୋକ' ଶବ୍ଦର ପ୍ରାଧାନ୍ୟ ସୂଚିତ । ପୂର୍ବ ବର୍ଣ୍ଣିତ ରାମଚରିତାନୁଯାୟୀ 'ରାମ' ବିଗତ ଶୋକ ହୋଇଥିଲେ, ପୁଣି ପାର୍ବତୀ ଅଶୋକ ବୃକ୍ଷ ମୂଳରେ ତପସ୍ୟା କରି

ଶିବଙ୍କୁ ପତିରୂପେ ପାଇ ସିଦ୍ଧମନୋରଥା ଓ 'ଅଶୋକା' (ଶୋକରହିତା) ହୋଇଥିଲେ ବୋଲି ଏହାର ଏପରି ନାମକରଣ ହୋଇଥିବାର ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଓଡ଼ିଆ ଭାଷାକୋଷରେ ଉଲ୍ଲେଖ ଅଛି । ଏହାଛଡ଼ା ଜଣାଯାଏ ତ୍ରେତାଯୁଗରେ ରାବଣ ସୀତାଙ୍କୁ ହରଣ କରିନେଇ ଲଙ୍କାର 'ଅଶୋକ' ବନରେ ରଖିଥିଲା । ସୀତାଦେବୀ ବନ୍ଧନରୁ ମୁକ୍ତ ହେବା ବାଞ୍ଛାରେ ରାମଙ୍କ ପାଦପଦ୍ମ ଧ୍ୟାନ କରି ଆଠଗୋଟି ଅଶୋକ କଳି ଜଳ ସହିତ ସେବନ କରିଥିଲେ । ତଦବଧି ହିନ୍ଦୁମାନେ ସଂସାର ବନ୍ଧନରୁ ମୁକ୍ତହେବା ବାସନାରେ ଅଶୋକାଷ୍ଟମୀ ଦିନ ୮ଟି ଅଶୋକ କଳି ଜଳ ସଙ୍ଗେ ସେବନ କରନ୍ତି ।

'ଅଶୋକ' ଏକ କ୍ଷୁଦ୍ର ପୁଷ୍ପତରୁ । ଫୁଲଗୁଡ଼ିକ ପେନ୍ଥା ପେନ୍ଥା । ଏହା ଦୁଇ ପ୍ରକାର ହେଲେ ହେଁ, ଏଠାରେ ମଧୁମାସ ସମୁଦ୍ଭବ ବା ବସନ୍ତକାଳୀନ ଅଶୋକ ବୃକ୍ଷ ହିଁ ଲକ୍ଷ୍ୟ । କାରଣ ଅଶୋକ ମନ୍ତ୍ର ସମ୍ବନ୍ଧରେ ଲେଖାଅଛି

"ତ୍ୱାମଶୋକ ହରାଭୀଷ୍ଟ
 ମଧୁମାସ ସମୁଦ୍ଭବ
ପିବାମ ଶୋକସନ୍ତପ୍ତୋ
 ମାମଶୋକ ସଦା କୁରୁ" ।

ଅର୍ଥାତ୍ "ହେ ହରପ୍ରିୟ ! ମଧୁମାସ ସମୁଦ୍ଭବ । ଅଶୋକ ! ତୋତେ ମୁଁ ଶୋକସନ୍ତପ୍ତ ହୋଇ ପାନ କରୁଅଛି, ତୁ ମୋତେ ସର୍ବଦା ଅଶୋକ (ଶୋକରହିତ) କର ।" ଅଶୋକାଷ୍ଟମୀରେ ସମବେତ ସ୍ତ୍ରୀ ସମାଜରେ ଓ ବାଳକ ବାଳିକା ମେଳରେ ପୂର୍ବେ ଏହି ଅଶୋକ କଢ଼ି ସ୍ନେହର ଚିହ୍ନ ରୂପେ ଦିଆନିଆ ହୋଇ ପରସ୍ପର "ଓଶକା କଢ଼ି, ମନେ ପକାଇବ ଘଡ଼ିକ ଘଡ଼ି" ବୋଲି ଡକାଡକି ହେଉଥିଲେ ଓ ଏପରିକି ବହୁଦିନ ଧରି ପରସ୍ପରକୁ ଏହି ନାମରେ ଡାକୁଥିଲେ; ମାତ୍ର ଏହା ଆଜି କେବଳ ସ୍ମୃତିରେ ରହିଛି । ପରସ୍ପର ଅଶୋକକଢ଼ି ସମର୍ପଣରେ ଭାବ ବିନିମୟ ମାଧ୍ୟମରେ ଆନନ୍ଦ ଓ ବନ୍ଧୁତା ବଢ଼ନ୍ତି । ଏହାଛଡ଼ା ଆୟୁର୍ବେଦାଚାର୍ଯ୍ୟଙ୍କ ମତାନୁଯାୟୀ 'ଅଶୋକର ଶ୍ରେଷ୍ଠ ଗୁଣ—ଏ ହେଉଛି ବିଷନାଶକ ଓ

ରକ୍ତଦୋଷହାରକ, ପୁଣି ବସନ୍ତ ଋତୁରେ ଏହା ଅମ୍ଳତଭୁକ୍ତ କାର୍ଯ୍ୟ କରେ । ଅଶୋକ ବୃକ୍ଷର ଛେଲ ବାଧକ ଓ ପ୍ରଦର ଆଦି ସ୍ତ୍ରୀ ରୋଗରେ ଏକ ଅବ୍ୟର୍ଥ ମହୌଷଧି ।

'ଅଶୋକୋତ୍ସବ'ର ପ୍ରାଚୀନତା ମହର୍ଷି ବାତ୍ସାୟନଙ୍କ ପ୍ରଣୀତ 'କାମସୂତ୍ର'ରେ ମଧ୍ୟ ଦେଖିବାକୁ ମିଳେ । ବାତ୍ସାୟନଙ୍କ ପର୍ବପର୍ବାଣି ତାଲିକାରେ ଦମନକ ଉତ୍ସବ, ଅଶୋକୋତ୍ସବ ଓ ପୁଷ୍ପୋତ୍ସବ ପ୍ରଭୃତିର ସ୍ପଷ୍ଟ ଉଲ୍ଲେଖ ଅଛି ଏବଂ ତାଙ୍କ ଲିଖିତ ୧୭ଟି ପର୍ବପର୍ବାଣିରୁ ଶେଷ ପାଞ୍ଚୋଟି ଅତି ଜଣାଶୁଣା-ଫୁଲ ଓ ଫଳକୁ କେନ୍ଦ୍ର କରି ପାଳିତ ହେଉଥିଲା ।

ଅଶୋକାଷ୍ଟମୀ ଯାତ୍ରାର ଅନ୍ୟ ଏକ ଆକର୍ଷଣୀୟ ଦୃଶ୍ୟପଟ୍ଟ ହେଉଛି, ଏକାମ୍ର କାନନରେ ମରୀଚକୁଣ୍ଡର ଜଳ ନିଲାମ । ସ୍ୱତନ୍ତ୍ରାୟତନ ବିଶିଷ୍ଟ କେଦାରଗୌରୀ ମନ୍ଦିର ନିକଟସ୍ଥ ମରୀଚକୁଣ୍ଡର ଜଳରେ ପ୍ରଥମେ ସ୍ନାନ କଲେ ବନ୍ଧ୍ୟା ସ୍ତ୍ରୀ ପୁତ୍ରବତୀ ହୁଏ ବୋଲି ବହୁ ଲୋକଙ୍କ ବିଶ୍ୱାସ ଅଛି । ଖ୍ରୀଷ୍ଟୀୟ ନବମ ଶତାବ୍ଦୀର ମଧ୍ୟଭାଗରେ ନିର୍ମିତ ମନୋରମ ପରିବେଶ ତଥା ଚମତ୍କାର ଖୋଦନ କଳାଯୁକ୍ତ ମୁକ୍ତେଶ୍ୱର ମନ୍ଦିର ନିକଟସ୍ଥ ଅପାଂକ୍ତେୟ ମରୀଚକୁଣ୍ଡ ଏହି ଦିନଟି ସକ୍ରିୟ ହୋଇଉଠେ । ଅଷ୍ଟମୀର ପୂର୍ବରାତ୍ରି ଅଧରୁ ସନ୍ତାନାର୍ଥିନୀ ମହିଳାମାନେ ନିଜ ନିଜ ପଣ୍ଡା ଓ ସେବକଙ୍କ ଜରିଆରେ ବହୁ ସଂଖ୍ୟାରେ ସମବେତ ହୋଇ କୁଣ୍ଡର ଜଳ ନିଲାମ ଡାକିବା ବିଧି ଗଢ଼ିଆସୁଛି ଏବଂ ଏହି ଲୋକଚଳଣି ତଥା ହିନ୍ଦୁ ବିଶ୍ୱାସ, ଏପର୍ଯ୍ୟନ୍ତ ମଧ୍ୟ ଶୃଙ୍ଖଳା ତଥା ନିଷ୍ଠାର ସହିତ ପାଳିତ ହୋଇ ଆସୁଛି ।



# ରାମ ନବମୀ

ଯେଉଁ ମଧୁମାସ ଚୈତ୍ର ଶୁକ୍ଳ ପ୍ରତିପଦା ସୃଷ୍ଟିର ପ୍ରଥମ ଦିବସରୂପେ ପଣ୍ଡିତମାନଙ୍କ ଦ୍ୱାରା ସ୍ୱୀକୃତ ତାହା ମଧ୍ୟ ସାମ୍ବତ୍ସର ଦିବସ ରୂପେ ପରିଚିତ, ଯଥା :—

"ଚୈତ୍ର ମାସି ଜଗତ୍‌ବ୍ରହ୍ମା ସସର୍ଜ ପ୍ରଥମେ ଦିନ
ଶୁକ୍ଳପକ୍ଷେ ସମଗ୍ରନ୍ତୁ ତଦା ସୂର୍ଯ୍ୟୋଦୟେ ସତି"

ଓ ଯାହାର ଶୁକ୍ଳ ଅଷ୍ଟମୀ 'ଅଶୋକାଷ୍ଟମୀ' ରୂପେ ବହୁ ସ୍ମୃତି-ଧାରକ, ସେହି ଚୈତ୍ରର ଶୁକ୍ଳ ନବମୀ ତିଥି ପୁଣ୍ୟ ରାମ ଜନ୍ମ ଦିବସ ରୂପେ ଭାରତରେ ହିନ୍ଦୁଙ୍କ ଦ୍ୱାରା ନିଷ୍ଠାସହ ପାଳିତ ହୋଇ ଆସୁଅଛି । ରାମାୟଣରୁ ଜଣାଯାଏ ଚୈତ୍ର ଶୁକ୍ଳ ନବମୀ ଦିନ କର୍କଟ ଲଗ୍ନରେ ପୁନର୍ବସୁ ନକ୍ଷତ୍ର ସମୟେ ପଞ୍ଚଗ୍ରହ ଉଚ୍ଚସ୍ଥାନରେ ଓ ସୂର୍ଯ୍ୟ ମେଷ ରାଶି ଉପରେ (ମଧ୍ୟାହ୍ନ ସମୟରେ ) ଥିବାବେଳେ ପରମାତ୍ମା ରାମ ଆବିର୍ଭୂତ ହୋଇଥିଲେ । ଏହି ସମୟରେ ଆକାଶରୁ ଦିବ୍ୟ ପୁଷ୍ପ ବର୍ଷଣ ହୋଇଥିଲା ।

"ମଧୁମାସେ ସିତେ ପକ୍ଷେ ନବମ୍ୟାଂ କର୍କଟେ ଶୁଭେ
ପୁନର୍ବସ୍ୱୃକ୍ଷ ସହିତେ ଉଚ୍ଚସ୍ଥେ ଗ୍ରହ ପଞ୍ଚକେ
ମେଷଂ ପୂଷଜ—ସଂପ୍ରାପ୍ତେ ପୁଷ୍ପ ବୃଷ୍ଟି ସମାକୁଳେ
ଆବିରାସୀଦ୍ ଜଗନ୍ନାଥଃ ପରମାତ୍ମା ସନାତନଃ"

(ଅଧ୍ୟାତ୍ମ ରାମାୟଣ—ବାଳକାଣ୍ଡ—୨୪-୨୫)

ପ୍ରଶ୍ନଉଠେ 'ରାମ' ଚୈତ୍ର ମାସର ଉକ୍ତ ପକ୍ଷ, ତିଥିରେ ଜନ୍ମ ନେବାର ମୂଳ ରହସ୍ୟ କଣ ?

ବସନ୍ତ ଓ ବର୍ଷା ଦୁଇଟି ସର୍ବୋତ୍ତମ ଋତୁରୂପେ ପରିଗଣିତ । ଈଶ୍ୱର ପୂର୍ଣ୍ଣ ପୁରୁଷୋତ୍ତମ ହୋଇଥିବାରୁ ଏହି ଦୁଇ ଋତୁ ସହ ତାଙ୍କର ମଧ୍ୟ ସମ୍ପର୍କ ରହିଛି । ଭଗବାନ ରାମ 'ବସନ୍ତରେ' ଓ ଲୀଳାମୟ ଶ୍ରୀକୃଷ୍ଣ 'ବର୍ଷା'ରେ ଅବତାର ଗ୍ରହଣ କରିଛନ୍ତି । ବସନ୍ତର ପ୍ରଥମ ମାସ

ଚୈତ୍ର ଓ ଦ୍ୱିତୀୟ ମାସ ବୈଶାଖ, ଚୈତ୍ରର ଅନ୍ୟ ବୈଦିକ ନାମ 'ମଧୁ' ଓ ବୈଶାଖ 'ମାଧବ' ନାମରେ ନାମିତ (ଅବଶ୍ୟ ଆଧୁନିକ ମତବାଦୀମାନେ ଫାଲ୍‌ଗୁନ ଓ ଚୈତ୍ରକୁ ବସନ୍ତର ପର୍ଯ୍ୟାୟଭୁକ୍ତ କରିଛନ୍ତି) । ବସନ୍ତର ଅନ୍ୟତମ ମାସ ବୈଶାଖରେ ଅଧିକ ଉଷ୍ଣତା ଦେଖାଯାଏ ଓ ଏ ମାସରେ ଫୁଲ ଅପେକ୍ଷା ଫଳର ପ୍ରାଧାନ୍ୟ ବେଶୀ (ଏହା ପୂର୍ବେ ସୂଚିତ), ଚୈତ୍ରର ସୌରଭ ଓ ଉଲ୍ଲାସ ବୈଶାଖ ମାସରେ କମ୍ । ଏଣୁ ଚୈତ୍ରର (କୁସୁମାକର) (ବସନ୍ତର ଅନ୍ୟନାମ) ପଦବୀପ୍ରାପ୍ତି ଯଥାର୍ଥ ।

ଏଣୁ ଏହି ମଧୁ ମାସ ଚୈତ୍ରରେ ପୂର୍ଣ୍ଣାବତାରୀ ରାମଙ୍କର ଆବିର୍ଭାବ ଯୁକ୍ତିଯୁକ୍ତ, ଦ୍ୱିତୀୟତଃ ରାମ ଶୁକ୍ଳପକ୍ଷ ନବମୀରେ ଜନ୍ମିଛନ୍ତି । ଶୁକ୍ଳପକ୍ଷ, ମାସର ପ୍ରଥମ ସମୟ ଭାଗରେ ଭଗବାନ ରାମଚନ୍ଦ୍ର ମର୍ଯ୍ୟାଦା ପୁରୁଷୋତ୍ତମଙ୍କ କଳ୍ପିତ ମର୍ଯ୍ୟାଦା ପ୍ରକାଶିତ ହେଉଛି । ଏଣୁ ଏ ଦୃଷ୍ଟିରୁ ମଧ୍ୟ ରାମଚନ୍ଦ୍ରଙ୍କ ଅବତରଣ ଶାସ୍ତ୍ରସମ୍ମତ । ପୁଣି ତିଥି ଦୃଷ୍ଟିରୁ ବିଚାର କଲେ ଜଣାଯାଏ, ଚନ୍ଦ୍ରମା ଜୀବନ ତଥା ଶାନ୍ତିର ପ୍ରତୀକ । ଏହାଙ୍କ ଅନ୍ୟ ନାମ ସୁଧାକର । ଅଷ୍ଟମୀ ତିଥିରେ ଉଭୟ 'ପ୍ରକାଶଭାଗ' ଓ 'ଅନ୍ଧକାରର ଭାଗ' ସମାନ ଥାଏ । ମାତ୍ର ନବମୀ ଦିନ ଅଶାନ୍ତି ବା ଅନ୍ଧକାର କାଳଭାଗ କ୍ଷୀୟମାଣ, ଶାନ୍ତି ପ୍ରକାଶର ମାତ୍ରା ଅଧିକ ଥାଏ । ଦିବା ଭାଗ ସ୍ପଷ୍ଟ ଓ ପ୍ରକାଶିତ; କିନ୍ତୁ ଲୁପ୍ତ ରହେ ନାହିଁ । ପ୍ରକାଶର ପୂର୍ଣ୍ଣତମ ସମୟ ମଧ୍ୟାହ୍ନ ଓ ଯୁକ୍ତ୍ୟନୁକୂଳ ସମୟ । ରାମ କାହିଁକି ଦିନରେ ଜନ୍ମ ହେଲେ ଓ ତାଙ୍କ ନାମ କାହିଁକି 'ରାମଚନ୍ଦ୍ର' ହେଲା, ଏ ସମ୍ବନ୍ଧରେ ଏକ ଚମତ୍କାର ତଥ୍ୟ ଏମ୍. ରାମକ୍ରିଷ୍ଣନଙ୍କ ଏକ ଇଂରେଜୀ ଲେଖାର ମର୍ମ ଏଠାରେ ପ୍ରଦତ୍ତ ହେଲା ।

ରାମଙ୍କ ଜନ୍ମପରେ ନିଶାପତି ଦେବତା 'ଚନ୍ଦ୍ର' ତାଙ୍କ ଦର୍ଶନ ଆଶାରେ ଗଲେ । ମାତ୍ର ତାଙ୍କ ମନରେ ଏକ ଅକୁହା ଦୁଃଖ ରହିଥିଲା । ସର୍ବଜ୍ଞ ରାମଚନ୍ଦ୍ର ତାଙ୍କ ମନର ବେଦନା ଜାଣିପାରି ସ୍ମିତ ହାସରେଖା ଫୁଟାଇ କହିଲେ, "ତୁମର ଉଜ୍ଜ୍ୱଳ ମୁଖମଣ୍ଡଳରେ ବିଷାଦର ଛାୟା କାହିଁକି ? ଦୟାକରି ମନଖୋଲି ପ୍ରକାଶ କର ।" ଚନ୍ଦ୍ର ବିନୀତ ଭାବେ କହିଲେ—"ପ୍ରଭୋ ! ପତିତପାବନ, ଆର୍ତ୍ତନାଶନ ଧର୍ମସଂସ୍ଥାପନ ଓ ଦୁଷ୍କୃତ ବିନାଶ, ଆପଣଙ୍କ ଅବତାରର—ଉଦ୍ଦେଶ୍ୟ । ମାତ୍ର ମୋର ବୁଦ୍ଧିକୁ ଆସୁନାହିଁ ଆପଣ ଦିନରେ କାହିଁକି ଜନ୍ମ ନେଲେ ?

ରାତି ତାହାର ଅମାଅନ୍ଧକାର ଯୋଗୁ ନିନ୍ଦିତ । ରାତି ଦୁଷ୍କାର୍ଯ୍ୟର ପ୍ରତୀକ । ଏ ଅନ୍ଧକାର ମଧ୍ୟରେ ସଂସାରର ସକଳ ପାପ ଓ ଅକାର୍ଯ୍ୟ ଘଟେ । ମନ୍ଦମତି ଲୋକମାନେ ଏହି ରାତିରେ ଚୌର୍ଯ୍ୟବୃତ୍ତି କରିଥାନ୍ତି । ତାଲାଭାଙ୍ଗିବା, ଡକାୟତି କରିବା ଇତ୍ୟାଦି ଦୁଷ୍କୃତିରେ ଲିପ୍ତ ରହନ୍ତି । ଏଣୁ ହେ ପତିତପାବନ ! ଆପଣଙ୍କ ଉଚିତ ଏହି ପାପୀତାପୀମାନଙ୍କୁ ଉଦ୍ଧାର କରିବା ନିମନ୍ତେ ଆପଣଙ୍କର ଅନ୍ତତଃ ରାତିରେ ଜନ୍ମହେବା ଉଚିତ ଥିଲା । ଦ୍ୱିତୀୟତଃ ଆପଣ ମର୍ତ୍ତ୍ୟରେ ଅବତରଣ କରିଛନ୍ତି । ଆପଣ ସକଳ ପ୍ରକାର ଉଚ୍ଚତମ ଆଦର୍ଶର ଅଧିକାରୀ, ପ୍ରତି ସଦ୍‌ଗୁଣର ସ୍ୱୟଂ ପ୍ରକାଶ ଓ ସକଳ ବିପଦରୁ ଊର୍ଦ୍ଧ୍ୱରେ । ସାଧାରଣତଃ ନେତା-ମାନେ 'ପକ୍ଷପାତ' ଦୋଷରେ ନିନ୍ଦିତ ହୁଅନ୍ତି । ଏ ଦୃଷ୍ଟିରୁ ମଧ୍ୟ ଆପଣ ଦୋଷଯୁକ୍ତ । ଲୋକେ କହିବେ ସୂର୍ଯ୍ୟ ଦିନର ଦେବତା ଓ ସୂର୍ଯ୍ୟଦେବ ରାମଙ୍କ ପୂର୍ବପୁରୁଷ ହୋଇଥିବାରୁ ରାମ ଦିନରେ ଜନ୍ମ ନେଇଛନ୍ତି ।''

ପରଂବ୍ରହ୍ମ ରାମ ଧୈର୍ଯ୍ୟର ସହ ଚନ୍ଦ୍ରଙ୍କୁ ହସି ହସି ଉତ୍ତର ଦେଲେ, ''ତୁମର ଯୁକ୍ତି ବଳିଷ୍ଠ । ସଂସାର ଜ୍ଞାନ ଦୃଷ୍ଟିକୋଣରୁ ତୁମ ବାକ୍ୟ ମଧୁରତର ତଥାପି ତୁମ ମନୋଦୁଃଖ ଦୂର ନିମନ୍ତେ, ଏତିକି ମାତ୍ର ମୁଁ ଶପଥ କରି କହିପାରେ ଯେ ମୁଁ ପରବର୍ତ୍ତୀ ଅବତାର 'ଶ୍ରୀକୃଷ୍ଣ' ଜନ୍ମ ନେଲାବେଳେ ରାତିର ଅର୍ଦ୍ଧ ଭାଗରେ ଜନ୍ମ ନେବି ଓ ତୁମର ପୂର୍ଣ୍ଣ ରାଜତ୍ୱ ସମୟରେ ମୁଁ ଧରାରେ ଅବତରଣ କରିବି ।''

ରାମ ତୀକ୍ଷ୍ଣ ଦୃଷ୍ଟିରେ ଚନ୍ଦ୍ରଙ୍କ ମୁଖକୁ ଅନାଇ ଦେଖିଲେ ଯେ ତଥାପି ବିଷାଦର ଛାୟା ରହିଛି । ଏଣୁ ପଚାରିଲେ, ''ତୁମର ତ ପୁଣି ଦୁଃଖ ରହିଲା ଓ ତୁମେ ବୋଧେ ମୋ କଥାରେ ସନ୍ତୁଷ୍ଟ ନୁହଁ ଆଉ ପୁଣି କି ସନ୍ଦେହ ଅଛି କୁହ ?'' ଚନ୍ଦ୍ର କହିଲେ, ''ପ୍ରଭୋ ! ଆପଣଙ୍କ କଥାରେ କଣ ମୋର ସନ୍ଦେହ ଥାଇପାରେ ? ମାତ୍ର ଗୋଟିଏ କଥା ଭାବୁଛି । ସେ ପବିତ୍ର ଦିନ କେବେ ଆସିବ ? ମୁଁ ଏତେଦିନ କିପରି ଅପେକ୍ଷା କରିବି ? ଆପଣଙ୍କ ପରବର୍ତ୍ତୀ ଅବତାର କଣ ଏତେ ସହଜ ଯେ ମୋତେ ବର୍ଷ ବର୍ଷ ଅପେକ୍ଷା କରିବାକୁ ହେବ ।''

ବର୍ତ୍ତମାନ ରାମଙ୍କ ଅଧରରେ ପୁଣି ହସ ଫୁଟି ଉଠିଲା । ସେ କହି ଉଠିଲେ ବର୍ତ୍ତମାନ ମୁଁ ଜାଣି ପାରିଲି । ମୁଁ ତୁମକୁ ମୋ ସହିତ ମିଶାଇ

ହେଉଛି । ଏହି ମୁହୂର୍ତ୍ତରୁ ତୁମ ନାମ 'ଚନ୍ଦ୍ର' ମୋ ନାମ 'ରାମ' ସହିତ ଯୋଗ ହେଲା ।

ଏହିପରି ରାମ 'ରାମଚନ୍ଦ୍ର ହେଲେ । ଏହି 'ରାମନାମ' ଅବଶ୍ୟ ବହୁ ପଣ୍ଡିତଙ୍କ ନିକଟରେ ବହୁ ଅର୍ଥବାଚକ । ବଶିଷ୍ଠ ଦଶରଥ ନନ୍ଦନଙ୍କୁ ଉଭୟ 'ବିଷ୍ଣୁ' ଓ 'ଶିବ'ଙ୍କ ପ୍ରତୀକରୂପେ କଳ୍ପନା କରି ରାମ ନାମ ଦେଇଥିଲେ । 'ରାମ'– 'ରା' ଅର୍ଥ ଓଁ ନମୋ ନାରାୟଣାୟ ଓଁ 'ମ' ଅର୍ଥ ଓଁ ନମଃ ଶିବାୟ । ଏଣୁ ରାମ ଉଭୟ ହରିହରାତ୍ମକ । ରାମାୟଣରୁ ଜଣାଯାଏ ବିଜ୍ଞାନଦ୍ୱାରା ଅଜ୍ଞାନ ନାଶ ହେବା ପରେ ମୁନିମାନେ ଯାହାକୁ ରମଣ କରନ୍ତି । ଅଥବା ଯେ ନିଜର ସୌନ୍ଦର୍ଯ୍ୟ ଦ୍ୱାରା ଭକ୍ତଜନ ଚିତ୍ତକୁ ଆନନ୍ଦମୟ କରେ ସେ ରାମ ।

"ଯସ୍ମିନ ରମନ୍ତେ ମୁନୟୋ ବିଦ୍ୟାୟା ଜ୍ଞାନ ବିପ୍ଳବେ
ତଂ ଗୁରୁଃ ପ୍ରାହ ରାମେତି ରମଣା ଦ୍ରାମ ଇତ୍ୟପି ।"

ଏହିପରି ଭାବେ ଗୁରୁ ସଂସାର ପୋଷକ କୈକେୟୀ ପୁତ୍ରର ନାମ 'ଭରତ' ସମସ୍ତ ସୁଲକ୍ଷଣଯୁକ୍ତ ତୃତୀୟ ପୁତ୍ରର ନାମ 'ଲକ୍ଷ୍ମଣ' ଓ ଶତ୍ରୁଘାତକ ଚତୁର୍ଥ ପୁତ୍ରର ନାମ ଶତ୍ରୁଘ୍ନ ଦେଲେ ।

"ଭରତ୍ୟାଞ୍ଚିତରଥୋ ନାମ ଲକ୍ଷ୍ମଣଂ ଲକ୍ଷଣାନ୍ୱିତମ୍
ଶତ୍ରୁଘ୍ନଂ ଶତ୍ରୁହନ୍ତାର ମେବଂ ଗୁରୁର ଭାଷତ"

( ଅଧ୍ୟାତ୍ମ ରାମାୟଣ—ବାଳଖଣ୍ଡ—୪୧ )

ରାମ ନାମର ମହତ୍ତ୍ୱ ଭାଷାରେ ଅପ୍ରକାଶ୍ୟ । ମାତା ପାର୍ବତୀ ଶିବଙ୍କୁ ପଚାରିଲେ, "ବିଷ୍ଣୁଙ୍କ" ସହସ୍ର ନାମ ବିଜ୍ଞ ଲୋକମାନେ କିପରି ଆବୃତ୍ତି କରି ପାରିବେ ?" ଶିବ ଉତ୍ତର ଦେଇ କହିଲେ, "ହେ ବରାନନେ ! ଅତି ସହଜ ଓ ସରଳ ମନ୍ତ୍ର ହେଉଛି "ରାମନାମ ଉଚ୍ଚାରଣ" ।

"ରାମ ରାମେତି ରାମେତି ରମେ ରାମେ ମନୋରମେ
ସହସ୍ର ନାମ ତତ୍ତୁଲ୍ୟଂ ରାମନାମ ବରାନନେ !"

ବାସ୍ତବିକ୍ ଶିବହିଁ ରାମ ନାମର ମାହାତ୍ମ୍ୟ ପୂର୍ଣ୍ଣତଃ ଉପଲବ୍ଧି କରିଥିଲେ ।

ସୂତ ଋଷିଙ୍କୁ ନାରଦ ରାମନାମର ମହତ୍ତ୍ୱ ପଚାରିଥିଲେ । ମୁନି ଶ୍ରେଷ୍ଠ ଉତ୍ତର ଦେଇଥିଲେ—ଶ୍ରୀରାମ ଶବ୍ଦର ଅର୍ଥ—ମହାଦେବ ହିଁ ପୂର୍ଣ୍ଣରୂପେ ଜାଣନ୍ତି । ପାର୍ବତୀ ତାର ଅଧା ଜାଣନ୍ତି ଓ ମୁଁ ତାର ଅଧା ଜାଣେ ।

"ଶ୍ରୀରାମ ଗୀତା ମାହାତ୍ମ୍ୟ କୃତସ୍ନ ଜାନାତି ଶଙ୍କରଃ
ତଦର୍ଦ୍ଧଂ ଗିରିଜାବେତ୍ତି ତଦର୍ଦ୍ଧଂ ବେଦ୍ୟହଂ ମୁନେ ।"

ଶିବ ପୂର୍ଣ୍ଣ ବ୍ରହ୍ମ "ରାମ"ଙ୍କ ପ୍ରିୟତମ ଭକ୍ତ ଯଦି ଚ ହନୁମାନ ପରେ ଯୋଗ୍ୟ ବିବେଚିତ ହୋଇଥିଲେ । ସନ୍ଥ ତୁଳସୀ ଦାସ ନିମ୍ନ ପଦ୍ୟାବଳୀରେ ରାମଙ୍କ ନିକଟରେ ଭକ୍ତ 'ଶିବ'ଙ୍କ ସ୍ଥାନ କେତେ ଉଚ୍ଚରେ ପ୍ରକାଶ କରିଅଛନ୍ତି ।

"ଶିବ ଦ୍ରୋହୀ ମମ ଭଗତ କହାବା
ସୋନର ସପନେ ହୁଁ ମୋହି ନ ପା ବା ।
ଶଙ୍କର ବିମୁଖ ଭଗତି ଚହେ ମୋରୀ
ସୋନାରକୀ ମୂଢ଼ ମତି ଥୋରି ।"

ଅର୍ଥାତ୍ ଯେ ମୋର ଭକ୍ତ ହେବାକୁ ଚାହେଁ ଅଥଚ ଶିବଦ୍ରୋହୀ, ସେ ମୋତେ ସ୍ୱପ୍ନରେ ସୁଦ୍ଧା ଲାଭ କରି ପାରିବ ନାହିଁ । ଯେ ମୋର ଭକ୍ତ ହେବାକୁ ଇଚ୍ଛାକରି ଶିବଙ୍କ ପ୍ରତି ଅନାସକ୍ତ ସେ ନିର୍ବୋଧ ଓ ନର୍କବାସ ଯୋଗ୍ୟ । ପୁନଶ୍ଚ ତୁଳସୀ ଦାସ ଲେଖିଛନ୍ତି—

"ଲଖଥାପି ବିଧିବତ କରି ପୂଜା
ଶିବ ସମାନ ପ୍ରିୟ ମୋହି ନାଦୁଜା ।"

ଅର୍ଥାତ୍ ଶିବଙ୍କ ପରି ମୋର ଦ୍ୱିତୀୟ ପ୍ରିୟ କେହି ନାହିଁ । ତୁଳସୀ ରାମାୟଣରେ ରାମନାମର ମହତ୍ତ୍ୱ ବହୁ ପଦରେ ସନ୍ଥ କବିଙ୍କ ଅପୂର୍ବ ଲେଖମାରେ ରୂପାୟିତ ।

"ଶୁଭାଶୁଭ କର୍ମ ଭସ୍ମ କାରକ 'ର' କାର
'ଆ' କାର ଭାନୁ ଯେ ନାଶେ ମୋହ ଅନ୍ଧକାର
'ମ' କାରଟି ହିମକର ମାୟାତାପ ନାଶେ
ଏତିକ ବର୍ଣ୍ଣ 'ରାମ' ପଦରେ ବିକାଶେ ।"

ରାମନାମର ପ୍ରଭାବ ବର୍ଣ୍ଣନା କରିବାକୁ ଯାଇ ଲେଖାଅଛି —

ଯନ୍ନାମୈବ ସହସ୍ର ନାମ ସଦୃଶଂ ଯନ୍ନାମ ବୈଦୈଃ ସମମ୍ ।
ଯନ୍ନାମାଙ୍କିତ ବାକ୍ୟ ମାସୁଖଳ ସ୍ତ୍ରୀ ଗର୍ଭ ବିଚ୍ଛେଦକମ୍
ଯନ୍ନାମ ଶ୍ୱପଚସ୍ଥ ଭେଦ ରହିତଂ ମୁକ୍ତେଃ ସଦାବାପ୍ତୃକଂ
ତନ୍ନାମ ରଘୁ ରାମନାମ ରମଣଂ ଶ୍ରୀ ରାମନାମା ମୃତମ୍ ।
(ରାମକର୍ଣ୍ଣାମୃତ)

ଅର୍ଥାତ୍ ଯେଉଁ ଏକମାତ୍ର ନାମ ସହସ୍ର ବିଷ୍ଣୁ ନାମ ସହ ସମାନ, ସବୁ ବେଦ ସହ ସମାନ, ରାକ୍ଷସ ପତ୍ନୀମାନଙ୍କ ଗର୍ଭନାଶ କରିପାରେ, ଆତଙ୍କ ଆଣିଦିଏ, ଅର୍ଥାତ୍ (ଦୃଷ୍ଟି ସ୍ୱାରେ ସ୍କନ୍ଧ ଶ୍ଳେଦନ କାରୀ) ଆଚଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କ ପାଇଁ ସଦା ମୁକ୍ତିପ୍ରଦ —ସେହି ରଘୁବଂଶ ଜାତ ରାମଙ୍କ ରାମନାମ ଅମୃତମୟ । ନିଜେ କୁମ୍ଭକର୍ଣ୍ଣ ମଧ୍ୟ ଭାଇ ରାବଣକୁ ବୁଝାଇ କହିଛି । ସେ ରାମ ସ୍ୱୟଂ ପରଂବ୍ରହ୍ମ ନାରାୟଣ ଅବତାର, ସୀତା ଯୋଗମାୟା ଅଟନ୍ତି । କିନ୍ତୁ ତୁମେ ମୋ କଥା ଶୁଣିଲ ନାହିଁ ।

ପୂର୍ବମେବ ମୟାପ୍ରୋକ୍ତୋ ରାମୋ ନାରାୟଣଃ ପରଃ
ସୀତା ଚ ଯୋଗମାୟେତି ବୋଧି ତୋଽପି ନ ବୁଧ୍ୟସେ ।

ପୁଣି କୁମ୍ଭକର୍ଣ୍ଣ କହିଛି "ଯେଉଁ ଲୋକ ପ୍ରତିଦିନ ମନ ଓ ବଚନରେ ଭଗବାନ୍ ରାମଙ୍କୁ ମନ ଦେଇ ଭଜନ କରେ ସେ ବିନା ପ୍ରୟାସରେ ସଂସାର ପାରି ହୋଇ ଶ୍ରୀ ହରିଙ୍କ ପରମ ପଦପ୍ରାପ୍ତ ହୁଏ ।

ରାବଣ ମଧ୍ୟ ରାମଙ୍କୁ କହିଛି—"ସେ ଆତ୍ମଦୋଷ ସଚେତନ; ତଥାପି ଧର୍ମର ଅବତାର ରାମ ହସ୍ତରେ ମଲେ ତାର ସ୍ୱର୍ଗବାସ ।" ଏଣୁ ରାବଣର ଦମ୍ଭୋକ୍ତି ମଧ୍ୟରେ ରାମଙ୍କ କର ସ୍ପର୍ଶ ଯେ ତାର ଏକାନ୍ତ କାମ୍ୟ, ତାହା ବର୍ଣ୍ଣିତ ହୋଇଛି ନିମ୍ନପ୍ରକାରେ ।

ଜାନାମିସ୍ତୀତାଂ ଜନକପ୍ରସୂତାଂ ଜାନାମି ରାମଂ ମଧୁସୂଦନଂଚ
ବଧଂଚ ଜାନାମିନିଜଂ ମନୁଷ୍ୟାତ୍ତଥାପି ସୀତାଂ ନ ସମର୍ପୟାମି
(ମହାନାଟକ—ପୃ ୧୩୯)

( ଝାଡ଼ଖଣ୍ଡ 'ଧରିତ୍ରୀ' ତା ୨୬।୩।୭୭ରେ ପ୍ରକାଶିତ )



# ରାମ-ଅବତାର

ରାମ ଅବତାର ହେଉଛି ଧର୍ମ ଅବତାର । ପରମାତ୍ମା ନିଜେ ଧର୍ମ ସ୍ଥାପନ କରିବାକୁ ଏହି ଅତ୍ୟାଶ୍ଚର୍ଯ୍ୟ ଧରାରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କ ଅବତାରରେ ଆଦର୍ଶ ଓ ସମ୍ପୂର୍ଣ୍ଣ ଚରିତ୍ର କେତୋଟି ଆମେ ଦେଖୁ । ସୀତା ପତିବ୍ରତା ଓ ସତୀର ଆଦର୍ଶରେ ମହୀୟସୀ, ହନୁମାନ ଆଦର୍ଶ ଭକ୍ତ ଓ ସେବକ, ଲକ୍ଷ୍ମଣ ଆଦର୍ଶ ଭ୍ରାତା, ଭରତ ଓ ଶତ୍ରୁଘ୍ନ ଏକାନ୍ତ ବିଶ୍ୱାସୀ । ସୁଗ୍ରୀବ, ବିଭୀଷଣ, ଅଙ୍ଗଦ ଓ ଜାମ୍ବବାନ ଚରମ ଆତ୍ମସମର୍ପଣର ଆଦର୍ଶ ଦୃଷ୍ଟାନ୍ତ । ଏଣୁ ଧର୍ମପଥରେ ଏମାନେ ଜଣେ ଜଣେ ମହିମାବନ୍ତ ପଥିକ ।

ରାମଙ୍କ ସମ୍ମୁଖରେ ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ଥିଲା । ପରମାତ୍ମାଙ୍କ ଅଂଶାବତାର କ୍ଷତ୍ରିକୁଳଧ୍ୱଂସୀ ପରଶୁରାମ ଧରାବକ୍ଷରୁ କ୍ଷତ୍ରିୟମାନଙ୍କୁ ନିପାତ କରି ସାରି ଥାଆନ୍ତି । କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ପରି ବୀରମାନେ ଟଳି ପଡ଼ିଥାଆନ୍ତି । ଦେବରାଜଙ୍କ ସମ୍ମୁଖରେ ସେ ଶପଥ ନେଇ ଅସ୍ତ୍ରତ୍ୟାଗ କରି ଏକ ପ୍ରକାର ବୈରାଗ୍ୟ ଜୀବନ ଯାପନ କରି ଶକ୍ତିସବୁ ହରାଇ ଥାଆନ୍ତି । ରାବଣ ତାର ଉତ୍ପାତ ଆରମ୍ଭ କରୁଥାଏ । ଏକ ଅବତାରର ଆବଶ୍ୟକତା ଅନୁଭୂତ ହେଉଥାଏ ।

ରାମାବତାରରୁ ଶିକ୍ଷା ମିଳେ ଯେ ସମସ୍ତେ ସଂସାରବିମୁଖ ଭାବ ଦେଖାଇ ସ୍ୱ ସ୍ୱ ଧର୍ମ ପୂର୍ଣ୍ଣଭାବେ ପାଳନ କରିବା ଉଚିତ । ନିଜେ ରାମ ପିତୃ-ସତ୍ୟ ପାଳନ କରି ଧର୍ମର ମୂଳ ପଦାର୍ଥ ଉପରେ ଆଲୋକପାତ କରିଛନ୍ତି । ସେ ସଂସାରକୁ ଦେଖାଇ ଦେଇଛନ୍ତି ଯେ ଭାଗ୍ୟବଳ ସମସ୍ତେ ଭୋଗିବେ; "ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ ।" ସେ ନିଜେ ମଧ୍ୟ ଏଥିରୁ ବାଦ ଯାଇ ନାହାନ୍ତି । ଜନନୀ ସୀତା ମଧ୍ୟ ଏ ଧର୍ମ-ପଥର ପଥିକା । 'ସତ୍ୟ' ଓ 'ଆଦର୍ଶ'କୁ ନେଇ ଭାରତୀୟ ସ୍ତ୍ରୀର ଭୂମିକାରେ

ସେ ସଫଳତାର ସହିତ ଅଭିନୟ କରିଛନ୍ତି । ଧର୍ମପଥରୁ ତିଳେହେଲେ ତାଙ୍କର ବିଚ୍ୟୁତି ଘଟି ନାହିଁ । ସେ ରାମଙ୍କର, ରାମଙ୍କ ପାଇଁ, ରାମଙ୍କ ଦ୍ୱାରା ପରିତ୍ୟକ୍ତା ହୋଇ ମଧ୍ୟ ସେ ସଂଯତ ଜୀବନ ଧାରଣ କରି ଜୀବନର ଚରମ ଆଦର୍ଶ ଦେଖାଇଛନ୍ତି । ଲକ୍ଷ୍ମଣ, ଭରତ ଏବଂ ଶତ୍ରୁଘ୍ନଙ୍କର ଆଦର୍ଶ ଭ୍ରାତୃତ୍ୱର ପଟାନ୍ତର ନାହିଁ । ସକଳ ଧର୍ମ, ସମ୍ପଦ, ରାଜକାର୍ଯ୍ୟ ମୋହଲାଳସା ବର୍ଜନ କରି ଋଷିପ୍ରତିମ ଭରତ ରାମଙ୍କ ପାଦୁକା ଉପରେ ଦୃଷ୍ଟିରଖି ରାଜସମ୍ଭାରକୁ ପଦାଘାତ କରିଛନ୍ତି । ସେବାର ଅନୁପମ ଅବତାର ଭକ୍ତ ହନୁମାନ ରାମଙ୍କ ପ୍ରତି ଶିରପ୍ରଣିପାତରେ ସତେ ଯେପରି ମିଶି ଯାଇଛନ୍ତି, ରାମ ହୃଦୟରେ ହନୁମାନ ଓ ହନୁମାନ ମନପ୍ରାଣରେ ରାମ, ସର୍ବଦା ଓ ସର୍ବତ୍ର ପ୍ରତିବିମ୍ବିତ । ସୁଗ୍ରୀବ, ବିଭୀଷଣ, ଅଙ୍ଗଦ, ଜାମ୍ବବାନ ତାଙ୍କର 'ଶରଣଗତି' ଓ ପ୍ରପତ୍ତି, ଦ୍ୱାରା ରାମଙ୍କ ଚରଣ-ପଦ୍ମରେ ଆଶ୍ରୟ ନେଇଛନ୍ତି । ସେମାନେ ତାଙ୍କର ବନ୍ଧୁ, କୁଳ ଓ ଗୋତ୍ର ସବୁ ଭୁଲି ଧର୍ମରକ୍ଷାର୍ଥେ ସାରା ଜୀବନକୁ ରାମଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଦେଇଛନ୍ତି । ରାମ ଅଯୋଧ୍ୟାରେ ରାମରାଜ୍ୟ ପ୍ରତିଷ୍ଠା କରି ଆଦର୍ଶ ଶାସକର ଗୁରୁଦାୟିତ୍ୱ ସଫଳଭାବେ ତୁଲାଇ ଅଛନ୍ତି । ଧର୍ମ ହିଁ ତାଙ୍କ ଜୀବନର ହୋଇଛି ମୂଳମନ୍ତ୍ର ।

ପୃଥିବୀର ବିଭିନ୍ନ ଲୋକଙ୍କର ବିଭିନ୍ନ ରୁଚି । ସେମାନଙ୍କର ପୂଜା-ପଦ୍ଧତି, କାର୍ଯ୍ୟକଳାପରେ କାହା ସହିତ କାହାର ମେଳ ନାହିଁ । ଏଣୁ ସଂସାରରେ ଅନୈକ୍ୟ ଦେଖାଯାଏ । କିନ୍ତୁ ଏ ବିଭିନ୍ନ ମତାବଲମ୍ବୀ ଲୋକମାନେ ଗୋଟିଏ ଜିନିଷରେ ସମସ୍ତେ ଏକମତ ହୁଅନ୍ତି । ତାହା ହେଉଛି କୌଣସି କାର୍ଯ୍ୟରେ 'ଜୟ' ବା 'ସିଦ୍ଧି' ଲାଭ କରିବା । ପ୍ରତି ଜାତି ଓ ପ୍ରତି ଦଳର ଲୋକମାନେ ଚାହାନ୍ତି କିପରି ତାଙ୍କର ଚିନ୍ତା, ସାଧନା ଓ କାର୍ଯ୍ୟରେ କୃତକାର୍ଯ୍ୟ ହେବେ । ଅକୃତକାର୍ଯ୍ୟତା ହିଁ ପରେ ବହୁତ ଲୋକଙ୍କର ପୁରସ୍କାର ରୂପେ କାର୍ଯ୍ୟ କରେ । ଜଣେ ଚିନ୍ତାଶୀଳ ବ୍ୟକ୍ତି କହିଛନ୍ତି, "ନାଡ଼ବିହୀନ ଚମୁଚରେ ଖୀର ବା ପାୟସ ଆସିପାରେ ନାହିଁ । ଚମୁଚ ଭିତରେ ଥିବା ଖାଲି ଅଂଶ ଲୋକଙ୍କର ବୁଦ୍ଧି ଓ ଚେଷ୍ଟା ପରି" । ଈଶ୍ୱରଙ୍କ ଦୟା ହେଉଛି ସେହି ଚମୁଚର 'ନାଡ଼' । ରାମାବତାରରେ କୌଣସି ଜାଗାରେ ପରାଜୟ ନାହିଁ । ସେ ଶତ୍ରୁମାନଙ୍କୁ

ଗୋଟିଏ ଗୋଟିଏ ଶରରେ ନିପାତ କରିଛନ୍ତି । ଏହା ମୂଳରେ ତାଙ୍କର ଆଦର୍ଶ ଚରିତ ଓ ସତ୍ୟର ଶକ୍ତି ବିଦ୍ୟମାନ । ସନ୍ନ୍ୟାସୀ 'ତ୍ୟାଗରାଜ' କହିଛନ୍ତି, ''ରାମଚନ୍ଦ୍ରଙ୍କର ଗୋଟିଏ ଶର, ଗୋଟିଏ ସ୍ତ୍ରୀ ଏବଂ ଗୋଟିଏ ପ୍ରତିଜ୍ଞା ।'' କଥିତ ଅଛି, ରାମଙ୍କର ବାଣ ତାର ଲକ୍ଷ୍ୟସ୍ଥଳରୁ କେବେ ଫେରେ ନାହିଁ । ଯେଉଁମାନେ ବାହ୍ୟ ଓ ଆନ୍ତଃ ଶତ୍ରୁମାନଙ୍କୁ ନିପାତ କରିବାକୁ ଚାହାନ୍ତି, ସେମାନେ 'ଜୟ ଜୟ ରାମ' ଉଚ୍ଚାରଣ କରିବା ଉଚିତ୍ । ରାମ ମନ୍ତ୍ରର ବହୁତ ଅର୍ଥ ଅଛି । 'ମରା' ଏହି ଅକ୍ଷର ଦୁଇଟି ପରିବର୍ତ୍ତିତ ହୋଇ 'ରାମ'ରେ ପରିଣତ ହୋଇଛି । 'ମରା' ଅର୍ଥ 'ଘୁଞ୍ଚାଇ-ଦେବା' । 'ରାମ' ମନ୍ତ୍ର ଦ୍ୱାରା ସବୁ ପାପ ଘୁଞ୍ଚିଯାଏ । ରାମର ଅର୍ଥ 'ଲକ୍ଷ୍ମୀ' । ରାମ ମନ୍ତ୍ର ଧନ, ଗୌରବ ଆଣିଦିଏ । ପୁଣି ରାମର ଅର୍ଥ 'ଆନନ୍ଦ' । ରାମମନ୍ତ୍ର ଆନନ୍ଦଦାୟୀ । ତାମିଲ ବ୍ୟାକରଣ ଅନୁସାରେ 'ରା', ଏହି ଅକ୍ଷରଟି ପାଟିର ତଳୁର ମଧ୍ୟରୁ ଯେତେବେଳେ ବାହାରି ଆସେ, ଜିଭର ଅଗ୍ରଭାଗ ପାଟିର ଉପର ଅଂଶକୁ ସ୍ପର୍ଶ କରେ । ଏହିପରି ଭାବରେ ଏହା ସବୁ ପାପକୁ ବାହାରକୁ ଫିଙ୍ଗିଦିଏ । ସେହିପରି ଭାବରେ 'ମ' ଅକ୍ଷର ମଧ୍ୟ ଦୁଇଟି ଓଠ ବନ୍ଦ ଥିଲାବେଳେ ଉଚ୍ଚାରିତ ହୁଏ । ଏହା ଯେତେବେଳେ କବାଟ ବନ୍ଦ ପରି ଦେଖାଯାଏ । ଏଣୁ ଏହି 'ମ' ଅକ୍ଷର ପାପ ସବୁକୁ ଭିତରେ ପ୍ରବେଶ କରିବାରେ ବାଧାଦିଏ । ଏଣୁ 'ରାମ' ମନ୍ତ୍ର ପାପ ଦୂର କରିବା ସଙ୍ଗେ ସଙ୍ଗେ ବାହାରି ପାପକୁ ହୃଦୟ ଭିତରକୁ ଆଣିବାରେ ବାରଣ କରେ । ତାମିଲ ଭାଷାରେ 'ରାମ' ଶବ୍ଦକୁ 'ଇରାମନ୍' ବୋଲି ଉଚ୍ଚାରଣ କରାଯାଏ ! 'ଇରା' ଅର୍ଥ 'ରାତି' ଓ ମନ ଅର୍ଥ 'ରାଜା, ଅର୍ଥାତ୍ ରାତିର ଅଧିପତି ହେଉଛନ୍ତି ଚନ୍ଦ୍ର; ଏଣୁ ରାମଚନ୍ଦ୍ର ତାଙ୍କ ଭକ୍ତମାନଙ୍କୁ ଶୀତଳ ଚନ୍ଦ୍ରପରି ଆଶୀର୍ବାଦ ବର୍ଷଣ କରନ୍ତି । ପୁଣି ଇରା ଅର୍ଥ 'ନାହିଁ' ଓ 'ମନ' ଅର୍ଥ 'ରାଜା' । ଏଣୁ ଏହାର ଅର୍ଥ ଏପରି ମଧ୍ୟ ହୋଇପାରେ ଯେ ରାମଙ୍କ ପରି ରାଜା ଆଉ ପୃଥିବୀରେ ଜନ୍ମିନ ଥିଲେ ।

ରାମ ଦୟାର ଅବତାର । ପକ୍ଷୀ ଓ ବାନରମାନେ ମଧ୍ୟ ତାଙ୍କ ଦୟାରୁ ବଞ୍ଚିତ ହୋଇ ନାହାନ୍ତି । ତାଙ୍କ ସ୍ତ୍ରୀ କୁ ସାମାନ୍ୟ ଆଘାତ କରିଥିବା କାକ ମଧ୍ୟ ତାଙ୍କ ସ୍ନେହରୁ ବଞ୍ଚିତ ହୋଇ ନାହିଁ । ସମୁଦ୍ରବାଲିରେ ଝାଡ଼ି ଝୁଡ଼ି ହେଉଥିବା ବାଲି ଆଣି ସମୁଦ୍ର ଉପରେ ବନ୍ଧ ନିର୍ମାଣରେ

ସାହାଯ୍ୟ କରୁଥିବା ସାମାନ୍ୟ ଗୁଣ୍ଡୁଚିମୂଷା ପ୍ରତି ମଧ୍ୟ ତାଙ୍କର ଆଶୀର୍ବାଦ ରହିଥିଲା । ତାଙ୍କର ପବିତ୍ର ପାଦର ଧୂଳି ମଧ୍ୟ ପାପ ଓ ଅଭିଶାପ ଦୂର କରିବାରେ ଅଲୌକିକ ଦୃଶ୍ୟ ଦେଖାଇଥିଲା । ଏଣୁ ତାଙ୍କର ପବିତ୍ର ପାଦ କଥା ଆଉ କଣ କହିବା ?

ଥରେ ସକାଳେ ରାମ ଓ ଲକ୍ଷ୍ମଣ ଜଙ୍ଗଲରେ ଯାଉଁ ଯାଉଁ ଗୋଟିଏ ହ୍ରଦ ନିକଟରେ ପହଞ୍ଚିଲେ । ସେଠାରେ ସ୍ନାନ ନିମନ୍ତେ ପ୍ରସ୍ତୁତ ହେଲେ, ବାହାରେ ଲୁଗା ଟାଙ୍ଗିବା ନିମନ୍ତେ ଭୂମି ଉପରକୁ ଏକ ଶର ମାରିଲେ, ମାତ୍ର ଦୁଃଖର କଥା ସେ ଶରଟି ରାମ ନାମ ଉଚ୍ଚାରଣ କରୁଥିବା ଗୋଟିଏ ବେଙ୍ଗର ଠିକ୍ ଦେହ ଭିତର ଦେଇ ଚାଲିଯାଇ ରହିଲା । ରାମ ଏହା ଜାଣି ପାରିଲେ ନାହିଁ । ସ୍ନାନ ସାରି ଫେରି ଦେଖନ୍ତି ତ ଗୋଟିଏ ବେଙ୍ଗ ତାଙ୍କ ଶର ଦ୍ୱାରା ଆହତ ହୋଇଛି । ରାମ ଦୁଃଖରେ ବେଙ୍ଗଠାରେ କ୍ଷମାପ୍ରାର୍ଥନା କଲେ । ତାପରେ କହିଲେ, "ତୁ କାହିଁକି ତୋ ଶବ୍ଦ ଦ୍ୱାରା ମୋତେ ଜଣାଇଲୁ ନାହିଁ । ମୁଁ ଅନ୍ତତଃ ଶରଟିକୁ ଉଠାଇ ନେଇଥାନ୍ତି ଓ ଯନ୍ତ୍ରଣାରୁ ରକ୍ଷା ପାଇବା ନିମନ୍ତେ ଚେଷ୍ଟା କରିଥାନ୍ତି । ମାତ୍ର ଅତି ଆଶ୍ଚର୍ଯ୍ୟର କଥା ବେଙ୍ଗଟି ଉତ୍ତର ଦେଲା," "ପ୍ରଭୁ ! ମୁଁ ଯନ୍ତ୍ରଣାରୁ ରକ୍ଷା ପାଇବା ନିମନ୍ତେ ଯଦି ଚିତ୍କାର କରିଥାନ୍ତି ତେବେ କ୍ଷଣକ ପାଇଁ ମଧ୍ୟ 'ରାମ ରାମ' ଉଚ୍ଚାରଣରୁ କ୍ଷାନ୍ତ ହୋଇଥାନ୍ତି; ମାତ୍ର ଆପଣଙ୍କ ନାମ ବନ୍ଦକରି ଚିତ୍କାର କରିବାକୁ ମୁଁ ପସନ୍ଦ କରି ନାହିଁ ।" ବିଷ୍ଣୁର ଅବତାର ରାମଚନ୍ଦ୍ର ବେଙ୍ଗର ଭକ୍ତିରେ ତରଳିଗଲେ । ଶରଘାତ ଓ ଯନ୍ତ୍ରଣା ସତ୍ତ୍ୱେ ସେ ଯେ ରାମ ନାମ କୀର୍ତ୍ତନରୁ ନିବୃତ୍ତ ହୋଇ ନାହିଁ; ଏହା ଦେଖି ତାକୁ ମୋକ୍ଷ ପ୍ରଦାନ କଲେ ।

× × ×

ଜାତିର ପିତା ଗାନ୍ଧିଜୀଙ୍କ ଜୀବନରେ ରାମନାମର ମହତ୍ତ୍ୱ ସମସ୍ତଙ୍କୁ ଜଣା । ପିଲାଦିନରେ ସେ ଭୂତପ୍ରେତଙ୍କୁ ଭୟ କରୁଥିଲେ । ତାଙ୍କ ନର୍ସ ରମ୍ଭା ତାଙ୍କୁ କହୁଥିଲେ, 'ଭୂତପ୍ରେତ କିଛି ନାହିଁ । ଯଦି ଡରୁଛ ରାମ ନାମ ବାରମ୍ବାର ବୋଲ ।' ଏଣୁ ପିଲାଦିନର ଏହି ରାମ ନାମ ତାଙ୍କ ଜୀବନ-ପାତ ହେବା ପର୍ଯ୍ୟନ୍ତ ମଧ୍ୟ ତାଙ୍କ ଜିହ୍ୱା ଭିତରେ ସବୁଅଡ଼େ ଚେରମୂଳ

ବନ୍ଦୀ କରି ରଖିଥିଲା । ୧୯୪୪ ଜାନୁୟାରୀ ୩୦ ତାରିଖର ସେହି ଶୋକାବହ ଘଟଣାରେ ମଧ୍ୟ ତାଙ୍କ ମୁଖରୁ ବାହାରିଛି, 'ହେ ରାମ' !

ଆର୍. କେ. ଭଟନାଗରଙ୍କ ଗୋଟିଏ ଇଂରାଜୀ ଲେଖାରେ ଅଛି, ଗାନ୍ଧିଜୀ ବଙ୍ଗଭୂମିରେ ଭ୍ରମଣ କରୁଥିବାବେଳେ ତାଙ୍କର ଅତିପ୍ରିୟ ଖାଦ୍ୟ ଛାଗ ଦୁଗ୍ଧ ମିଳିଲା ନାହିଁ । ଏହା ତାଙ୍କର ନିତିଦିନିଆ ଖାଦ୍ୟ । ସମସ୍ତେ ବ୍ୟସ୍ତ ହୋଇ ପଡ଼ିଲେ ମାତ୍ର ଗାନ୍ଧି କହିଲେ, "କିଛି ଚିନ୍ତା ନାହିଁ ତା ବଦଳରେ ନଡ଼ିଆ ରସ ହେଲେ ଚଳିବ ।" ମାତ୍ର ଏ ନଡ଼ିଆ ରସକୁ ସେ ହଜମ କରିପାରିଲେ ନାହିଁ । ସାଙ୍ଗେ ସାଙ୍ଗେ ତାଙ୍କର ଝାଡ଼ା ଆରମ୍ଭ ହେଲା । ଏହା ଭୀଷଣାକାର ଧାରଣ କଲା । ସେ ଦୁର୍ବଳରୁ ଦୁର୍ବଳତର ହେଲେ । ହାଲିଆ ହୋଇ ଶୋଇ ରହିଲେ । ମୁଣ୍ଡ ବୁଲାଇଲା, ହାତ ଗୋଡ଼ କୋଲି ମାରି ମାରି ଆସିଲା । ମୁଣ୍ଡରୁ ଝାଳ ବାହାରିଲା । ତାଙ୍କର ନାତୁଣୀ ମନୁ ଭାବିଲେ ଯେ ଏ ନିଶ୍ଚୟ ଅଚେତା ହେବେ । ତତ୍କାଳରେ ସେ ପ୍ରଫେସର ନିର୍ମଳ ବୋଷଙ୍କୁ ଖବର ଦେଲେ । ସେ ମଧ୍ୟ ଆସିଲେ । ତଥାପି ଅବସ୍ଥା ଅସମ୍ଭାଳ ହୋଇପଡ଼ିଲା । ମନୁ ଗାନ୍ଧି ତତ୍କାଳରେ ଡକ୍ଟର ସୁଶୀଳା ନାୟାରଙ୍କୁ ଖଣ୍ଡିଏ ଚିଠି ହାବି ଡକାଇଲେ ।

ଯେତେବେଳେ ପ୍ରଫେସର ବୋଷ୍ ସେ ଚିଠି ଧରି ବାହାରନ୍ତି ଗାନ୍ଧି ଆଖି ଖୋଲିଲେ ଏବଂ କହିଲେ—ନିର୍ମଳବାବୁଙ୍କର ଯିବା ଦରକାର ନାହିଁ । ତୁମେ ପିଲା, ଏଣୁ କ୍ଷମା ଦେଲି । ସମସ୍ତେ ହୃଦୟର ସହିତ ରାମ ନାମ ସ୍ମରଣ କର । ଏଣୁ ନିର୍ମଳବାବୁଙ୍କୁ ଡାକିବା ପରିବର୍ତ୍ତେ ତୁମ୍ଭେମାନେ ରାମ ନାମ ଡାକିବା ଉଚିତ ଥିଲା, ଆଉ ସୁଶୀଳାଙ୍କୁ ଡାକିବା ଦରକାର ନାହିଁ ।

"ମୋର ପ୍ରକୃତ ଡାକ୍ତର ହେଉଛନ୍ତି 'ରାମ' । ଯେ ପର୍ଯ୍ୟନ୍ତ ରାମ ମୋଠାରୁ ସେବା ଚାହୁଁଥିବେ, ମୋତେ ସେ ନିଶ୍ଚୟ ବଞ୍ଚାଇ ରଖିଥିବେ । ସେ ଯେତେବେଳେ ନ ଚାହିଁବେ ମୋତେ ତାଙ୍କ ପାଖକୁ ନେଇଯିବେ ।"

ରାମଙ୍କ କମନୀୟ ରୂପରେ ଆବିଳତା ନାହିଁ । ତାଙ୍କ ନାମ ସହଜେ ମୁକ୍ତିପ୍ରଦ । ବୈଦେହୀଶରୀରସ୍ପର୍ଶଇଚ୍ଛୁକ ରାବଣ ଅଶୋକ ବନରେ ବହୁବାର ସୀତାଙ୍କୁ ବୁଝାଇ ବୁଝାଇ ଥକିଲା ପରେ କିଂକର୍ତ୍ତବ୍ୟବିମୂଢ଼

ହୋଇ ବସିଥିଲାବେଳେ ତାର ଜଣେ ଅନୁଚର କହିଲା—ଦୈତ୍ୟ କୁଳେଶ୍ୱର ! ଆପଣ ଯେ କୌଣସି ରୂପଧାରଣ କରିବାକୁ ସକ୍ଷମ; ତାହେଲେ ଆପଣ ମାୟାରେ ରାମ ବେଶ ଧାରଣ କରୁ ନାହାନ୍ତି କାହିଁକି ? ସୀତା ତ ଆପଣଙ୍କ ବଶ ହୁଅନ୍ତା ।

ଦୀର୍ଘଶ୍ୱାସ ପରିତ୍ୟାଗ ପୂର୍ବକ ରାବଣ କହିଲା—"ମୁଁ କ'ଣ ତା' ଜାଣେ ନାହିଁ । ତୋ କହିବା ଆଗରୁ ଜାଣିଛୁ । ମୁଁ ଚେଷ୍ଟା କରିଥିଲି । ମାତ୍ର ରାମ ଶରୀର ଧାରଣ କଲାମାତ୍ରେ ମୋର ମନ ମଧ୍ୟରୁ ଅତି ରହସ୍ୟଜନକ ଭାବେ ପରସ୍ତ୍ରୀହରଣ ଭାବନା କେଉଁଆଡ଼େ ଅନ୍ତର୍ହିତ ହୋଇଗଲା ।"



# ହନୁମତ୍ ଜୟନ୍ତୀ

**କାଳନିର୍ଣ୍ଣୟ**—ହନୁମଜ୍ଜୟନ୍ତୀ ପାଳନ ସମ୍ବନ୍ଧରେ ୨ଟି ମତ ଦେଖାଯାଏ । କେତେକ ଚୈତ୍ର ଶୁକ୍ଳ ପୂର୍ଣ୍ଣିମା ତିଥିକୁ ମାନନ୍ତି ତ ଆଉ କେତେକ କାର୍ତ୍ତିକ କୃଷ୍ଣା ଚତୁର୍ଦ୍ଦଶୀରେ ରାମଭକ୍ତ ହନୁମାନଙ୍କର ଜୟନ୍ତୀ ଉତ୍ସବ ପାଳନ୍ତି । ଉତ୍ସବସିନ୍ଧୁ ଓ ବାଲ୍ମୀକି ରାମାୟଣରେ କାର୍ତ୍ତିକ କୃଷ୍ଣା ଚତୁର୍ଦ୍ଦଶୀ ସିଦ୍ଧ କରୁ ବହୁଭକ୍ତ ଓ ବିଦ୍ୱାନ୍ ଚୈତ୍ର ଶୁକ୍ଳପୂର୍ଣ୍ଣିମାକୁ ମାନିନେଇ ଏହି ଉତ୍ସବଟିକୁ ପାଳନ କରିଆସୁଅଛନ୍ତି । Festivals and Holidays of India ର ଲେଖକ P. Thomas ମଧ୍ୟ ଏହା ଉପରେ ଗୁରୁତ୍ୱ ଦେଇ ସ୍ୱଗ୍ରନ୍ଥରେ ଲେଖିଛନ୍ତି—"The birthday of Hanuman, the Great monkey God, falls on the Full moon day of the Hindu month of Chaitra. (March-April) Hanuman holds a pecutiary exalted position in the Hindu Pantheon. He is the God of mascular strength and fantastic tales of his physical feats are told in the Ramayana" ଅର୍ଥାତ୍ ପ୍ରସିଦ୍ଧ ବାନର ଦେବତା ହନୁମାନଙ୍କର ଏ ଜନ୍ମଦିବସ ଚୈତ୍ର ଶୁକ୍ଳ ପୂର୍ଣ୍ଣିମାରେ ପଡ଼େ । ହିନ୍ଦୁ-ପୁରାଣ ଶାସ୍ତ୍ରରେ ହନୁମାନ ଏକ ଗୌରବୋଜ୍ଜ୍ୱଳ ଆସନର ଅଧିକାରୀ । ସେ ଶାରୀରିକ ବଳ ବିକ୍ରମର ଦେବତା ଓ ତାଙ୍କ ଶାରୀରିକ କଳକୌଶଳ ସମ୍ବନ୍ଧୀୟ ବିବିଧ କାଳ୍ପନିକ ଗଳ୍ପସବୁ ରାମାୟଣରେ କଥିତ ।

ବାଲ୍ମୀକି ରାମାୟଣରେ ଲେଖାଅଛି ଯେ ଏ ଜନ୍ମମାତ୍ରେ ସୂର୍ଯ୍ୟ ଉପରକୁ କୁଦା ମାରିଥିଲେ ଓ ସେଦିନ 'ରାହୁ' ମଧ୍ୟ ସୂର୍ଯ୍ୟଙ୍କୁ ଗ୍ରାସ କରିବାକୁ ଯାଉଁଥିଲା—

"ଯମେବ ଦିବସଂ ହ୍ୟେଷ ଗ୍ରହୀତୁଂ ଭାସ୍କରଂ ପ୍ଲୁତଃ
ତମେବ ଦିବସଂ ରାହୁର୍ଜିଘୃକ୍ଷତି ଦିବାକରମ୍"
(ଉତ୍ତରକାଣ୍ଡ, ଅ—୩୫, ଶ୍ଳୋ—୩୧)

**ଉତ୍ସବର ତାତ୍ପର୍ଯ୍ୟ**—ହନୁମାନ ବୀର, ସାହସୀ, ଭକ୍ତ, ଜିତେନ୍ଦ୍ରିୟ ଓ ଆଜୀବନ ବ୍ରହ୍ମଚାରୀ ଥିଲେ । ଏଣୁ ଏଭଳି ଏକ ପବିତ୍ର ଦିବସରେ ମଲ୍ଲବିଦ୍ୟାବିଶାରଦ ବାନର ଦେବତାଙ୍କ ପ୍ରୀତ୍ୟର୍ଥେ ପୂଜା ଉପାସନ ସହ ବ୍ୟାୟାମ ପ୍ରଦର୍ଶନ ବିଧେୟ । ହନୁମାନଙ୍କ ଉଦ୍ଦେଶ୍ୟରେ ଅର୍ପିତ ନୈବେଦ୍ୟରେ ବେସନ ଓ ବୁନ୍ଦିଆ ସହ ଚଣା ରଖାଯାଏ । ଚଣା ବାନରଜାତିଙ୍କ ଅତି ପ୍ରିୟ । ଏବେ ମଧ୍ୟ ମଥୁରା ବୃନ୍ଦାବନ ଆଦି କ୍ଷେତ୍ରରେ ବାନରମାନଙ୍କୁ ଗୁଡ଼ମିଶ୍ରିତ ଚଣା ଦିଆଯାଉଛି ।

**ବୈଜ୍ଞାନିକ ପୃଷ୍ଠଭୂମି**—ଆୟୁର୍ବେଦ ମତାନୁଯାୟୀ 'ଚଣା' ଶୀତଳ ରକ୍ତପିତ୍ତ, କଫହାରକ, ବିଷ୍ଟମ୍ଭୀ (ମଳରୋଧକ) ଓ ବାୟୁକାରକ ତଥା ଜ୍ୱରନାଶକ ।

ଯଥା—

'ଚଣକଃ ଶୀତଳୋ ରୁକ୍ଷଃ ପିତ୍ତରକ୍ତକଫାପହଃ
ଲଘୁଃ କଷାୟୋ ବିଷ୍ଟମ୍ଭୀ ବାତଳୋଜ୍ୱର ନାଶକଃ
(ଭାବପ୍ରକାଶ)

'ଚଣା' ପୁଣି—'ଆର୍ଦ୍ରୋଽତି କୋମଳୋ ରୁଚ୍ୟଃ ପିତ୍ତଶୁକ୍ର ହରୋହିତଃ' ଅର୍ଥାତ୍ କୋମଳ, ରୁଚିବର୍ଦ୍ଧକ, ପିତ୍ତ, ଶୁକ୍ରହର ଓ ପଥ୍ୟ । ପୁଣି ଏହାସହ ଯେଉଁ 'ଗୁଡ଼' ଯୁକ୍ତ ହୁଏ, ତାହାର ମଧ୍ୟ ଆୟୁର୍ବେଦୀୟ ଗୁଣ ଅଛି । ଏ ମଧ୍ୟ ସ୍ୱାସ୍ଥ୍ୟ ପକ୍ଷେ ହିତକାରୀ ।

"ଗୁଡୋଽ ବୃଷ୍ୟୋ ଗୁରୁଃ ସ୍ନିଗ୍ଧୋ ବାତଘ୍ନୋ ମୂତ୍ରଶୋଧନ"

ଗୁଡ଼ ଶକ୍ତି ଦିଏ, ଓଜନିଆ, ଚିକ୍କଣ, ବାୟୁନଷ୍ଟକାରୀ ଓ ମୂତ୍ରଶୋଧକ । 'ଚଣା' ବାୟୁ ବଢ଼ାଏ ଓ 'ଗୁଡ଼' ତାହା କମାଏ; ଏଣୁ ଉଭୟର ସଂଯୋଗ ହିଁ ଶରୀରର ଧାରସାମ୍ୟ ରକ୍ଷକ ଓ ଭବିଷ୍ୟତର ବଳବର୍ଦ୍ଧକ । ତେଣୁ ହନୁମାନଙ୍କୁ ଅର୍ପିତ ଚଣା-ଗୁଡ଼ ପ୍ରକାରାନ୍ତରେ ଭକ୍ତ ସେବକମାନେ ଓ ପୂଜକମାନେ ପ୍ରସାଦ ରୂପେ ଗ୍ରହଣ କରି ନିଜ ଶରୀରର ବଳ ବଢ଼ାନ୍ତି ।

**ଉତ୍ସବ ପାଳନ**—ହନୁମାନ ଜୟନ୍ତୀ ଦିବସରେ ବିବିଧ ପ୍ରକାର ଶୋଭାଯାତ୍ରା ବାହାରେ, ହନୁମାନ ମୂର୍ତ୍ତିକୁ ଭକ୍ତଗଣ ମହାସମାରୋହରେ ବିବିଧ ଧ୍ୱନିସହ ଶୋଭାଯାତ୍ରାରେ ନିଅନ୍ତି । ନୃତ୍ୟ, ଗୀତ

ଓ ଭୂରି ଭୋଜନର ମଧ୍ୟ ଆୟୋଜନ ହୋଇଥାଏ । ରାମଙ୍କ ସହ ହନୁମାନ ଭାରତର ବହୁ ପୀଠରେ ପୂଜିତ ହେଉଛନ୍ତି । 'ମହାରାଷ୍ଟ୍ର'ରେ କେବଳ ହନୁମାନଙ୍କୁ କେନ୍ଦ୍ରକରି ବହୁ ମନ୍ଦିର ଦେଖାଯାଏ । ବର୍ତ୍ତମାନ ଭାରତରେ ବହୁ ଦେବତା ଓ ବୀରଙ୍କ ସହିତ ହନୁମାନ ମଧ୍ୟ ପୂଜା ପାଇଲେଣି । ହନୁମାନଙ୍କ ଶରଣାପନ୍ନ ହୋଇ ତାଙ୍କ ସେବାରେ ମନପ୍ରାଣ ଦେଇ ବହୁ ଜ୍ଞାନୀ ଓ ପଣ୍ଡିତ ଅସାଧ୍ୟ ସାଧନ କଲେଣି । ଶିବାଜୀଙ୍କ ଗୁରୁ 'ରାମଦାସ' ହନୁମାନଙ୍କ ଅବତାର ବୋଲି ନିଜକୁ ପରିଚୟ ଦେଇ ସାରା ମହାରାଷ୍ଟ୍ରରେ ହନୁମାନଙ୍କ ମନ୍ଦିର ନିର୍ମାଣ ପୂଜା ଉପରେ ଗୁରୁତ୍ୱ ଦେଇଛନ୍ତି ।

ରକ୍ଷଣଶୀଳ ହିନ୍ଦୁମାନେ ଏବେ ମଧ୍ୟ ବିଶ୍ୱାସ କରି କହୁଛନ୍ତି, "ହନୁମାନ ଏବେ ମଧ୍ୟ ସ୍ୱଶରୀରରେ ଜୀବନ୍ତ ଓ ଯେତେବେଳେ ଏହି କଳ୍ପ ଶେଷ ହୋଇ ଅନ୍ୟ କଳ୍ପ ଆରମ୍ଭ ହେବ, ସେତେବେଳେ ସେ ପରମାତ୍ମାଙ୍କ ଦ୍ୱାରା ଏହି ସାରା ବିଶ୍ୱବ୍ରହ୍ମାଣ୍ଡର ପ୍ରତିନିଧିରୂପେ ନିଯୁକ୍ତ ହେବେ ।"

ରାମଭକ୍ତ ହନୁମାନଙ୍କ ଲୀଳା ଅବର୍ଣ୍ଣନୀୟ । ସେ ବ୍ରହ୍ମଚର୍ଯ୍ୟର ଶ୍ରେଷ୍ଠ ପୂଜାରୀ, ଆତ୍ମସମର୍ପଣର ଚରମ ଉତ୍କର୍ଷତା, ସାହସ ତଥା ବୀରତ୍ୱର ଅଭୂତପୂର୍ବ ପ୍ରହେଳିକା ସୃଷ୍ଟି କରିବାରେ ଜିତେନ୍ଦ୍ରିୟ ହନୁମାନ ହିଁ ନିଜେ ନିଜର ତୁଳନା । ରାମଙ୍କ ପ୍ରତି ତାଙ୍କର ଅନୁରକ୍ତି ଠିକ୍ ଲୁହା-ଚୁମ୍ବକ ପରି । ରାମଙ୍କ ମୂର୍ତ୍ତି ଛଡ଼ା ତାଙ୍କ ହୃଦୟ-ଦର୍ପଣରେ ଅନ୍ୟ ପ୍ରତିମୂର୍ତ୍ତି ପ୍ରତିବିମ୍ବିତ ହୋଇନାହିଁ । ଶୟନେ, ସ୍ୱପନେ, ଜାଗରଣେ ସେହି ରାମନାମ ହିଁ ତାଙ୍କର ଜପ । ହନୁମାନ ସତେ ଯେପରି ରାମଙ୍କଦ୍ୱାରା, ରାମଙ୍କ ପାଇଁ ଓ ରାମଙ୍କର । ଜଣେ ଲେଖକ ଯଥାର୍ଥରେ ଲେଖିଛନ୍ତି—"Hanuman has no other interest in the world except the service of Rama, Rama's friends or relations are his own friends and relations and Rama's enemies are his own foes."

ଅର୍ଥାତ୍ 'ରାମ' ସେବା ଛଡ଼ା ତାଙ୍କ ଜୀବନରେ ଅନ୍ୟ କେଉଁଥିରେ ଶ୍ରଦ୍ଧା ନଥିଲା । ରାମଙ୍କ ବନ୍ଧୁବାନ୍ଧବ ହିଁ ତାଙ୍କର ବନ୍ଧୁ ଓ ଯେ ରାମଙ୍କ ଶତ୍ରୁ ସେ ମଧ୍ୟ ତାଙ୍କର ଶତ୍ରୁ । ରାମଙ୍କର ସେ ବିଶ୍ୱସ୍ତ ସେବକ—ଦୁର୍ଦ୍ଧର୍ଷ ଭ

ହସ୍ତ ଅଙ୍ଗୁରୀୟ ବାହକ, ଅତଳ ସମୁଦ୍ର ସନ୍ତାରୀ । ସୀତା ଅନ୍ବେଷଣ ଇଚ୍ଛୁକ, ସମୁଦ୍ର ବେଳାଭୂମି ସମବେତ ବାନରମାନଙ୍କ ମଧ୍ୟରୁ ଜଣେ କହିଲା, 'ମୁଁ ଦଶ ଯୋଜନ ଲମ୍ଫ ପ୍ରଦାନ କରିପାରେ, ଆଉ ଜଣେ ୨୦, ତାପରେ ୩୦, ୫୦ ପର୍ଯ୍ୟନ୍ତ ଗ୍ଭଲିଲା । ଶେଷରେ ଯୁବରାଜ 'ଅଙ୍ଗଦ' କହିଲେ, 'ମୁଁ ୧୦୦ ଯୋଜନ (ଏକ ଯୋଜନ = ୮ ମାଇଲ) ଉଡ଼ିଯିବି, ଲଙ୍କାରେ ପହଞ୍ଚିବି ସତ, ହେଲେ ବାହୁଡ଼ାଯାତ୍ରା ମୋ ପକ୍ଷେ ଅସମ୍ଭବ । ମାତ୍ର ନୀରବ ଆସୀନ ହନୁମାନଙ୍କ ନାମ ଉଦ୍‌ଘୋଷଣା ଜାମ୍ବବାନ ଘୋଷଣା କରି କହିଥିଲେ—"ଅସୀମ ବଳ ବିକ୍ରମର ଅଧିକାରୀ ହନୁମାନଙ୍କ ଛଡ଼ା ଏ ଦୁଃସାଧ୍ୟ କାର୍ଯ୍ୟ କେହି କରିପାରିବେ ନାହିଁ ।" ତାଙ୍କର ସମୁଦ୍ରତରଣ, ଲଙ୍କାଗମନ ବିଶେଷତଃ ସୀତା ଦର୍ଶନ ଓ ମୁଦ୍ରିକା ପ୍ରଦାନ ସମ୍ବନ୍ଧୀୟ ଚମତ୍କାରୀ ବର୍ଣ୍ଣନା ସୁନ୍ଦର କାଣ୍ଡରେ ଦିଆଯାଇଛି ।

ରାଜ୍ୟାଭିଷେକ ପରେ ହନୁମାନଙ୍କୁ ପୁଣି କିଷ୍କିନ୍ଧ୍ୟା ଫେରି ଯିବାକୁ ରାମ ଆଦେଶ ଦେଇ କହିଛନ୍ତି—"ହେ ମୋର ପ୍ରିୟ ଭକ୍ତ ହନୁମାନ, ମୋର ସକଳ ପ୍ରକାର ବିପଦର ଘନଘଟା ମଧ୍ୟରେ ତୁମେ ହିଁ ଆଶାର ବାଣୀ ଶୁଣାଇଥିଲ । ଆସ, ମୋତେ ଆଲିଙ୍ଗନ ଦିଅ ।"

ଏହାଠାରୁ ବଳି ପୁରସ୍କାର ଆଉ କଣ ଥାଇପାରେ । ଯାହାଙ୍କ ବକ୍ଷ ସୀତା ଏପରିକ ଋଷିଗଣ ସ୍ପର୍ଶ କରିବାକୁ ଆଶାୟୀ ହୋଇ ବିଫଳ ମନୋରଥ, ପ୍ରିୟ ହନୁମାନ ତାହା ଲାଭ କରିଥିଲେ । ରାମଙ୍କ ପଦତଳେ ହନୁମାନ ସର୍ବଦା ଅବନତ ମସ୍ତକ । ଏଥିରୁ ସଂସାର ସ୍ୱୀକୃତ ପ୍ରତି ତାଙ୍କର ଭ୍ରୂକ୍ଷେପ ନଥିବାର ଶିକ୍ଷା ମିଳୁନାହିଁ କି ?

ହନୁମାନଙ୍କୁ 'ହରି' ଙ୍କର ବିଶ୍ୱସ୍ତ ସେବକ ଓ ସଦାସେବାନିରତ ଗରୁଡ଼ଙ୍କୁ ହରିଙ୍କର ପ୍ରଥମ ସେବକ 'ଆଖ୍ୟା' ଦିଆଯାଇଛି । ଯେଉଁଠାରେ ରାମ ନାମ ସେହିଠାରେ ଭକ୍ତ ହନୁମାନଙ୍କ ନାମ ମଧ୍ୟ କୀର୍ତ୍ତିତ—

"ଯତ୍ର ଯତ୍ର ରଘୁନାଥ କୀର୍ତ୍ତନଂ ତତ୍ର ତତ୍ର କୃତ ମସ୍ତକାଞ୍ଜଳିମ୍
ବାଷ୍ପବାରି ପରିପୂର୍ଣ୍ଣ ଲୋଚନଂ ମାରୁତିଂ ନମତ ରାକ୍ଷସାନ୍ତକମ୍ ।"

ରାଜ୍ୟାଭିଷେକ ପରେ ରାଜରାଜେଶ୍ୱର ପୁରୁଷୋତ୍ତମ ରାମ ସୀତାଙ୍କୁ ଏକ ଅତି ଦୁଷ୍ପ୍ରାପ୍ୟ ହାର ଦେଇ କହିଲେ—'ହେ ସୁମୁଖି ଜନକନନ୍ଦିନ, ତୁମେ ଯାହା ଉପରେ ପ୍ରସନ୍ନ ତାକୁ ଏ ହାରଟି ଦିଅ । ବୈଦେହୀ ତାକୁ ନେଇ ହନୁମାନଙ୍କ ଗଳାରେ ଲମ୍ବାଇ ଦିଅନ୍ତେ ଶ୍ରୀହନୁମାନଙ୍କ ଶୋଭା ଉଜ୍ଜ୍ୱଳ ଉଠିଲା । ପୁରାଣକାର ଲେଖିଛନ୍ତି—

"ହନୁମତେ ଦଦୌ ହାରଂ ପଶ୍ୟତୋ ରାଘବସ୍ୟ ଚ
ତେନ ହାରେଣ ଶୁଶୁଭେ ମାରୁତି ଗୌରବେଣ ଚ ।"

ଅଧ୍ୟାତ୍ମ ରାମାୟଣର ଷୋଡ଼ଶ ସର୍ଗରେ ଏହାର ଏକ ମଞ୍ଜୁଳ ଚିତ୍ର ପ୍ରଦତ୍ତ । କରପତ୍ର ଯୋଡ଼ି ସମ୍ମୁଖରେ ଦଣ୍ଡାୟମାନ ହନୁମାନଙ୍କୁ 'ରାମ' କହିଲେ—'ହେ ହନୁମାନ, ମୋତେ ତୁମର ଇଚ୍ଛାବର ମାଗ, ମୁଁ ତୁମ ଉପରେ ପ୍ରସନ୍ନ । ତ୍ରିଲୋକର ଦେବତାମାନଙ୍କୁ ଯାହା ଅପ୍ରାପ୍ତ, ସେହି ବର ମୁଁ ତୁମକୁ ଦେବାକୁ ଇଚ୍ଛା କରୁଛି ।'

'ହନୁମଂସ୍ତେ ପ୍ରସଂନ୍ନୋସ୍ମି ବର ବରୟ କାଂକ୍ଷିତମ୍
ଦାସ୍ୟାମି ଦେବୈରପି ଯଦ୍ ଦୁର୍ଲ୍ଲଭଂ ଭୁବନତ୍ରୟେ ।'

ହନୁମାନ ବର ମାଗିଛନ୍ତି—

'ହନୁମାନପି ତଂ ପ୍ରାହ ନତ୍ୱା ରାମଂ ପ୍ରହୃଷ୍ଟଧୀଃ
ତ୍ୱନ୍ନାମ ସ୍ମରଣେ ରାମ ନ ତୃପ୍ୟତି ମନୋ ମମ
ଅତସ୍ତ୍ୱନ୍ନାମ ସତତଂ ସ୍ମରନ୍ ସ୍ଥାସ୍ୟାମି ଭୂତଳେ
ଯାବତ୍ସ୍ଥାସ୍ୟତି ତେ ନାମ ଲୋକେ ତାବତ୍କଳେବରମ୍
ମମତିଷ୍ଠତୁ ରାଜେନ୍ଦ୍ର ! ବରୋଽୟଂ ମେଽଭିକାଂକ୍ଷିତଃ
ରାମ ସ୍ତଥେତି ତଂ ପ୍ରାହ ମୁକ୍ତ ସ୍ତିଷ୍ଠ ଯଥା ସୁଖମ୍
କଳ୍ପାନ୍ତେ ମମ ସାୟୁଜ୍ୟଂ ପ୍ରାପ୍ୟସେ ନାତ୍ର ସଂଶୟଃ
ତମାହ ଜାନକୀ ପ୍ରୀତା ଯତ୍ର କୁତ୍ରାପି ମାରୁତେ ।"

(ଅଧ୍ୟାତ୍ମ ରାମାୟଣ—୧୬ ସର୍ଗ)

ଅର୍ଥାତ୍ ହେ ପ୍ରଭୁ ! ଆପଣଙ୍କ ନାମ ସ୍ମରଣ କରି କରି ମଧ୍ଯ ମୋର ଚିତ୍ତ ତୃପ୍ତ ହେଉ ନାହିଁ । ଏଣୁ ନିରନ୍ତର ନାମ ସ୍ମରଣ ପାଇଁ ମୁଁ ପୃଥିବୀରେ ରହିବ । 'ହେ ହନୁମାନ ! ପୃଥିବୀରେ ଯେ ପର୍ଯ୍ୟନ୍ତ ଆପଣଙ୍କ ନାମ ଥିବ, ସେ ପର୍ଯ୍ୟନ୍ତ ମୋ ଶରୀର ରହୁ । ରାମ କହିଲେ—'ଏହା ହେଉ, ତୁମେ ଜୀବନ୍ମୁକ୍ତ ହୋଇ ସଂସାରରେ ସୁଖରେ ରୁହ । କଳ୍ପ-ଶେଷ ପରେ ତୁମେ ମୋର ସାଯୁଜ୍ୟ ପ୍ରାପ୍ତ ହେବ । ତତ୍ପରେ ଜାନକୀ ମଧ୍ଯ ପ୍ରୀତା ହୋଇ ବର ଦେଲେ ।

× × ×

ହନୁମାନ ଏହାପରେ ଆନନ୍ଦାଶ୍ରୁପୂରିତ ଲୋଚନରେ ବିଦାୟ ନେଇ ତପସ୍ୟା ନିମନ୍ତେ ହିମାଳୟକୁ ଯାତ୍ରା କଲେ ।



## ବୈଶାଖ

# ଅକ୍ଷୟତୃତୀୟାର ପୃଷ୍ଠଭୂମି

**ଆଜ** ପୁଣ୍ୟ ଦିବସ ଅକ୍ଷୟ ତୃତୀୟା । ବୈଶାଖ ମାସର ଶୁକ୍ଳପକ୍ଷ ତୃତୀୟା ଅକ୍ଷୟ ତୃତୀୟା ନାମରେ ପରିଚିତ । ଏହା ମଧ୍ୟ ଅକ୍ଷୟ ପୁଣ୍ୟ-ଯୁକ୍ତା ତୃତୀୟା, ଅର୍ଥାତ୍ ଏ ତୃତୀୟାରେ ଅନୁଷ୍ଠିତ ଦାନ ଓ କର୍ମର ପୁଣ୍ୟ ଫଳ ଅସରନ୍ତି । ଏ ଦିବସ ଓଡ଼ିଶାର ଜନଜୀବନ ସହିତ ପୁଣି ସମ୍ପୃକ୍ତ । ଗୁଡ଼ିଏ କାରଣରୁ ହିନ୍ଦୁମାନଙ୍କର ଏ ଦିବସ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରଥମତଃ ଏହି ଦିନ ସତ୍ୟଯୁଗ ଆରମ୍ଭ ହୋଇଥିଲା । ଦ୍ୱିତୀୟରେ କୃଷୀମାନେ ଏ ଦିନ କିଆରିରେ ପ୍ରଥମେ 'ଅକ୍ଷିମୁଠି' ନେଇ ଧାନବୁଣା ଆରମ୍ଭ କରନ୍ତି । ତୃତୀୟତଃ ଜଗନ୍ନାଥ ଦେବଙ୍କ ଚନ୍ଦନଯାତ୍ରା ଓ ରଥ ଗଢ଼ା କାମ ଏହିଦିନ ଆରମ୍ଭ ହୁଏ ଏବଂ ଚତୁର୍ଥତଃ ସଧବା ସ୍ତ୍ରୀମାନେ ଷଠୀବୁଢ଼ୀଙ୍କର (ଷଠୀଦେବୀ) ପୂଜା କରନ୍ତି । ଆଉମଧ୍ୟ କେତେକ ଶାସ୍ତ୍ରାନୁଯାୟୀ ଭଗବାନ ଏହିଦିନ ଲୋକଙ୍କ ମଙ୍ଗଳ ପାଇଁ ଗଙ୍ଗାଙ୍କୁ ଦେବଲୋକରୁ ମର୍ତ୍ତ୍ୟଲୋକକୁ ଅବତରଣ କରାଇଥିଲେ ।

ହିନ୍ଦୁ ଶାସ୍ତ୍ରକାରଙ୍କ ମତରେ ସତ୍ୟଯୁଗର ଏହା ଆରମ୍ଭ ଦିବସ । ବୈଶାଖ ଶୁକ୍ଳ ତୃତୀୟା ଦିନ ସତ୍ୟଯୁଗ, କାର୍ତ୍ତିକ ଶୁକ୍ଳ ନବମୀ ଦିନ ତ୍ରେତାଯୁଗ, ଭାଦ୍ର କୃଷ୍ଣ ତ୍ରୟୋଦଶୀ ଦିନ ଦ୍ୱାପର ଯୁଗ ଓ ମାଘ ପୌର୍ଣ୍ଣମାସୀ ଦିନ କଳିଯୁଗ ଆରମ୍ଭ ହୋଇଥିବାର ପ୍ରମାଣ ରହିଛି । ଲେଖାଅଛି—

"ବୈଶାଖେ ଶୁକ୍ଳପକ୍ଷେ ତୁ
ତୃତୀୟାୟାଂ କୃତଂ ଯୁଗମ୍
କାର୍ତ୍ତିକେ ଶୁକ୍ଳପକ୍ଷେ ତୁ
ତ୍ରେତା ଚ ନବମେଽହନି ।

ଅଥ ଭାଦ୍ରପଦେ ମାସି
ତ୍ରୟୋଦଶ୍ୟାଂ ତୁ ଦ୍ୱାପରମ୍
ମାଘେ ତୁ ପୌର୍ଣ୍ଣମାସ୍ୟାଂ ତୁ
ଘୋରଂ କଳିଯୁଗଂ ସ୍ମୃତମ ।"

ଶାସ୍ତ୍ରରୁ ଜଣାଯାଏ, ସତ୍ୟଯୁଗର ଅନ୍ୟ ନାମ କୃତଯୁଗ । ଏ ଯୁଗର ପରିମାଣ ୧୭ ଲକ୍ଷ ୨୮ ହଜାର ବର୍ଷ । ବୈଶାଖ ଶୁକ୍ଳପକ୍ଷ ତୃତୀୟା (ଅକ୍ଷୟ ତୃତୀୟା) ଦିନ ଏ ଯୁଗର ଉତ୍ପତ୍ତି । ଏହି ଯୁଗରେ ମତ୍ସ୍ୟ, କୂର୍ମ, ବରାହ ଓ ନୃସିଂହ—ଏହି ଚାରିଗୋଟି ଅବତାର । ଏ ଯୁଗର ବୈଶିଷ୍ଟ୍ୟ ହେଉଛି ମନୁଷ୍ୟମାନେ ସତ୍ୟନିଷ୍ଠ ଓ ଯୋଗରତ୍ୱିତ । ଏମାନଙ୍କର ଇଚ୍ଛାମୃତ୍ୟୁ । ଉଚ୍ଚରେ ଏମାନେ ୨୧ ହାତ ବଡ଼ନ୍ତି । ପରମାୟୁ ମଧ୍ୟ ୧ ଲକ୍ଷ ବର୍ଷ । ଏହା ଅବଶ୍ୟ ଆଜିର ଏ 'ଘୋର କଳିଯୁଗରେ' ଆମକୁ ଏକ ଉଦ୍ଭଟ କଳ୍ପନାରୂପେ ପ୍ରତୀୟମାନ ହୋଇପାରେ; ମାତ୍ର ଏ ଯୁଗର ତତ୍ତ୍ୱ ଆମ ମନରେ ଉତ୍ସାହ, ଆଗ୍ରହ ତଥା କୌତୂହଳ ସୃଷ୍ଟି କରେ । ଏ ଯୁଗର 'ଚକ୍ରବର୍ତ୍ତୀ' ରାଜାଙ୍କର ସଂଖ୍ୟା ପୁଣି ସୀମିତ । ମାତ୍ର ଛଅଜଣ । ଏମାନେ ହେଲେ—ବଳି, ବେଣୁ, ମାନ୍ଧାତା, ପୁରୁରବା, ଧୃନ୍ଧୁମାର ଓ କାର୍ତ୍ତବୀର୍ଯ୍ୟ । ଏ ଯୁଗର ତାରକମନ୍ତ୍ର ପୁଣି ନାରାୟଣ କୈନ୍ଦ୍ରିକ, ଯଥା—

"ନାରାୟଣପରା ବେଦାଃ
ନାରାୟଣପରା କ୍ଷରାଃ,
ନାରାୟଣପରା ମୁକ୍ତିଃ
ନାରାୟଣପରା ଗତିଃ ।"

ଏପରିକି ଧର୍ମଧାରଣାର ବଳିଷ୍ଠ ବିଶ୍ୱାସ ଥିବାରୁ ଦେବତାମାନେ ପୃଥିବୀରେ ସର୍ବଦା ବିଚରଣ କରି ଲୋକଙ୍କୁ ସଦ୍ୟଫଳ ଦେଉଥିବାର ପ୍ରମାଣ ମିଳେ । 'ସତ' ପରେ ତ୍ରେତାଯୁଗର ପାଳି । ଏହାର ଭୋଗ ୧୨ ଲକ୍ଷ ୯୬ ହଜାର ବର୍ଷ । ଦ୍ୱାପରର ରହଣି ୮ ଲକ୍ଷ ୬୪ ହଜାର ବର୍ଷ ଓ ବର୍ତ୍ତମାନ ଯୁଗ ବା କଳିଯୁଗ ଆୟୁଷ ୪ ଲକ୍ଷ ୩୨ ହଜାର ବର୍ଷ । ଏଣୁ 'କଳି' ପରେ 'ସତ୍ୟ'ର ଆଗମ ହୁଏ ଏବଂ 'ଗଙ୍ଗା

ନଦୀ', 'ଗ୍ରାମଦେବତୀ' ଓ 'ବିଷ୍ଣୁ' ପୁଣି ମର୍ତ୍ତ୍ୟକୁ ଫେରି ଆସନ୍ତି । ଏମାନେ 'କଳି'ରେ ପୃଥିବୀ ତ୍ୟାଗକରି ସ୍ୱର୍ଗକୁ ଚାଲିଯାଆନ୍ତି ବୋଲି ବ୍ୟାସଦେବ ତାଙ୍କର ସଂସ୍କୃତ ଭାଗବତରେ ନିମ୍ନପ୍ରକାରେ ଲେଖିଅଛନ୍ତି—

"କଲୌ ଦଶ ସହସ୍ରାଣି
ବିଷ୍ଣୁଃ ତ୍ୟଜତି ମେଦିନୀଂ,
ତଦର୍ଦ୍ଧଂ ଗ୍ରାମଦେବତୀ,
ତଦର୍ଦ୍ଧଂ ଜାହ୍ନବୀ ଗଙ୍ଗା ।"

ଅର୍ଥାତ୍ କଳିଯୁଗ ଭୋଗର ୨୫୦୦ ବର୍ଷଠାରେ ଗଙ୍ଗାଦେବୀ, ୫୦୦୦ ବର୍ଷଠାରେ ଗ୍ରାମଦେବତୀ ଓ ୧୦,୦୦୦ ବର୍ଷଠାରେ ବିଷ୍ଣୁ ମେଦିନୀ ତ୍ୟାଗ କରନ୍ତି । ଏଣୁ ଯେଉଁ ଗଙ୍ଗାନଦୀ ଏହି ଅକ୍ଷୟତୃତୀୟା ଦିନ ମର୍ତ୍ତ୍ୟଲୋକକୁ ଆସିଥିଲେ, ତାଙ୍କର ମାହାତ୍ମ୍ୟ ଆଉ ନ ଥିଲେ ସୁଦ୍ଧା ଏଦିନ ଗଙ୍ଗା ତାଙ୍କ ବାସସ୍ଥଳ ହିମାଳୟ ଓ ତାଙ୍କ ସ୍ୱାମୀ ଶଙ୍କରଙ୍କର ମଧ୍ୟ ପୂଜା ହୁଏ । ଏପରିକି ଗଙ୍ଗାଙ୍କୁ ମର୍ତ୍ତ୍ୟକୁ ଆଣିଥିବା ଓ ଜୀବନରେ ୧୪୪ ବର୍ଷକାଳ ତପସ୍ୟା କରିଥିବା ଭଗୀରଥ ମଧ୍ୟ ପୂଜା ପାଇବାରୁ ବାଦ୍ ପଡ଼ନ୍ତି ନାହିଁ । ଲେଖାଅଛି—

"ପୂଜୟେଚ୍ଛଙ୍କରଂ ଗଙ୍ଗାଂ
କୈଳାସଂ ଚ ହିମାଳୟମ୍
ଭଗୀରଥଂ ଚ ନୃପତିଂ
ସାଗରାଣାଂ ସୁଖାବହମ୍ ।"

ଏଣୁ ଏହି ବିଶିଷ୍ଟ ଦିବସ ଅକ୍ଷୟତୃତୀୟା ଦିନ ଗଙ୍ଗାବତରଣ ତଥା ସତ୍ୟଯୁଗ ଆରମ୍ଭ ହୋଇଥିବାରୁ ଏହି ଦିବସଟି ବର୍ଷକ ବାର ମାସ ମଧ୍ୟରେ ସାର । ତୃଷାର୍ତ୍ତଙ୍କୁ ଜଳ ଓ କ୍ଷୁଧାର୍ତ୍ତଙ୍କୁ ଅନ୍ନଦାନ ଦ୍ୱାରା ଓ ପ୍ରଚଣ୍ଡ ରୌଦ୍ରତାପରୁ ପଥିକମାନଙ୍କୁ ଦହିମିଶ୍ରିତ ଜଳଛତ୍ର ମାଧ୍ୟମରେ ପୁଣ୍ୟ ଅର୍ଜନ କରାଯାଏ ।

ଓଡ଼ିଶାର ସର୍ବତ୍ର ସୁପରିଚିତ 'ଅକ୍ଷିମୁଠି' ଏହି ଦିନ ଅନୁକୂଳ ହୁଏ । ପାଗ ଭଲ ହେଉ ବା ମନ୍ଦ ହେଉ, ଏଦିନ ଧାନବୁଣା ଆରମ୍ଭ ହୁଏ । ସେ ନୂଆ ବିହନ 'ଅକ୍ଷିମୁଠି' ନାମରେ ପରିଚିତ । କପିର

ସକାଳ ହେବ, ନୂଆ ଗୌଣୀରେ ବିହନ ପୂରାଇ ତାକୁ ଗୋଟିଏ ନୂଆ ଟୋକେଇରେ ରଖିବ, ତା' ଉପରେ ନୂଆ ପାଟକନା ବା ନୂଆ ବସ୍ତ୍ର ଖଣ୍ଡିଏ ଘୋଡ଼ାଇବ, ଏହି ଚନ୍ଦ୍ରରେ ଋଷୀବାପୁଡ଼ା ବିଭୋର ଥାଏ । ଜାଙ୍ଗୁଲୁ ଜାଙ୍ଗୁଲୁ ରାତି ଥାଏ, ମାଷ୍ଟ୍ରୁ ଅନ୍ଧାର ବେଳୁ କୃଷକ ପତ୍ନୀ ଲାଗିଯାଏ ପିଠା ତିଆରି କରିବାରେ । ଲକ୍ଷ୍ମୀଙ୍କୁ ତାହା ନୈବେଦ୍ୟ ଦିଆଯିବ । ନଚେତ ଲକ୍ଷ୍ମୀ ଠାକୁରାଣୀ ପ୍ରସନ୍ନା ହେବେ । ଘରକୁ ତା'ର 'ଅକ୍ଷୟ' ଫସଲ ଆସିବ, ଘର ପୂରି ଉଠିବ । ରାତି ପାହେ । ଋଷୀଭାଇ ଚାଲେ କ୍ଷେତକୁ । କିଆରିରେ ଲକ୍ଷ୍ମୀ ପୂଜା ହୁଏ । ଈଶାଣ କୋଣରେ ଭୋଗ ଦିଆହୁଏ । ତାକୁ ସେଠି ପୋତି ଦିଆଯାଏ ଓ ତାପରେ ହଳ ବୁଲହୋଇ ନୂଆ ବିହନ ବୁଣାଯାଏ । ବିଶେଷତଃ ଓଡ଼ିଶା ପକ୍ଷରେ ନୂତନ ବୀଜବପନ ଦୃଷ୍ଟିରୁ ଏହା ଏକ ଶୁଭଦିବସ ଓ କେହି କେହି ଏହାକୁ ଯୁଗର ଆଦ୍ୟ ଦିବସ ବୋଲି କହନ୍ତି । କୃଷକର ଆଶା ଭରସାର ଦିନ ଏ । 'ଅଖିମୁଠି' ବା 'ଅକ୍ଷୟ ମୁଷ୍ଟି' ଅର୍ଥାତ୍ ଯେଉଁ ବିହନ ମୁଷ୍ଟି କ୍ଷୟ ହେବାର ନୁହେଁ ବୋଲି କେତେକ ଅର୍ଥ କରନ୍ତି । ଆଜିର ଧର୍ମଧାରଣା କମିଆସୁଥିଲେ ମଧ୍ୟ ଋଷୀ ପୁଅଙ୍କ ନିମନ୍ତେ ଏ ଦିବସର ଗୁରୁତ୍ୱ କାଳେ କାଳେ ଏହିପରି ରହିଥିବ ।

ଅକ୍ଷୟ ତୃତୀୟା ଦିନ 'ଷଷ୍ଠୀ ଦେବୀ' ବା 'ଷଠୀବୁଢ଼ୀଇ'ଙ୍କର ପୂଜା ସଧବା ସ୍ତ୍ରୀମାନେ କରୁଥିବାରୁ ଏହାର ଗୁରୁତ୍ୱ ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ଏ ଷଠୀ ଦେବୀ ପୁଣି କିଏ ? ଆମର ବିଦ୍ୟାର ଦେବୀ ସରସ୍ୱତୀ ଓ ଧନର ଦେବୀ ଲକ୍ଷ୍ମୀ । ମାତ୍ର ଆଗାମୀ ଯୁଗର ହେବେ ଯେଉଁମାନେ ଭବିଷ୍ୟତ ଅର୍ଥାତ୍ ଶିଶୁ ସେମାନଙ୍କର ନିରାପତ୍ତା ଓ ସୁସ୍ଥ ବିକାଶର ରକ୍ଷାକାରିଣୀ କିଏ ? ରୋମୀୟମାନଙ୍କର ଦୋଳିର ଦେବତା 'କୁନନା' ଓ ସେ ଶିଶୁମାନଙ୍କର ପାଳନକର୍ତ୍ତ୍ରୀ । ଠିକ୍ ସେହିପରି ଷଠୀ ଦେବୀ ବା ଷଠୀବୁଢ଼ୀଇ ହେଉଛନ୍ତି ଆମ ସନ୍ତାନମାନଙ୍କର ରକ୍ଷାକାରିଣୀ । ଏ ପୁଣି କାର୍ତ୍ତିକେୟ ପତ୍ନୀ । ଏହାଙ୍କ ଅନ୍ୟ ନାମ 'ଦେବସେନା' । ଏହାଙ୍କ ପ୍ରସାଦରେ ପୁତ୍ର ପୌତ୍ରାଦି ଲାଭ ହୁଏ । ଜଗତସାକର ଶିଶୁଙ୍କର ଏ ପାଳିକା । ଅପୁତ୍ରକ ବ୍ୟକ୍ତି ଏକ ବର୍ଷ ଷଠୀ ଦେବୀଙ୍କ ବ୍ରତ ଗ୍ରହଣ କଲେ ତା'ର ପୁତ୍ର ଲାଭ ହୁଏ ବୋଲି ପୁରାଣରୁ ଜଣାଯାଏ । ସୂତିକାଗାରରେ

ଶିଶୁ ଜନ୍ମର ଷଷ୍ଠ ଦିବସରେ କାଠରେ ଏହାଙ୍କ ରୂପ ଗଢ଼ାଯାଇ ବା ପିତୁଳା ନିର୍ମାଣ କରାଯାଇ ପୂଜା କରାଯାଏ । ଏ ସୁପୁତ୍ରଦା ଓ ସୁଖଦା । ଏଣୁ ସଧବା ସ୍ତ୍ରୀମାନେ ପ୍ରତି ଶୁକ୍ଳ ଷଷ୍ଠୀରେ ଏହାଙ୍କ ପୂଜା କରନ୍ତି । ବିଶେଷତଃ ଭାଦ୍ର ଶୁକ୍ଳ ଷଷ୍ଠୀ ଦିନ ( ଷଷ୍ଠୀଓଷାରେ ) ଏହାଙ୍କ ପୂଜା ସର୍ବତ୍ର ହେଉଥିଲେ ମଧ୍ୟ ଅକ୍ଷୟ ତୃତୀୟା ଦିନ ଏହାଙ୍କ ପୂଜା ପାଇଁ ମଧ୍ୟ ବ୍ୟବସ୍ଥା ରହିଛି । ଏ ପୁଣି ଷୋଡ଼ଶ ମାତୃକାଙ୍କ ମଧ୍ୟରୁ ଅନ୍ୟତମା । (ଷୋଡ଼ଶ ମାତୃକା ହେଉଛନ୍ତି—ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସେନା, ସୁଧା, ସ୍ୱାହା, ଶାନ୍ତି, ପୁଷ୍ଟି, ଧୃତି, ତୁଷ୍ଟି, କୁଳଦେବତା ଓ ଆମଦେବତା (ଭାଷାକୋଷ-ପୃଷ୍ଠା ୬୪୫୧) । ଏଥିରେ ଯେଉଁ 'ଦେବସେନା'ଙ୍କର ନାମୋଲ୍ଲେଖ ଅଛି, ସେ ହେଉଛନ୍ତି ଶିଶୁ କଲ୍ୟାଣକର୍ତ୍ତ୍ରୀ ଷଠୀବୁଢ଼ୀଇ । ଏହି ଷଠୀବୁଢ଼ୀଇଙ୍କୁ କେନ୍ଦ୍ର କରି ଏକ ଗଳ୍ପ ଗଢ଼ି ଉଠିଛି—"ନଣନ୍ଦ ଭାଉଜ ଗଲେ ମାଟି ଦୁଇ ଟୋକେଇ ଆଣି ଘର ଲିପିବାକୁ । ମାଟି ଖୋଳୁ ଖୋଳୁ ଖଣତି ଯାଇ ନଣନ୍ଦର ମୁଣ୍ଡରେ ବାଜିଲା । ସେ ସାଙ୍ଗେ ସାଙ୍ଗେ ସେଠି ଢଳି ପଡ଼ିଲା । ଭାଉଜ କାନ୍ଦିବାକୁ ଆରମ୍ଭ କଲା । ଏହି ସମୟରେ ଷଠୀଦେବୀ ହଠାତ୍ ପହଞ୍ଚି କହିଲେ—"ଆଲୋ, ତୋ ନଣନ୍ଦ ଏହିକ୍ଷଣି ଜୀଇଁବ, ତୁ ଯେଉଁ ଛଅ ଗୋଟି ଶିଶୁ ଜନ୍ମ କରିବୁ, ତାହା ମୋତେ ଦେଇ ପାରିବୁ ?" ସାଧବ ବୋହୂ କହିଲା—"ମୁଁ ନିଶ୍ଚୟ ଦେବି" । ଗଳ୍ପ ଶେଷାଂଶରୁ ଜଣାଯାଏ ଯେ, ଷଠୀବୁଢ଼ୀଇ ତା ଉପରେ ପ୍ରସନ୍ନା ହେଲେ । ତାକୁ ସବୁ ପୁଅ ଫେରାଇ ଦେଇ ତାର ସତ୍ୟରେ ପ୍ରୀତ ହେଲେ । ଛ' ତିଅଣ, ଛ' ଖଣ୍ଡ କନା ଓ ଛ' ଗୋଟି ପିଠା କରି ଏ ଓଷା ପୂଜିବାକୁ କହିଗଲେ ।

(ଓଷାବଳୀ ପୃଷ୍ଠା ୯୭ )

ଅକ୍ଷୟତୃତୀୟା ଦିନ ଜଗତର ନାଥ ଜଗନ୍ନାଥ ଦେବଙ୍କ ଲୋକପ୍ରିୟ ଚନ୍ଦନଯାତ୍ରା ପୁରୀରେ ଆରମ୍ଭ ହୁଏ । ମହାପ୍ରଭୁଙ୍କ ଚଳନ୍ତି ପ୍ରତିମା ମଦନମୋହନ ଲକ୍ଷ୍ମୀ ଓ ସରସ୍ୱତୀଙ୍କ ସହ ଚନ୍ଦନ ପୋଖରୀକୁ ବିଜେ କରନ୍ତି । ନୌକାବିହାର ଓ ଜଳକ୍ରୀଡ଼ା ଜନିତ ଆନନ୍ଦମୁଖର ଦିବସ ଦୀର୍ଘ ୨୧ ଦିନ ପର୍ଯ୍ୟନ୍ତ ଚାଲେ । ଏକ ପାଲିଙ୍କିରେ ରାମ କୃଷ୍ଣ ଓ ଅନ୍ୟ ଏକ ପାଲିଙ୍କିରେ ପଞ୍ଚପାଣ୍ଡବ, ଯଥା-ମାର୍କଣ୍ଡେୟ, ଲୋକନାଥ,

ଯମେଶ୍ବର, କପାଳମୋଚନ ଓ ନୀଳକଣ୍ଠେଶ୍ବର ବିଜେ କରନ୍ତି । ଏମାନେ ପ୍ରକୃତରେ ପଞ୍ଚଶିବ । ସାଧାରଣତଃ ଗ୍ରୀଷ୍ମକାଳ ଅସହ୍ୟ ଉତ୍ତାପର କାଳ । ଏଣୁ ଚନ୍ଦନ ଲାଗି ହେବା ସ୍ୱାଭାବିକ । ସନ୍ଧ୍ୟାରେ ଚନ୍ଦନ କୁଣ୍ଡରେ ଠାକୁରମାନଙ୍କୁ ରଖାଯାଏ । ଆରମ୍ଭରେ ଚନ୍ଦନ, ଶେଷରେ ଚନ୍ଦନ, ଏଣୁ ଯାତ୍ରାର ନାମ ଚନ୍ଦନଯାତ୍ରା ରଖାଯାଇଛି । ତିନି ଦେବତାଙ୍କ ଚନ୍ଦନ ଲାଗି ପରେ ରଥ ତିଆରି ନିମନ୍ତେ ତାଙ୍କଠାରୁ ( ମହାପ୍ରଭୁଙ୍କଠାରୁ ) ଅନୁମତି ଅଣାଯାଇ ଶିଳ୍ପୀମାନଙ୍କୁ ମାଳା ଦିଆଯାଏ । ଅନ୍ୟ କେତେକ ସ୍ଥାନରେ ଚନ୍ଦନ ଯାତ୍ରା 'ଗୃପ ଯାତ' ନାମରେ ପ୍ରସିଦ୍ଧ । ବିଶେଷତଃ ପୁରୀର ଚନ୍ଦନଯାତ୍ରାର ଏକ ମନୋହର ତଥା ଜୀବନ୍ତ ବର୍ଣ୍ଣନା କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ 'ରସିକ ହାରାବଳୀ' କାବ୍ୟରେ ଦେଖାଯାଏ । କୋଶଳ ଦେଶର ରାଜପୁତ୍ର ମାଧବ ମାସରେ ଅର୍ଥାତ୍ ବୈଶାଖ ମାସରେ ପୁରୀରେ ପହଞ୍ଚି ନାବରେ ମହାପ୍ରଭୁଙ୍କ ବିଜେ, ଜଳକ୍ରୀଡ଼ା, ସାଧୁମାନଙ୍କର ମଧୁରପୂର୍ଣ୍ଣ ବନ୍ଦନାର ଦୃଶ୍ୟ, କର୍ପୂର ଚନ୍ଦନ ପିଚକା ଓ ଶ୍ରେଷ୍ଠ ଭ୍ରମର ଧଳା ପ୍ରଭୃତି ସନ୍ଦର୍ଶନ କରି ସେ ଆତ୍ମବିଭୋର । କବି ଲେଖିଛନ୍ତି—

"ନରେନ୍ଦ୍ର ତଡ଼ାଗେ କରୀନ୍ଦ୍ର ସୁରେନ୍ଦ୍ର ପରିହରି,
ନାବରେ ଭାବରେ ବିଜୟ କରି ସୁଖେ ବିହରି ।
ପଛେ ରଙ୍ଗ ସ୍ୱଚ୍ଛେ ବରହପୁଚ୍ଛ ଦ୍ୱିଜେ ସେବନ୍ତି,
ରଞ୍ଜନ ବ୍ୟଜନ ସଜ୍ଜନ କରେ ଧରି ବିଞ୍ଚନ୍ତି ।
ସଂସାର ସାର ଘନସାର ପିଚକା କେ ମାରଇ,
କ୍ଷୀରନିଧି ଧୀରଲହରୀ ପରି ଭୃମର ଶୋଭି ।"

ଯାହାହେଉ ଆଜିର ଏହି ପୁଣ୍ୟ ଅବସରରେ 'ସତ୍ୟଯୁଗ'ର ସତ୍ୟବାଣୀ ଆମକୁ ଉଦ୍‌ବୁଦ୍ଧ କରି ଆମର ଅକ୍ଷମୂଠି ଅକ୍ଷୟ ହେଉ ଜଗନ୍ନାଥଙ୍କ 'ଚନ୍ଦନ' ଜଗତର ସମସ୍ତଙ୍କର ମଙ୍ଗଳ ବିଧାନ କରୁ ଓ ଷଠୀ ଦେବୀ ଆମର ଆଗାମୀ ଯୁଗର ଆଗନ୍ତୁକମାନଙ୍କୁ ସୁସ୍ଥ ସବଳ ଓ ସନ୍ମାର୍ଗଗାମୀ କରନ୍ତୁ—ଏତିକ କାମନା ।



# ଜାତୀୟ ପର୍ବ : ଅକ୍ଷୟ ତୃତୀୟା

**ବୈ**ଶାଖ ଶୁକ୍ଳ ତୃତୀୟା ଅକ୍ଷୟ ତୃତୀୟା ନାମରେ ପରିଚିତ । ଏ ଦିନ ଯେଉଁ ଦାନପୁଣ୍ୟ କରାଯାଏ, ତାହା ଅକ୍ଷୟ ହୋଇ ରହେ ବୋଲି ପୁରାଣ ମତ । ଏଣୁ ଅକ୍ଷୟ ପୁଣ୍ୟଯୁକ୍ତା ତୃତୀୟା ଭାରତୀୟ ହିନ୍ଦୁ ସଂସ୍କୃତିରେ ଏକ ଉଲ୍ଲେଖଯୋଗ୍ୟ ଓ ବହୁ ସ୍ମୃତିଧାରକ ପୁଣ୍ୟ ତିଥି । ପୁଣ୍ୟମାସ ବୈଶାଖର ଏହା ପୁଣ୍ୟତମ ଦିବସ ।

"ବୈଶାଖେ ମାସି ରାଜେନ୍ଦ୍ର ! ଶୁକ୍ଳପକ୍ଷେ ତୃତୀୟକା
ଅକ୍ଷୟା ସା ତିଥିଃ ପ୍ରୋକ୍ତା କୃତ୍ତିକା ରୋହିଣୀଯୁତା
ତସ୍ୟାଂ ଦାନାଦିକଂ ସର୍ବମକ୍ଷୟଂ ସମୁଦାହୃତମ୍

ପୁନଶ୍ଚ ଏ ଦିବସର ଦାନପୁଣ୍ୟକୁ କେନ୍ଦ୍ର କରି ଭବିଷ୍ୟ ପୁରାଣରେ ଲେଖାଅଛି—

'ଯା ଶୁକ୍ଳ କୃଷ୍ଣ ଶାର୍ଦ୍ଦୂଳ ! ବୈଶାଖେ ମାସି ବୈ ତିଥିଃ
ତୃତୀୟା ସାକ୍ଷୟା ଲୋକେ ଗୀର୍ବାଣୈରଭି ବନ୍ଦିତା' ।

ସ୍କନ୍ଦ ପୁରାଣରେ ମଧ୍ୟ ଅକ୍ଷୟ ତୃତୀୟାର ସ୍ପଷ୍ଟ ଉଲ୍ଲେଖ ଅଛି— 'ବୈଶାଖସ୍ୟ ସିତେ ପକ୍ଷେ ତୃତୀୟାଽକ୍ଷୟା କଥ୍ୟତେ' ।

ସର୍ବଭାରତୀୟ ସ୍ତରରେ ଏ ଦିବସଟିର ମହତ୍ତ୍ୱ ମୁଖ୍ୟତଃ ଗଙ୍ଗା-ସ୍ନାନ, ସତ୍ୟଯୁଗ ଉତ୍ପତ୍ତି, ଦାନ ଇତ୍ୟାଦି ଉପରେ ଆଧାରିତ ହୋଇ-ଥିଲେ ମଧ୍ୟ ଉତ୍କଳରେ ଏହାର ତାତ୍ପର୍ଯ୍ୟ ଇତିହାସ ଦୃଷ୍ଟିରୁ ଗୁରୁତ୍ୱ-ପୂର୍ଣ୍ଣ । ସେ ସବୁର ସଂକ୍ଷିପ୍ତାଲୋଚନା ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

ବୈଶାଖ ଶୁକ୍ଳ ତୃତୀୟା ଗଙ୍ଗାସ୍ନାନ ଓ ଭଗବାନ କୃଷ୍ଣଙ୍କର ଚନ୍ଦନ ଅର୍ଚ୍ଚନା ନିମନ୍ତେ ମହତ୍ତ୍ୱପୂର୍ଣ୍ଣ । ଗ୍ରୀଷ୍ମଋତୁର ଏହି ଦିନ ଦାନ ଦୃଷ୍ଟିରୁ ମଧ୍ୟ ପ୍ରଶସ୍ତତର । ବସନ୍ତଋତୁର ଦୁଇମାସ ଚୈତ୍ର ଓ ବୈଶାଖ

ପ୍ରାଚୀନ ପଞ୍ଜୀ ପଣ୍ଡିତମାନଙ୍କ ମତରେ ମଧୁ ଓ ମାଧବ ମାସ ନାମରେ କଥିତ । ମଧୁମାସ ଚୈତ୍ର 'ଫୁଲର' ମାସ ମାତ୍ର ମାଧବ ଅର୍ଥାତ୍ ବୈଶାଖ 'ଫଳର' ମାସ । ଏହି ମାସରେ ନାନାବିଧ ଫଳ କୃଷିପ୍ରଧାନ ଭାରତୀୟଙ୍କ ଗୃହକୁ ଆସେ । ଏଣୁ ଏ ମାସ ଦାନ ନିମନ୍ତେ ଏକାନ୍ତ ଅନୁକୂଳ । ଦ୍ୱିତୀୟତଃ ଚୈତ୍ରମାସରେ ମୀନସଂକ୍ରାନ୍ତି (ଖରମାସ) ରହେ । ମେଷ ସଂକ୍ରାନ୍ତି ବା ବିଷୁବ ସଂକ୍ରାନ୍ତି ବୈଶାଖ ମାସରେ ଥାଏ । ସୂର୍ଯ୍ୟ ଠିକ୍ ପୂର୍ବ ଦିଗରେ ବୈଶାଖ ଓ କାର୍ତ୍ତିକ ଏହି ଦୁଇ ମାସରେ ଥାନ୍ତି । ଏଣୁ ବୈଶାଖର ଅକ୍ଷୟତୃତୀୟା ଏବଂ କାର୍ତ୍ତିକର ଅକ୍ଷୟ ନବମୀ ଏହି ଦୁଇଦିନ ଦାନ ନିମନ୍ତେ ପ୍ରକୃଷ୍ଟ ସମୟ । ପୁଣି ପକ୍ଷ ଦିଗରୁ ବିଚାର କଲେ ଜଣାଯାଏ ଯେ ଶୁକ୍ଳପକ୍ଷ ସକଳ ପ୍ରକାର ଦେବକାର୍ଯ୍ୟ ଓ ମାଙ୍ଗଳିକ ବିଧାନ ନିମନ୍ତେ ପ୍ରଶସ୍ତ । ତୃତୀୟତଃ ତୃତୀୟା ତିଥିକୁ ଜୟା ତିଥି ବୋଲି କୁହାଯାଏ । ପୁଣି ଶୁକ୍ଳପକ୍ଷର ଏହି ତିଥି ଶୁଭ ।

ନନ୍ଦା ଭଦ୍ରା ଜୟା ରିକ୍ତା ପୂର୍ଣ୍ଣାଃ ସ୍ୟୁସ୍ତିଥୟଃ ପୁନଃ ।
ପର୍ଯ୍ୟାୟେଣ ବିଜ୍ଞେୟା ନେଷ୍ଟ ମଧ୍ୟେଷ୍ଟଦାସିତେ ।

(ପୀୟୂଷ ଧାରାରେ ନାରଦଙ୍କ ଉକ୍ତି)

ଏହି ଶୁକ୍ଳତୃତୀୟା ପୁଣି ଗୌରୀଙ୍କ ଦିନ ଓ ଚତୁର୍ଥୀ ସିଦ୍ଧିଦାତା ଗଣନାଥଙ୍କ ଦିବସ ରୂପେ ସର୍ବତ୍ର ଜଣାଶୁଣା—

'ଚତୁର୍ଥୀ ଗଣନାଥସ୍ୟ ଗୌର୍ଯ୍ୟାସ୍ତତ୍ ପୂର୍ବ ବାସରେ' ।

ଏଣୁ ଏହି ଦୁଇ ଦିବସ ବିଘ୍ନନାଶନକାରୀ ଦେବତାଙ୍କ ଦିବସ ରୂପେ ପୁଣ୍ୟ ।

ଅକ୍ଷୟତୃତୀୟା ସ୍ନାନ ଓ ଦାନର ପର୍ବ । ଏ ଦାନ ପୁଣି ସତ୍ପାତ୍ରରେ ହେବା ବିଧେୟ । ଧର୍ମଶାସ୍ତ୍ର କହେ –

'ଗୋଭୂତିଳ ହିରଣ୍ୟଂ ପାତ୍ରେ ଦାତବ୍ୟ ମର୍ଚ୍ଚିତମ୍
ନା ପାତ୍ରେ ବିଦୁଷା କିଞ୍ଚିତ୍ ନାତ୍ମ ଋଣ୍ୟାନ ଭୂୟତେ ।'

ଅର୍ଥାତ୍ ଗାଈ, ଭୂମି, ସୁବର୍ଣ୍ଣ, ତିଳ, ଆଦି ସତ୍କାର ପୂର୍ବକ ସତ୍ପାତ୍ରରେ ଦାନ କରିବ । ଅପାତ୍ରରେ ଦାନ ପାଉଁଶରେ ହୋମ କରିବା ସମାନ ଅଟେ । କେବଳ ବିଦ୍ୟା ଅଥବା ତପଦ୍ୱାରା ପାତ୍ର ବଛା ଯାଆନ୍ତି ନାହିଁ । ଯାହାଠାରେ ସଦାଚାର, ତପ ଓ ବିଦ୍ୟା ଏହି ତିନୋଟି ଏକତ୍ର ଥାଏ ସେହି ହିଁ ସତ୍ ପାତ୍ର । ଏଣୁ ଋତୁଚର୍ଯ୍ୟା ପଦ୍ଧତି ଅନୁସାରେ ଉପଭୋଗ୍ୟ ବସ୍ତୁ ପ୍ରଥମେ ଦାନ କରି ପରେ ତାକୁ ଉପଭୋଗ କରିବାକୁ ହେବ ଓ ଋତୁ ଅନୁକୂଳ ବସ୍ତୁଦାନ କରିବାକୁ ହେବ । ଏହି ଦୃଷ୍ଟିରୁ ଅକ୍ଷୟତୃତୀୟା ଦିନ ବା ଗ୍ରୀଷ୍ମଋତୁରେ ଆନନ୍ଦ ମନରେ ପ୍ରପାନକ ଜଳ, ଫଳ, ଶୁଷ୍କବସ୍ତ୍ର, ସ୍ୱଚ୍ଛସ୍ୱାଦୁ ମଧୁ, କର୍ପୂର ରଜ, ଓ ଉଜ୍ଜ୍ୱଳ ପୁଷ୍ପମାଳା ଦାନ ପକ୍ଷେ ଗଣ୍ୟ, କାରଣ ଏସବୁ ଗ୍ରୀଷ୍ମତାପ ହରଣକାରୀ ।

ଅକ୍ଷୟତୃତୀୟା ଦିନ ଗଙ୍ଗାସ୍ନାନ ଯେ କୌଣସି ହିନ୍ଦୁ ପକ୍ଷେ କରଣୀୟ । କାରଣ ଏହି ନିର୍ଦ୍ଦିଷ୍ଟ ଅବସରରେ ଗଙ୍ଗାସ୍ନାନ କଲେ ସର୍ବପାପ ନାଶ ଯାଏ । ଲେଖା ଅଛି—

'ବୈଶାଖେ ଶୁକ୍ଳପକ୍ଷେ ତୁ ତୃତୀୟାୟାଂ ତଥୈବ ଚ
ଗଙ୍ଗା ତୋୟେ ନରଃ ସ୍ନାତ୍ୱା, ମୁଚ୍ୟତେ ସର୍ବକିଲ୍ବିଷୈଃ ।'

(ନିର୍ଣ୍ଣୟସିନ୍ଧୁ)

ସ୍ନାନ ମାତ୍ରେ ପବିତ୍ର । ସ୍ନାନ ଦ୍ୱାରା ଆୟୁର୍ବେଦ ମତେ ନିମ୍ନ ଫଳ ପ୍ରାପ୍ତ ହୁଏ ।

'ଦୀପନଂ ବୃଷ୍ୟ ମାୟୁଷ୍ୟଂ ସ୍ନାନ ମୂର୍ଜାବଳ ପ୍ରଦମ୍
କଣ୍ଡୂମଳ ଶ୍ରମ ସ୍ୱେଦ ତନ୍ଦ୍ରା ତୃଡ୍‌ଦାହ ପାପ୍ମଜିତ୍ ।'

(ବାଗ୍‌ଭଟ- ସୂତ୍ରସ୍ଥାନ-ଅ୨,ଶ୍ଳୋକ:୫ )

ଅର୍ଥାତ୍ ସ୍ନାନ ଅଗ୍ନିକୁ ପ୍ରଦୀପ୍ତ କରେ । ଏହା ଶୁକ୍ର ବର୍ଦ୍ଧକ, ଆୟୁକାରକ, ଉତ୍ସାହ ଓ ବଳ ବୃଦ୍ଧିକାରୀ । କୁଣ୍ଡିଆ, ମଇଳା, କ୍ଳାନ୍ତି, ଝାଳ, ତୃଷା, ଜ୍ୱାଳାହରଣକାରୀ ଓ ପାପ ପରାସ୍ତକାରୀ ଅଟେ । କୂପ,

ପୁଷ୍କରଣୀରେ ସ୍ନାନ ଅପେକ୍ଷା ନଦୀ ସ୍ନାନ ବେଶି ସ୍ୱାସ୍ଥ୍ୟପ୍ରଦ । ପୁଣି ଗଙ୍ଗାସ୍ନାନ ଏ ପୁଣ୍ୟ ଦିନରେ କୋଟି ଜନ୍ମର ପାତକହାରକ । ପୁରାଣ ମତେ ଏହି ଅକ୍ଷୟତୃତୀୟା ଦିନ ଗଙ୍ଗା ନଦୀ ମର୍ତ୍ତ୍ୟକୁ ଆସିଥିଲେ । ଏଣୁ ଏହି ଦିନ ଗଙ୍ଗାସ୍ନାନ ସହ ଗଙ୍ଗାପୂଜନ ଓ ଗଙ୍ଗାସ୍ମୃତି ସ୍ମରଣ କର୍ତ୍ତବ୍ୟ । ଏପରିକି ଗଙ୍ଗାବତରଣ ସହ ଜଡ଼ିତ ହିମାଳୟ, କୈଳାସ, ଶଙ୍କର ଓ ସଗର ବଂଶୀୟମାନଙ୍କର ମୁକ୍ତିର କାରଣ ଭଗୀରଥଙ୍କର ପୂଜା କରିବା ବିଧି ଶାସ୍ତ୍ରସମ୍ମତ ।

'ପୂଜୟେଚ୍ଛଙ୍କରଂ ଗଙ୍ଗାଂ, କୈଳାସଂ ଚ ହିମାଳୟମ୍
ଭଗୀରଥଂ ଚ ନୃପତିଂ ସଗରାଣାଂ ସୁଖାବହମ୍ '

(ଏକାମ୍ର ଚନ୍ଦ୍ରିକା)

ଏହାସହ ଆଉ ଏକ ପୌରାଣିକ ସ୍ମୃତି ମନକୁ ଆସେ । ଏହି ଅକ୍ଷୟତୃତୀୟା ଦିନ ସତ୍ୟଯୁଗ ଆରମ୍ଭ ହୋଇଥିଲା ବୋଲି ଶାସ୍ତ୍ରକାର-ମାନଙ୍କ ମତ ।

ଚନ୍ଦନୋତ୍ସବର ପ୍ରାରମ୍ଭ ଅକ୍ଷୟ ତୃତୀୟାର ଅନ୍ୟତମ ଆକର୍ଷଣ । ବସନ୍ତର ଏହା ଶେଷଭାଗ ଓ ଗ୍ରୀଷ୍ମର ଆରମ୍ଭ ହୋଇଥିବାରୁ ଆୟୁର୍ବେଦମତେ ଚନ୍ଦନ ଲେପନ ଶରୀର ପକ୍ଷେ ଅନୁକୂଳ । ସୂର୍ଯ୍ୟଙ୍କ ପ୍ରଚଣ୍ଡ ତାପରେ ଶରୀର ଉତ୍ତପ୍ତ ହୁଏ, ଝାଞ୍ଜୀ ପବନ ପିଟେ । ଏହାକୁ ନିୟନ୍ତ୍ରଣ କରିବା ପାଇଁ ଚନ୍ଦନସେବନ ଏକ ଅବ୍ୟର୍ଥ ଫଳପ୍ରଦ ବ୍ୟବସ୍ଥା । ଆୟୁର୍ବେଦ ଶାସ୍ତ୍ରରେ ଲେଖାଅଛି —

'ଚନ୍ଦନଂ ଶୀତଳଂ ରୁକ୍ଷଂ ତିକ୍ତ ମାହ୍ଲାଦନଂ ଲଘୁ
ଶ୍ରମ ଶୋଷ ବିଷ ଶ୍ଲେଷ୍ମ ତୃଷ୍ଣା ପିତ୍ତାସ୍ର ଦାହନୁତ୍'

(ଭାରତୀୟ ବ୍ରତୋତ୍ସବ ଗ୍ରନ୍ଥରୁ)

ଅର୍ଥାତ୍ ଚନ୍ଦନ ଥଣ୍ଡା ଓ ପ୍ରସନ୍ନକାରୀ ଅଟେ । ଏହାକୁ ସେବନ କରିବା ଦ୍ୱାରା ବିଷ, କଫ, ତୃଷା, ରକ୍ତପିତ୍ତ ଏବଂ ଜଳାପୋଡ଼ା ଦୂର ହୁଏ ।

ଉତ୍କଳରେ ଏହି ଚନ୍ଦନ ମହୋତ୍ସବର ଅଗ୍ରଣୀ ହେଳେ ଜଗନ୍ନାଥ । ସାଧାରଣ ମନୁଷ୍ୟ ପରି ତାଙ୍କୁ ଜ୍ୱର ହୁଏ । ସେ ବିଶ୍ରାମ ନିଅନ୍ତି । ତାଙ୍କୁ ଗ୍ରୀଷ୍ମ ବାଧେ । ଏଣୁ ସେ ମଧ୍ୟ ସାଙ୍ଗସାଥୀ ପରିବାରବର୍ଗ ସହ ସାନ୍ଧ୍ୟ–ବିହାରରେ ବାହାରନ୍ତି । ଏହା ତାଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରୁ ଅନ୍ୟତମ । ଏହି ଚନ୍ଦନଯାତ୍ରା ଅକ୍ଷୟତୃତୀୟାଠାରୁ ହିଁ ଆରମ୍ଭ ହୋଇ ଜ୍ୟେଷ୍ଠ କୃଷ୍ଣ ପକ୍ଷ ଅଷ୍ଟମୀରେ ଶେଷ ହୁଏ । ଏହି ଚନ୍ଦନଯାତ୍ରା ପ୍ରଥମେ ଦ୍ୱାପର ଯୁଗରେ ପଞ୍ଚପାଣ୍ଡବଙ୍କ ନେତୃତ୍ୱରେ ଭଗବାନ ବ୍ରଜେନ୍ଦ୍ରନନ୍ଦନଙ୍କୁ କେନ୍ଦ୍ର କରି ବିରାଟ ରାଜାଙ୍କ କେଳିସରୋବରରେ ଆରବଧ ହୋଇଥିଲା । ଶ୍ରୀ ମନ୍ଦିର 'ସମାଗ୍ଭରରୁ' ଜଣାଯାଏ "ରାଜା ବିରାଟ ଭକ୍ତିପରବଶ ହୋଇ ଯୁଧିଷ୍ଠିରଙ୍କୁ ପଚାରିଲେ, "କିପରି ଶ୍ରୀକୃଷ୍ଣଙ୍କୁ ଆପ୍ୟାୟିତ କରିପାରିବି" । ପାଣ୍ଡବମାନେ କହିଲେ—'ତାଙ୍କୁ ମନରେ ଧ୍ୟାନ କରି ଆପଣ ଗ୍ରୀଷ୍ମକାଳରେ କେଳିସରୋବରରେ ଚନ୍ଦନ ପାନିର ଜଳରେ ସୁଗନ୍ଧିତ ବାତାବରଣରେ ନୌକା ବିହାର କରାନ୍ତୁ । ଆମ୍ଭେମାନେ ସେତିକବେଳେ ରାମକୃଷ୍ଣଙ୍କୁ ଏଠାକୁ ଆବାହନ କରିବୁ । ସେହି କାରଣରୁ ନିଦାଘ ଋତୁର ଯୌବନ କାଳରେ ପଞ୍ଚ ପାଣ୍ଡବ ରାମକୃଷ୍ଣଙ୍କୁ ନେଇ ବିରାଟ ପୁରର କେଳିସରୋବରରେ ଚନ୍ଦନଯାତ୍ରା କରାଇଥିଲେ । ଦ୍ୱାପର ଯୁଗର ଉତ୍ସବଟି ଶ୍ରୀକ୍ଷେତ୍ରରେ ଆଚରିତ ହେଉଛି । ସେହି ପଞ୍ଚପାଣ୍ଡବ ହେଉଛନ୍ତି ପଞ୍ଚଶମ୍ଭୁ । "ଚନ୍ଦନମଣ୍ଡପରେ ସ୍ୱତନ୍ତ୍ର ନିର୍ମିତ ଚନ୍ଦନକୁଣ୍ଡ ଥାଏ । ଚନ୍ଦନରୂପ ପରେ ଠାକୁରମାନଙ୍କୁ ନିଜ ନିଜ ଚନ୍ଦନକୁଣ୍ଡରେ ଜଡ଼ାଇ ରଖି ଜଳକେଳି କରାଯାଏ । ପ୍ରାୟ ତିନିଦଣ୍ଡ କାଳ ଏ ଚନ୍ଦନ କ୍ରୀଡ଼ା ହୁଏ । ଚନ୍ଦନଚର୍ଚ୍ଚିତ ନୀଳ କଳେବର ପୀତବସନ ବନମାଳୀଙ୍କ ମନଭୁଲାଣିଆ ଦୃଶ୍ୟ ଭକ୍ତକୁ ଭାବବିହ୍ୱଳ କରେ । ମଦନମୋହନ ଦେବୀ, ଭୂଦେବୀ ଓ ମୁଖ୍ୟ ଭାବରେ ରାମକୃଷ୍ଣ ଓ ପଞ୍ଚପାଣ୍ଡବ ବଡ଼ଦାଣ୍ଡ ଉଚ୍ଛୁଳାଇ ଚନ୍ଦନ ସରୋବରକୁ ଯାତ୍ରା କରନ୍ତି । ବିରାଟ ପୁଷ୍କରିଣୀରେ ବୈରାଟିକା ଓ ସୁନନ୍ଦା ନାମକ ଦୁଇଟି ପୋତ ସଜ୍ଜିତ ଥାଏ ।

(ଶ୍ରୀ ସମାଗ୍ଭର)

ଶାସ୍ତ୍ର ଉଲ୍ଲେଖ ମତେ ଏହି ତୃତୀୟା ତିଥିରେ ଚନ୍ଦନାର୍ଚ୍ଚିତ ଶିବଙ୍କୁ ଯେ ଦର୍ଶନ କରେ ତାହାର ବ୍ରହ୍ମହତ୍ୟା ପାତକ ଆଦି ଦୂରୀଭୂତ ହୁଏ ।

"ବୈଶାଖସ୍ୟ ତୃତୀୟାୟାଂ ପ୍ରକୁର୍ଯ୍ୟାଚ୍ଚନ୍ଦନୋତ୍ସବଂ
କୁଙ୍କୁମଂ ଚନ୍ଦନଂ ଚନ୍ଦ୍ର ମେକୀକୃତ୍ୟ ତଦମ୍ବିକେ
ସ୍ନାପ୍ୟ ପଞ୍ଚାମୃତୈ ର୍ଲିଙ୍ଗଂ ଲେପୟେଚ୍ଚନ୍ଦନାଦିଭିଃ
ଯଃ ପଶ୍ୟେତ୍ ତୃତୀୟାୟାଂ ଲିଙ୍ଗଂ ଚନ୍ଦନଲେପିତଂ
'ବ୍ରହ୍ମହତ୍ୟାଦି ପାପାନି କ୍ଷପୟିତ୍ୱା ଯାତି ଶଙ୍କରଂ
ଚନ୍ଦନାଗୁରୁ କର୍ପୂରୈଃ ସୂକ୍ଷ୍ମପିଷ୍ଟୈସ୍ତୁ କୁଙ୍କୁମୈଃ" ।

(ଏକାମ୍ର ଚନ୍ଦ୍ରିକା-ପୃ-୯୪)

ଅକ୍ଷୟତୃତୀୟା ପର୍ବ ପୂର୍ଣ୍ଣ ତିଥିରେ ଓଡ଼ିଶାରେ ଅକ୍ଷିମୁଠି ଅନୁକୂଳ ଅନ୍ୟ ଏକ ଉଲ୍ଲେଖଯୋଗ୍ୟ ଘଟଣା ।

ଉଷା ମୁହୂର୍ତ୍ତରୁ କୃଷକ ପତ୍ନୀ ଲଗିଯାଏ ତାର ସେହି ଟୋକେଇରେ ଗୁଡ ଚାଉଳ ପିଠା ନୈବେଦ୍ୟ ରଖି ସଜାଡିବାରେ । ଏ ନୈବେଦ୍ୟ ଲକ୍ଷ୍ମୀଙ୍କୁ ଦିଆଯିବ । ମନରେ ତାର ଅସୁମାରି ଆଶା । ଅନାଗତ ଭବିଷ୍ୟତ ସୁନେଲି ଫଳ ତାର କଳ୍ପନାରେ ଫଳିଯାଏ । ଘରକୁ ତାର ଅକ୍ଷୟ ଫସଲ ଆସିବ, ଏହି ଅକ୍ଷୟ ମୁଷ୍ଟି ବା ଅକ୍ଷିମୁଠି ଜରିଆରେ । କୃଷକର ମନରେ ଆନନ୍ଦଉଲ୍ଲାସ ଉଜାଣି ଉଠେ । ଏଣୁ ନୂତନ ବୀଜବପନ ଦୃଷ୍ଟିରୁ କୃଷିଜୀବୀ ଉତ୍କଳବାସୀଙ୍କ ପକ୍ଷରେ ଏହା ଏକ ଭୌଗୋଳିକ ଶୁଭ ଦିବସ ।





# ନୃସିଂହ ଚତୁର୍ଦ୍ଦଶୀ

**କାଳ ନିର୍ଣ୍ଣୟ**—ବୈଶାଖ ମାସ ଶୁକ୍ଳ ଚତୁର୍ଦ୍ଦଶୀ ନୃସିଂହ ଚତୁର୍ଦ୍ଦଶୀ ନାମରେ ବିଦିତ । ନୃସିଂହଙ୍କ ତୁଷ୍ଟି ନିମନ୍ତେ ଏହି ଚତୁର୍ଦ୍ଦଶୀ ପାଳନ କରାଯାଏ ।

ଶୁକ୍ଳପକ୍ଷେ ଚତୁର୍ଦ୍ଦଶ୍ୟାଂ ମାସି ମାଧବ ସଞ୍ଜ୍ଞକେ
ପ୍ରାଦୁର୍ଭୂତୋ ନୃପଞ୍ଚାସ୍ୟଃ ତସ୍ମାତ୍ତାଂ ସମୁପୋଷୟେତ୍
ଅନଙ୍ଗେନ ସମାଯୁକ୍ତା ନ ସୋପୋଷ୍ୟା ଚତୁର୍ଦ୍ଦଶୀ
ପୂର୍ଣ୍ଣା ଯୁକ୍ତାଂ ତୁତାଂ କୁର୍ଯ୍ୟାନ୍ନରସିଂହସ୍ୟ ତୁଷ୍ଟୟେ"

(ଗଦାଧର ପଦ୍ଧତି)

ସୂର୍ଯ୍ୟାସ୍ତ ସମୟ ଚତୁର୍ଦ୍ଦଶୀ ତିଥି ହେଲେ ସେହିଦିନ କରିବା ଉଚିତ । ଦୁଇଦିନ ସୂର୍ଯ୍ୟାସ୍ତ ସମୟେ ଚତୁର୍ଦ୍ଦଶୀ ତିଥି ପଡ଼ିଲେ ଦ୍ୱିତୀୟଦିନ ନ ପାଳି ପରଦିନ ପାଳିବା ବିଧେୟ । ଏ ଦିନ ଶନିବାର ଓ ସ୍ୱାତି ନକ୍ଷତ୍ର ହେଲେ ଆହୁରି ଭଲ । ଜ୍ୟୋତିଃଶାସ୍ତ୍ରାନୁସାରେ ଆରମ୍ଭ ଓ ସମାପ୍ତି ଶନିବାରେ ହେବା ଉଚିତ । ଯଥା –'ସ୍ୱାପ୍ୟଂ ସମାପ୍ୟଂ ଶନି ଭୌମବାରେ' ପୁଣି ସ୍ୱାତି ନକ୍ଷତ୍ର ଅପୁନରାଗମନ ଦିବସ ନାମେ ଗଣ୍ୟ—'ଶତା ସ୍ୱାତିଗତା ମେଧା ଶ୍ଲିଷା ସ୍ୱାତି ଗତାନରାଃ ନ ପୁନ ର୍ଗୃହମାୟାନ୍ତି' ଅର୍ଥାତ୍ ଏ ନକ୍ଷତ୍ରରେ ଗଲେ ଆଉ ଫେରି ହୁଏ ନାହିଁ ।

**ତାତ୍ପର୍ଯ୍ୟ**—ମଧୁଋତୁର ପ୍ରଥମ ମାସ 'ଚୈତ୍ର'ରେ ମର୍ଯ୍ୟାଦା ପୁରୁଷୋତ୍ତମ୍ ରାମଙ୍କ ଅବତାର ପୁଣି ଦ୍ୱିତୀୟ ମାସ 'ମାଧବ'ରେ 'ନୃସିଂହ'ଙ୍କର ଜଣେ 'ଶାନ୍ତ' ମୂର୍ତ୍ତି ଓ ଅନ୍ୟ ଜଣକ 'ଉଗ୍ର' ମୂର୍ତ୍ତି । ଚୈତ୍ରର କମନୀୟତାରେ ଜଣେ କାନ୍ତକୋମଳ, ବୈଶାଖର ରୌଦ୍ରତାରେ ଅନ୍ୟ ଜଣକ ଉଗ୍ର ଓ ଭୀଷଣ ନୃସିଂହାବତାର ଭଗବାନଙ୍କ ଦଶ ବା ଚବିଶ ଅବତାର ମଧ୍ୟରୁ ଅନ୍ୟତମ । ସାଧାରଣତଃ ଅବତାରମାନଙ୍କ ମଧ୍ୟରେ ରାମ, କୃଷ୍ଣ, ନୃସିଂହ ଓ ବାମନ ଏହି ଚାରି ଅବତାର ଶ୍ରେଷ୍ଠ । ରାମାୟଣରେ ରାମ ଓ ଭାଗବତ ଏବଂ ମହାଭାରତରେ କୃଷ୍ଣ ମହିମା ଧ୍ୱନିତ । ନୃସିଂହାବତାର

କାହାଣୀ ଶ୍ରୀମଦ୍ ଭାଗବତର ସପ୍ତମ ସ୍କନ୍ଧରେ ବର୍ଣ୍ଣିତ । ଭକ୍ତ ପ୍ରହ୍ଲାଦର ତାରଣ ଓ ଅଧର୍ମୀ ହିରଣ୍ୟକଶିପୁର ମାରଣ ଏ ଅବତାରର ଲକ୍ଷ୍ୟ ।

**କଥା**—ହିରଣ୍ୟକଶିପୁ ବଧ ପରେ ନୃସିଂହଙ୍କର କୋପ ଶାନ୍ତ ହେଲା । ଭକ୍ତ ପ୍ରହ୍ଲାଦ ପ୍ରଭୁଙ୍କ କୋଳରେ ବସି କରପତ୍ର ଯୋଡ଼ି ପଚାରିଲେ, "ହେ ପ୍ରଭୁ ! ଆପଣଙ୍କ ପ୍ରତି ମୋର ଭକ୍ତିର କାରଣ କୁହନ୍ତୁ ।" ଭଗବାନ କହିଲେ, "ପୂର୍ବ କଳ୍ପରେ ତୁମେ ଏକ ବ୍ରାହ୍ମଣପୁତ୍ର ଥିଲ । ତୁମ ନାମ ଥିଲା 'ବାସୁଦେବ' । ତୁମେ ବେଶ୍ୟାଗାମୀ ଥିଲ । ତୁମର ପିତା ବସୁଶର୍ମା ଧାର୍ମିକ ଥିଲେ । ତୁମର ମା' ମଧ୍ୟ ସୁଶୀଳା ଥିଲେ । ତୁମକୁ ମିଶାଇ ତୁମେ ପାଞ୍ଚଭାଇ ଥିଲ । ତୁମେ ସବୁଠାରୁ ସାନ ଥିଲ । ବେଶ୍ୟାସଙ୍ଗ, ଧନଚୋରିରେ ତୁମେ ପ୍ରବୃତ୍ତ ଥିଲ । ଦିନେ ସେ ବେଶ୍ୟାସହ ତୁମର ଝଗଡ଼ା ହେଲା । ତୁମେ ଭୋଜନ କଲ ନାହିଁ, ସେ ବେଶ୍ୟା ମଧ୍ୟ ନିରାହାରରେ ରହିଲା । ଉଭୟେ ଏହିପରି ଉପବାସ କଲ । ତୁମ ଅଜ୍ଞାତରେ ସେଦିନ ମୋର ଶ୍ରେଷ୍ଠ ବ୍ରତ ପଡ଼ିଥିଲା । ଉଭୟେ ମଧ୍ୟ ଜାଗରଣରେ ରହିଥିଲ । ତେଣୁ ଅତ୍ୟନ୍ତ ପୁଣ୍ୟ ଫଳ ତୁମ ଦୁହିଁଙ୍କୁ ଅଜ୍ଞାତରେ ମିଳିଲା ।"

ଏହି ବ୍ରତ ପାଳନ କରି ପ୍ରଥମେ ବ୍ରହ୍ମା ସୃଷ୍ଟି ସର୍ଜନା କରିଥିଲେ । ତ୍ରିପୁରାସୁର ବଧ କରିବା ପୂର୍ବରୁ ଶିବ ମଧ୍ୟ ଏହା କରିଥିଲେ । ବହୁରାଜା ଓ ଋଷି ଏ ବ୍ରତକରି ପୁଣ୍ୟ ଫଳ ପ୍ରାପ୍ତ ହୋଇ ଅଛନ୍ତି । ଏହି ବ୍ରତ ପ୍ରଭାବରେ ସେ ବେଶ୍ୟା ମଧ୍ୟ ଅନ୍ୟ ଜନ୍ମରେ ଅପ୍ସରା ହୋଇ ସ୍ୱର୍ଗବାସ କରି ପରେ ମୋକ୍ଷପଦ ଲାଭକଲା । ଧନ, ଜନ, ଗୋପଲକ୍ଷ୍ମୀ ସହ ଅଶେଷ ପୁଣ୍ୟ ଓ ସିଦ୍ଧି ଏ ବ୍ରତ କଲେ ମିଳେ ।

ଏ ବ୍ରତ ଫଳରେ ମନୁଷ୍ୟ ସହସ୍ର ଦ୍ୱାଦଶୀ ଫଳ ଲାଭ କରେ । ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ତିଥି ସର୍ବ ପାପନାଶକ ଅଟେ । ଏ ଦିନ ପ୍ରାତଃରୁ ଦନ୍ତ ଧାବନ କରି ନିମ୍ନ ମନ୍ତ୍ର ମତେ ନିୟମ ପାଳନ କରିବା ଉଚିତ ।

"ନୃସିଂହଦେବ ଦେବେଶ ତବ ଜନ୍ମଦିନେ ଶୁଭେ
ଉପବାସଂ କରିଷ୍ୟାମି ସର୍ବ ଭୋଗ ବିବର୍ଜିତମ୍
ଶ୍ରୀ ନୃସିଂହ ମହୋଗ୍ରସ୍ତ୍ୱଂ ଦୟାଂ କୃତ୍ୱା ମମୋପରି
ଅଦ୍ୟାହଂ ପ୍ରତିଧାସ୍ୟାମି ବ୍ରତଂ ନିର୍ବିଘ୍ନତାଂ ନୟ"

ଏ ଦିନ ବ୍ରତାବ୍ଲମ୍ବୀମାନେ ମିଥ୍ୟାଭାଷଣ ପରିତ୍ୟାଗ କରିବେ । ସ୍ତ୍ରୀ ଓ ଜୁଆ ଖେଳ ବର୍ଜନ, ନୃସିଂହରୂପ ସ୍ମରଣ କରିବେ । ସ୍ନାନାନ୍ତେ ଉତ୍ତମ ବସ୍ତ୍ର ପରିଧାନ କରି ଭକ୍ତିପୂର୍ବକ ନୃସିଂହ ରୂପ ଧ୍ୟାନକରି ଭୂମିରେ ଗୋମୟ ଲେପନ ପୂର୍ବକ ଅଷ୍ଟଦଳ କମଳ ତିଆରି କରିବେ । ଏହା ଉପରେ ପୂଜା ଉପକରଣ ରଖି ନୃସିଂହ ମୂର୍ତ୍ତିକୁ ନୈବେଦ୍ୟ ଅର୍ପଣ କଲାବେଳେ ଏହି ମନ୍ତ୍ର ପାଠ କରିବେ –

"ନୃସିଂହାଚ୍ୟୁତ ଦେବେଶ ଲକ୍ଷ୍ମୀକାନ୍ତ ଜଗତ୍ପତେ
ଅନେନାର୍ଘ୍ୟ ପ୍ରଦାନେନ ତୁଷ୍ଟୋଭବ ମମୋପରି ।"

ଯେ କୌଣସି ବର୍ଣ୍ଣର ଲୋକେ ଏ ବ୍ରତ କରି ପାରିବେ । ନିମ୍ନ ମତେ ମନ୍ତ୍ର ପଢ଼ି ଧ୍ୟାନ କରିବେ—

'ମଦ୍ ବଂଶେ ଯେ ନରା ଜାତା ଯେ ଜନିଷ୍ୟନ୍ତି ଚାପରେ
ତାନ୍ ସମୁଦ୍ଧର ଦେବେଶ ଦୁଃଖ ଦାଦ୍‌ଭବ ସାଗରାତ୍ ।
(ଦୁଃଖ ଦାଦ୍‌ଭବ ସାଗରାତ୍)

'ପାତକାର୍ଣ୍ଣବ ମଗ୍ନସ୍ୟ ମହା ଦୁଃଖ ଗତସ୍ୟ ମେ
କରାବଲମ୍ବନଂ ଦେହି ଶେଷଶାୟିନ ଜଗତ୍ପତେ ।
ଶ୍ରୀ ନୃସିଂହ ରମାକାନ୍ତ ଭକ୍ତାନଂ ଭୟ ନାଶକ
ବ୍ରତେ-ନାନେନ ମେ ଦେବ ଭୁକ୍ତି ମୁକ୍ତି ପ୍ରଦୋଭବ ।'

'ଉପବାସ' ଏ ବ୍ରତର ମୂଳ ଓ ଏହି ଉପବାସର ଗୁରୁତ୍ୱ ସମ୍ବନ୍ଧରେ ଅନ୍ୟତ୍ର ଆଲୋଚିତ ଲେଖା ଦ୍ରଷ୍ଟବ୍ୟ ।



# ଉପବାସ ଓ ଏହାର ଗୁରୁତ୍ୱ

ଈଶ୍ୱର ପ୍ରାପ୍ତି ପାଇଁ ସାଧନା କରିବା ମନୁଷ୍ୟର ପରମ କର୍ତ୍ତବ୍ୟ । ସାଧନା ପାଇଁ ଏକ ସୁସ୍ଥ ଦେହ ଏବଂ ସୁସ୍ଥ ମନ ନିତାନ୍ତ ଦରକାର । ଉପବାସ ଶରୀରକୁ ସୁସ୍ଥ ରଖିବାରେ ସାହାଯ୍ୟ କରେ । ବହୁ ଚେଷ୍ଟା ସତ୍ତ୍ୱେ ଆମ ଖାଦ୍ୟକୁ ଦୋଷରୁ ରକ୍ଷା କରିବା କଷ୍ଟକର ହୋଇପଡ଼େ । ଆତ୍ମସଂଯମ କରୁଥିବା କୌଣସି ମନୁଷ୍ୟ ଖାଦ୍ୟ ବିଷୟରେ ଦୋଷଶୂନ୍ୟ ହୋଇପାରେ । ମାତ୍ର ଏପରି ବହୁତ କାରଣ ରହିଛି ଯାହାକୁ କେହି ବାରଣ କରି ପାରିବେ ନାହିଁ ।

ଯଦି ଶରୀରରେ କୌଣସି ରୋଗର ଲକ୍ଷଣ ଦେଖାଯାଏ ତେବେ ଏହା ଉପବାସ କରିବା ପାଇଁ ସଂକେତ ବୋଲି ଧରିବା କଥା । ପଶୁମାନେ ପ୍ରକୃତି ଉପରେ ନିର୍ଭର କରନ୍ତି । ଯଦି ସେମାନଙ୍କୁ କୌଣସି ରୋଗ ହୁଏ ତେବେ ସେମାନେ ପ୍ରକୃତିଗତ ଉପାୟ, ଯଥା-ସୂର୍ଯ୍ୟ କିରଣ ବିଶୁଦ୍ଧ ପବନ ଉପବାସ ଏବଂ ବିଶ୍ରାମ ଦ୍ୱାରା ନିଜକୁ ରୋଗମୁକ୍ତ କରିଥାଆନ୍ତି । ଥଣ୍ଡା, ମୁଣ୍ଡବିନ୍ଧା, ଅଳ୍ପଜ୍ୱର ଇତ୍ୟାଦି ରୋଗର କେତେକ ଲକ୍ଷଣ । ଏଗୁଡ଼ିକ ଯଦି ଅବହେଳିତ ହୁଅନ୍ତି ତେବେ ରୋଗ ବିରାଟ ଆକାର ଧାରଣ କରେ । ଏହି ପ୍ରକାରର ବିପଦକୁ ଏଡ଼ାଇବାପାଇଁ ଆମର ଶାସ୍ତ୍ରମାନଙ୍କରେ ଏକାଦଶୀ ବ୍ରତ, ଶିବରାତ୍ରି, ପୂର୍ଣ୍ଣିମା, ଅମାବାସ୍ୟା ବା କେତେକ ଦିନରେ କେତେକ ଦେବତାଙ୍କ ସନ୍ତୁଷ୍ଟି ପାଇଁ ଉପବାସ କରିବାର ବିଧି ରହିଛି । ଯେକୌଣସି ଲୋକ ଏହି ଦିନମାନଙ୍କରେ ଉପବାସ କରିବା ଉଚିତ୍ । ମାତ୍ର ଆଜିକାଲି ଗୃହସ୍ଥମାନେ ସପ୍ତାହର କେତେଦିନ କାର୍ଯ୍ୟବ୍ୟସ୍ତ ରହିବା ହେତୁ ଯେଉଁ ଦିନଟି ତାଙ୍କ ପାଇଁ ସୁବିଧାପ୍ରଦ ଅନ୍ତତଃ ସେହି ଦିନଟି ଉପବାସରେ ରହିବା ଉଚିତ୍ ।

ଆଜିର ଅବସ୍ଥାରେ ବିନା ଅଭ୍ୟାସରେ ଜଳପାନ ବିନା ଅନ୍ୟ କୌଣସି ଦ୍ରବ୍ୟ ସେବନ ନ କରି ଉପବାସ କରିବା ବହୁତ କଷ୍ଟକର । ତେଣୁ ଆମେ କିଛି ଜଳ ସହ ଦୁଇ ବା ତିନୋଟି ଫଳରସକୁ ମିଶାଇ ସେବନ କରିବାର ସୁବର୍ଣ୍ଣ ଉପାୟ ଅନୁସରଣ କରିବା ଉଚିତ୍ । କୌଣସି

କଠିନ ଫଳ ବା ମାଂସଳ ଫଳ ଉପବାସ ଦିନ ଖାଇବା ଉଚିତ ନୁହେଁ । ଏହି ପ୍ରକାରର ଉପବାସ ସ୍ୱାସ୍ଥ୍ୟ ପାଇଁ ଉତ୍ତମ ଅଟେ ।

ପ୍ରକୃତିରେ ବହୁ ପ୍ରକାରର ଦୋଷ ବା ଦୁର୍ଗୁଣର ନିରାକରଣ ପାଇଁ ଉପବାସ ଏକ ପ୍ରଥମ ଏବଂ ସଫଳ ମାଧ୍ୟମ । ଏହା ପାକସ୍ଥଳୀକୁ ବିଶ୍ରାମ ଦିଏ ଏବଂ ଏହାକୁ ବେଶୀ ଶକ୍ତିବାନ୍ କରାଏ । ଏହା ବହୁ ରୋଗରୁ ରକ୍ଷା କରାଏ । ଦୀର୍ଘ ସମୟ ଧରି ଉପବାସ ପାଳନ କରିବା ପାଇଁ ବହୁ ଯତ୍ନ ଦରକାର । ଜଣେ ଅଭ୍ୟସ୍ତ ଲୋକର ସାହାଯ୍ୟ ବିନା ତାହା କରିବା ଅସମ୍ଭବ । କାରଣ ଉପବାସ ପାଳନରେ ଯଦି କୌଣସି ବ୍ୟତିକ୍ରମ ଦେଖାଯାଏ ତେବେ ତାହା ଦେହ ପ୍ରତି ଲାଭଜନକ ହେବା ଅପେକ୍ଷା ବେଶୀ କ୍ଷତିକାରକ ହୋଇପାରେ । ଅଭ୍ୟସ୍ତ ନ ହୋଇ ମଧ୍ୟ ଦୁଇ ବା ତିନି ଦିନ ପର୍ଯ୍ୟନ୍ତ ଉପବାସ କରାଯାଇପାରେ ।

ପ୍ରଥମ ଦିନ ଗୋଟିଏ ଗ୍ଲାସ ପାଣି ସହିତ ଗୋଟିଏ କମଳା ବା ଲେମ୍ବୁର ରସ ମିଶାଇ ଦିନକୁ ୨ ବା ୩ ଥର ପାନ କରାଯାଇପାରେ । ୨ୟ ଦିନ ଠିକ୍ ଏହିପରି ତିନି ବା ଚାରିଥର ସେବନ କରାଯାଇପାରେ । ତୃତୀୟ ଦିନ ଉପର କଥିବା ପ୍ରକାରରେ ସେବନ କରି ତା ସହିତ କିଛି ଦୁଗ୍ଧ ଦ୍ୱିପ୍ରହର ଏବଂ ରାତିରେ ସେବନ କରାଯାଇ ପାରେ । ଚତୁର୍ଥ ଦିନ ତୁମେ ସକାଳେ ଖାଦ୍ୟ ଭାବରେ କିଛି ଫଳ ଏବଂ ଦୁଗ୍ଧ, ସନ୍ଧ୍ୟା ଖାଦ୍ୟ ହିସାବରେ କିଛି ମାଂସଳ ଫଳ ଏବଂ ରାତିରେ ଏକ କପ୍ ଦୁଗ୍ଧ ଖାଇବା ଉଚିତ୍ । ପଞ୍ଚମ ଦିନ ତୁମେ ତୁମର ସବୁଦିନିଆ ଭାତ, ରୁଟି, ଡାଲି ଏବଂ ପରିବା ତରକାରି ଖାଇପାର ।

ଏହି ଯୁଗରେ ଯେତେବେଳେ ଆମ୍ଭମାନଙ୍କ ସମୟର ଘୋର ଅଭାବ ଦେଖାଯାଉଛି କେବଳ ଫଳରସ ସେବନ କରି ସାପ୍ତାହିକ ବା ଦୈନିକ ଉପବାସ ଖୁବ୍ ଭଲ ଏବଂ ସୁବିଧାଜନକ ଅଟେ । ଏହା ନିତାନ୍ତ ଦରକାରୀ ଭାବେ ପାଳନ କରିବା ଦରକାର । ଏହିପ୍ରକାରର ଉପବାସ ଯଦି ବହୁ ଲୋକଙ୍କ ପାଇଁ କଷ୍ଟସାଧ୍ୟ ମନେହୁଏ ତେବେ ଗୋଟିଏ ଓଳି ପାଇଁ ହେଲେ ମଧ୍ୟ ଉପବାସ କରିବା ଉଚିତ୍ । ଏକ ସପ୍ତାହବ୍ୟାପୀ ଉପବାସ ଶରୀରକୁ ନିର୍ମଳ କରେ, ଶକ୍ତି ଯୋଗାଏ, କାର୍ଯ୍ୟକ୍ଷମ କରାଏ ଏବଂ

ଆଧ୍ୟାତ୍ମିକ ଶକ୍ତି ଯୋଗାଏ । ତେଣୁ ଆମର ଶାସ୍ତ୍ରସବୁ ଶ୍ରୀରାମକୃଷ୍ଣ ଏବଂ ଦୁର୍ଗାଙ୍କ ପାଇଁ ନବରାତ୍ରି ପାଳନ କରିବାର ପଦ୍ଧତିକୁ ପ୍ରଶଂସା କରିଛନ୍ତି । ମଧ୍ୟବିତ୍ତ ଶ୍ରେଣୀର ଲୋକେ ଏହି ପ୍ରକାରର ଉପବାସ ପାଳନ କରି ଡାକ୍ତରଙ୍କ ଖର୍ଚ୍ଚ ଯୋଗାଇବାରୁ ରକ୍ଷା କରିବେ । ଯଦି ସମ୍ଭବ ହୁଏ ତେବେ ଘୃହା ଓ କଫି ଉପବାସ ଦିନ ଏବଂ ଉପବାସର ପରେ ନ ଖାଇବା ଉଚିତ୍ ।

ପ୍ରତ୍ୟେକ ଧର୍ମର ଆଲୋଚକମାନେ ଏହି ଉପବାସର ପ୍ରଶଂସା କରିଛନ୍ତି । ଏହା ହେଉଛି ସ୍ୱାସ୍ଥ୍ୟ ଜୀବନର ପ୍ରଥମ ପାହାଚ । ପ୍ରତ୍ୟେକ ଡାକ୍ତର ସବୁବେଳେ ଏହାକୁ ହିଁ ପାଳନ କରିବା ପାଇଁ କହିଥାନ୍ତି । ଉପବାସ ଏବଂ ତୃପ୍ତିକର ଭୋଜନ ଉଭୟ ମନୁଷ୍ୟ ପକ୍ଷେ ଆଶୀର୍ବାଦ ସ୍ୱରୂପ । ସମ୍ପୂର୍ଣ୍ଣ ଭୋଜନ ଶୀଘ୍ର ଆଶୀର୍ବାଦ ପ୍ରଦାନ କରେ ମାତ୍ର ତାହା ଅଳ୍ପକ୍ଷଣ ସ୍ଥାୟୀ; ମାତ୍ର ଉପବାସ ଏକ ଅଲଗା ପ୍ରକାରର ଶାନ୍ତି ଦିଏ ।

ବର୍ତ୍ତମାନ ଏକ ସପ୍ତାହ ପର୍ଯ୍ୟନ୍ତ ଉପବାସ କରୁଥିବା ଗୋଟିଏ ଲୋକର କଥା ବିଚାର କରାଯାଉ । ସେ ସୁଖ ଓ ଶାନ୍ତି ଲାଭ କରେ ଏବଂ ଶାନ୍ତ ଭାବରେ ନିଜକୁ ଦେବତାଙ୍କ ଚିନ୍ତାରେ ଏକାଗ୍ର କରି ରଖେ । ଗୋଟିଏ ଦିନର ସମ୍ପୂର୍ଣ୍ଣ ଉପବାସ ତୁମ ଶରୀରକୁ ଶାନ୍ତି ପ୍ରଦାନ କରେ । ମସ୍ତିଷ୍କକୁ ଅନ୍ୟ ସବୁ କାମରୁ ମୁକ୍ତ ରଖେ । ଏହା ଦେହର ଅଙ୍ଗପ୍ରତ୍ୟଙ୍ଗକୁ ବିଶ୍ରାମ ପ୍ରଦାନ କରେ । ଚକ୍ଷୁର ଦୃଷ୍ଟିଶକ୍ତି ବୃଦ୍ଧି କରାଏ । ପ୍ରତ୍ୟେକ ଅଙ୍ଗକୁ ଏପରି ସତେଜତା ପ୍ରଦାନ କରେ ଯାହା ଆମେ କୌଣସି ଉପାୟରେ ପାଇପାରିବା ନାହିଁ । ଏହା ହେଉଛି ପରିବର୍ତ୍ତନର ଏକ ମାର୍ଗ । ଏହା ତୁମକୁ ସମ୍ପୂର୍ଣ୍ଣ ସୁଖ ପ୍ରଦାନ କରେ । ଏହା ତୁମକୁ ଈଶ୍ୱରଙ୍କର ନିକଟତର କରାଏ । ଏହି ପ୍ରକାରର ଆଶୀର୍ବାଦ ଯାହାକୁ ସ୍ପର୍ଶ କରେ ସେ ନିଜ ରଶ୍ମିରେ ନିଜେ ରଂଜିତ ହୁଏ । ଏହା କହିବା ଅନାବଶ୍ୟକ ଯେ ବୃଦ୍ଧ ଋଷିମାନେ ଏହାକୁ ଅଭ୍ୟାସ କରୁଥିଲେ ଏବଂ ଏହାକୁ ଅଭ୍ୟାସ କରିବା ପାଇଁ ଶିକ୍ଷା ଦେଉଥିଲେ । ଯଦି ତୁମେ ଏହା ପାଳନ କରୁ ନ ଥାଅ ତେବେ ଏହି ମୁହୂର୍ତ୍ତଠାରୁ ଏହାକୁ ପାଳନ କରିବା ପାଇଁ ଚିନ୍ତାକର ।

ଉପବାସ ସମ୍ବନ୍ଧରେ ଆୟୁର୍ବେଦ ଶାସ୍ତ୍ରରେ କଥାଟିଏ ଅଛି । ଥରେ ଜଣେ ପଣ୍ଡିତ ଆୟୁର୍ବେଦଜ୍ଞ ବୈଦ୍ୟଙ୍କୁ ନିମ୍ନମତେ ପ୍ରଶ୍ନ କରିଥିଲେ—

'ଅଭୂମିଜଂ ନିରାକାରଂ ପଥ୍ୟଂ ଷଡ୍ରସବର୍ଜିତମ୍,
ଚରକେଣ ସମାଖ୍ୟାତଂ ବଦ ବୈଦ୍ୟ କିମୌଷଧମ୍ ।'

ଅର୍ଥାତ୍ ଭୂଇଁରୁ ଜନ୍ମିନାହିଁ, ଆକାରଶୂନ୍ୟ, ପଥ୍ୟ ଛ ପ୍ରକାର ରସ ମଧ୍ୟରୁ କୌଣସି ରସଯୁକ୍ତ ନୁହେଁ; ତେଣୁ ରସହୀନ, ଏପରି କେଉଁ ଔଷଧର ବର୍ଣ୍ଣନା ଚରକ କରିଛନ୍ତି । ଉତ୍ତରରେ ବୈଦ୍ୟ ମହାଶୟ କହିଥିଲେ· ····'ଲଙ୍ଘନଂ' ବା 'ଉପବାସ' ।



ଜ୍ୟେଷ୍ଠ

# ସାବିତ୍ରୀ ବ୍ରତ

ଜ୍ୟେଷ୍ଠ ମାସ କୃଷ୍ଣପକ୍ଷର ଗାଢ଼ କାଳିମା ପୃଥିବୀକୁ ଘୋଟାଇ ଆସୁଛି । ମାତ୍ର ଏହା ମଧ୍ୟରେ ଯେଉଁ ଚିରନ୍ତନ ସତ୍ୟ ଲୁଚି ରହିଛି ତାହା ଯୁଗ ଯୁଗ ଧରି ଗଢ଼ି ଚାଲିଛି । ତାହା କେବେ ଛଡ଼ି ନାହିଁ । ଅଶ୍ୱପତି କନ୍ୟା ସାବିତ୍ରୀଙ୍କ ପାତିବ୍ରତ୍ୟ, ସହିଷ୍ଣୁ ଓ ଅଚଳ ନିଷ୍ଠା କାଳ କାଳ ଧରି ଆମର ନାରୀ ସମାଜ ପକ୍ଷରେ ଆଲୋକବର୍ତ୍ତିକା । ସ୍ୱୟଂ ଯମରାଜଙ୍କ ଆସନ ଟଳି ଯାଇଛି । ଧର୍ମ ପାଶରେ ସମସ୍ତେ ବନ୍ଧା । ସତ୍ୟରେ ଏ ପୃଥିବୀ ଆଚଯାଚ । ତେଣୁ ଓଡ଼ିଆରେ ମାଆ ଭଉଣୀଏ କହନ୍ତି, 'ତଳେ ବସୁମାତା ଉପରେ ଧର୍ମ ଦେବତା ।'

'ସତ୍ୟକୁ ସମୁଦ୍ର ଲଙ୍ଘି ନ ଛୁଅଇଁ କୂଳ,  
ସତ୍ୟରେ ବୃକ୍ଷମାନେ ଫଳୁଛନ୍ତି ଫଳ ।  
ସତ୍ୟରେ ଯେ ରାମଚନ୍ଦ୍ର ଗଲେ ବନବାସ,  
ଅସତ୍ୟରେ ରାବଣର ବଂଶ ଗଲା ନାଶ ।'

ସତ୍ୟ ଥିବାରୁ ରାମ ରାଜା, ଯୁଧିଷ୍ଠିର ସିଂହାସନ ମଣ୍ଡିଲେ । ଶ୍ରୀକୃଷ୍ଣ ଜୟୀ ହେଲେ । ଭାରତୀୟ ନାରୀର ସ୍ୱାମୀ ସର୍ବସ୍ୱ । ତା' ଜୀବନରେ ବୈଧବ୍ୟଠାରୁ ବଳି ଦୁଃଖ ନାହିଁ ।

'କାଠ ଲେ ମାଛ ଖାଇ ସରୁ ମୋ ଧନ,  
ଅଧ୍ୟ ଡେଙ୍ଗୁରା ବାଜି ହେଉ ମରଣ ।'

(ପଲ୍ଲୀ ଗୀତ ସଞ୍ଚୟନ)

ମାତ୍ର ସତ୍ୟବାନ ପ୍ରିୟା ସାବିତ୍ରୀ ଏ ସବୁଠାରୁ ଊର୍ଦ୍ଧ୍ୱରେ । ସେ ସତ୍ୟବାନଙ୍କ ପୁନର୍ଜୀବନ ଲାଭ ନିମନ୍ତେ ଯେତେ ଆତୁରା ହୁଅନ୍ତି, ବେଶୀ ଅଧିର ହୋଇପଡ଼ୁଛନ୍ତି ସତ୍ୟର ପାଳନ ନିମନ୍ତେ । ତେଣୁ ସାବିତ୍ରୀଙ୍କୁ 'ତୁମେ ଶତ ପୁତ୍ରର ଜନନୀ ହୁଅ' ବୋଲି ବର ଦେଇସାରିବା ପରେ

ଯମ ମହାଅନ୍ଧୁଆରେ ପଡ଼ିଯାଇଛନ୍ତି । ସ୍ୱାମୀ ବିହୁନେ ସତୀ ନାରୀର ପୁତ୍ର ସମ୍ଭବ କିପରି ? ଏହା ମହାସତୀର ଅପଳାପ ନୁହେଁ କି ? ଯମ ଦେବତା 'ନ ଯଯୌ ନ ତସ୍ଥୌ' ଅବସ୍ଥାରେ । ନିଜେ ଧର୍ମରାଜ, ପୁଣି ଜନ୍ତୁମାନଙ୍କର ପତି । ସାବିତ୍ରୀ କହିଲେ, "ହେ ଦେବ, ମହନ୍ତଙ୍କ କଥା ତ ଆନ ନୁହଁଇ । ଆପଣ ଯେଉଁ ବର ଦେଲେ ତାହା କିପରି ଫଳିବ ? ସତ୍ୟବାନଙ୍କୁ ଆପଣ ଘେନି ଯାଉଅଛନ୍ତି । ମୋର ଶତେ ପୁତ୍ର କିପରି ହେବ ?" ଏହା ଶୁଣି ଜନ୍ତୁପତି ସ୍ଥିର ହୋଇଗଲେ ଓ ପରେ କହିଲେ, "ହେ ସାବିତ୍ରୀ, ଧନ୍ୟ ତୁମ୍ଭର ସତୀତ୍ୱ । ତୁମେ ତିନିକୁଳ ଉଦ୍ଧାର କଲ । ମୋତେ ମଧ୍ୟ ବିନୟ ଗୁଣରେ ପରାଜିତ କଲ । ଏ କଥା ତୁମର ଚିରଖ୍ୟାତ ହେବ । ଯୁଗଯୁଗାନ୍ତରରେ ତୁମର ନାମ ବିଖ୍ୟାତ ଥିବ । ଜ୍ୟେଷ୍ଠ କୃଷ୍ଣ ଅମାବାସ୍ୟା ଦିନ ତୁମର ନାମ ସ୍ମରଣ କରି ଯେଉଁ ନାରୀ ସୁଚିତ୍ତ ମନରେ ସାବିତ୍ରୀ ବ୍ରତ କରିବ, ସେ ନାରୀ ଜନ୍ମେ ଜନ୍ମେ ସଧବା ରହିବ ଓ ପତିପରାୟଣା ହୋଇ ପୁତ୍ରବତୀ, ଧନବତୀ ହେବ ଏବଂ ଅନ୍ତିମ କାଳରେ ବୈକୁଣ୍ଠ ପ୍ରାପ୍ତି ହେବ ।

( ସାବିତ୍ରୀ ବ୍ରତ କଥା )

ବହୁଦିନର ସ୍ମୃତି ଉତ୍କଳରେ ଏ ପର୍ଯ୍ୟନ୍ତ ଜାଗରୁକ । ଓଡ଼ିଆ ଘରର ବୋହୂ ଭୂଆସୁଣୀମାନେ ରାତି ଥାଇ ଉଠନ୍ତି । ସକାଳ ଗାଧୁଆ ସାରନ୍ତି । ପାଟ ପଟନୀ ପିନ୍ଧନ୍ତି । ଗୋବରରେ ଘର ଲିପାପୋଛା କରନ୍ତି । ପୂତ ମନରେ ସାବିତ୍ରୀପୂଜାରେ ମନ ଦିଅନ୍ତି । ଦିନସାରା ଉପବାସ ରହିବାକୁ ପଡ଼େ । ପୂର୍ବ ରାତିରେ ମୁଗ ବତୁରାଇ ଥାଆନ୍ତି । ଅପରାହ୍ନରେ ପୂଜା ଶେଷ ହେଲେ ଗଜାମୁଗ, ତାଳ, ନଡ଼ିଆ, ଖଜୁରୀକୋଳି, ପଣସ, ଆମ୍ବ ଓ ସପୁରୀ ପ୍ରଭୃତି ଫଳାହାର କରନ୍ତି । ସାବିତ୍ରୀ ବ୍ରତରେ ଲକ୍ଷ୍ମୀନାରାୟଣଙ୍କୁ ପୂଜା କରନ୍ତି । ସାବିତ୍ରୀ ବ୍ରତ କଥାରୁ ଜଣାଯାଏ ଯେ ସ୍ତ୍ରୀମାନେ ଶିଳପୁଆକୁ ପଞ୍ଚାମୃତରେ ଶୁଦ୍ଧ ପୂତ କରି ସ୍ନାନ କରାଇ 'ସାବିତ୍ରୀ' ରୂପରେ ଥାପନ୍ତି । ଅଳଙ୍କାର, ଫୁଲଚନ୍ଦନ ଓ ନୈବେଦ୍ୟ ତାଙ୍କଠାରେ ଅର୍ପିତ ହୁଏ । ଲକ୍ଷ୍ମୀନାରାୟଣଙ୍କୁ ସ୍ମରଣ କରାଯାଏ । କଇଁ, ଅଳତାପତ୍ର, କଳାମାଳି ଓ ନୂଆ ଲୁଗା ସବୁ ଥୁଆ ହୁଏ । ଘୃତ ଦୀପ ଜାଳି ନିସଙ୍ଖୁଡ଼ି ଦ୍ରବ୍ୟସବୁ ରଖାଯାଏ । ବଂଶକୋଷରୁ

ଜଣାଯାଏ—ଏହି ବ୍ରତ ଚତୁର୍ଦ୍ଦଶ ବର୍ଷ ସାଧ୍ୟ । ଏହି ବ୍ରତ ଗ୍ରହଣ କରି ଚଉଦ ବର୍ଷ ପରେ ଏହାର ଉଦ୍‌ଯାପନ କରାଯାଏ । ଏ ବ୍ରତ ରାସରେ କର୍ତ୍ତବ୍ୟ– ଦିନଯାକ ଉପବାସ ରହି ରାତିରେ ପୂଜା କରି ସାବିତ୍ରୀ ଉପାଖ୍ୟାନ ଶୁଣି ତତ୍‌ପରେ ନୈବେଦ୍ୟ ଭୋଜନ କରିବ । 'ଶ୍ରୀଁ, ହ୍ଲୀଁ, କ୍ଲୀଁ' ସାବିତ୍ରୈ ସ୍ୱାହା । ଏହା ସାବିତ୍ରୀ ମନ୍ତ୍ର ।

( ଭାଷାକୋଷ ପୃଷ୍ଠା ୮୪୧୧ )

ଓଡ଼ିଶାରେ ବାର ମାସରେ ତେର ପର୍ବ । ପୁଣି କେହି କେହି କହନ୍ତି ବାର ଦିନରେ ତେର ପର୍ବ । ବିଶେଷତଃ ବହୁ ପ୍ରାଚୀନ କାଳରୁ ବହୁ ଓଷା ଓ ବ୍ରତ ଓଡ଼ିଶାର ଜନଜୀବନ ସହ ସମ୍ପୃକ୍ତ । ବ୍ରତଧାରୀ ଓ ବ୍ରତଧାରିଣୀମାନଙ୍କ ମନରେ ଦେବତାଙ୍କ ପ୍ରତି ଭକ୍ତିଭାବ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ଉପବାସ ଓ ଉପାସନା ମାଧ୍ୟମରେ ଧର୍ମଧାରଣାକୁ ଦୃଢ଼ କରିବା ଏଗୁଡ଼ିକର ଉଦ୍ଦେଶ୍ୟ । ଧନପ୍ରାପ୍ତି, ପୁତ୍ରପ୍ରାପ୍ତି ଓ ସୌଭାଗ୍ୟ ଲାଭ ସହ ପରକାଳର ମଙ୍ଗଳ ଇଚ୍ଛା ଏଗୁଡ଼ିକର ମୁଖ୍ୟ ଲକ୍ଷ୍ୟ ।

ଡକ୍ଟର କୁଞ୍ଜବିହାରୀ ଦାଶ ତାଙ୍କର ଓଡ଼ିଆ ଲୋକଗୀତ ଓ କାହାଣୀରେ ୧୫ ଟି ବ୍ରତର ଉଲ୍ଲେଖ କରିଅଛନ୍ତି । ସେଗୁଡ଼ିକ ହେଲା (୧) ସୋମନାଥ ବ୍ରତ । (୨) କୁକ୍‌କୁଟୀ ବ୍ରତ । (୩) କେଦାର ବ୍ରତ । (୪) ଚନ୍ଦ୍ର ମହାକାଳୀ ବ୍ରତ । (୫) ରବିନାରାୟଣ ବ୍ରତ । (୬) ସୁଦଶା ବ୍ରତ । (୭) ରାଇଦାମୋଦର ବ୍ରତ । (୮) ନଶାମଙ୍ଗଳ ବ୍ରତ । (୯) ଅନନ୍ତ ବ୍ରତ । (୧୦) ଋଷି ପଞ୍ଚମୀ । (୧୧) କୋଠିଆ ବିନାୟକ ବ୍ରତ । (୧୨) ଆଶ୍ୱିନ ସାମ ବ୍ରତ । (୧୩) କାର୍ତ୍ତିକ ଗୁରୁବାର ବ୍ରତ । (୧୪) ଚତୁର୍ମାସ୍ୟା ଗୁରୁବାର ବ୍ରତ । (୧୫) ବାରମାସୀ ଗୁରୁବାର ବ୍ରତ । ମାତ୍ର ଦୁଃଖର କଥା ଉତ୍କଳର ଅତି ଲୋକପ୍ରିୟ ସାବିତ୍ରୀ ବ୍ରତର ଏଥିରେ ତାଙ୍କର ଲିଖିତ ଓଷା ତାଲିକାରେ ସେହିପରି ୧୬ଟିର ନାମୋଲ୍ଲେଖ ଅଛି । ମାତ୍ର ସେଥିରେ ମଧ୍ୟ ସାବିତ୍ରୀ ବ୍ରତର ନାମ ନାହିଁ । ତଥାପି ଏହା ଉତ୍କଳର କାହିଁକ ଭାରତର ମଧ୍ୟ ଏକ ଜନପ୍ରିୟ ବ୍ରତ । ଓଷା ଓ ବ୍ରତ ମଧ୍ୟରେ ସାମାନ୍ୟ ପାର୍ଥକ୍ୟ ଥିବାର ଭାଷାକୋଷ ପ୍ରଣେତା ପ୍ରହରାଜ କହିଥିବା ବେଳେ ବ୍ରତକୁ ପୁରୁଷ ଓ ସ୍ତ୍ରୀ ଉଭୟେ କରନ୍ତି । ମାତ୍ର ସ୍ତ୍ରୀମାନେ ପାଳିବା ବ୍ରତକୁ ଓଷା କୁହାଯାଏ । (ଭାଷାକୋଷ ପୃଷ୍ଠା ୧୧୮୩)

ପଣ୍ଡିତ ବନମାଳୀ ମିଶ୍ରଙ୍କ ମତରେ 'ଦୃଢ଼ ଶତ୍ରରେ ଆରାଧନାକୁ ବ୍ରତ କହନ୍ତି ।' ଓଷା ଶବ୍ଦ ସଂସ୍କୃତ ଉପାସନା ଶବ୍ଦରୁ ରୂପାନ୍ତରିତ ହୋଇଅଛି । ବ୍ରତ ଓ 'ଓଷା' ମଧ୍ୟରେ ଅର୍ଥଗତ କୌଣସି ପ୍ରଭେଦ ନାହିଁ । ବ୍ରତ ଶବ୍ଦଟି ସଂସ୍କୃତ ଓ ଓଷା ଶବ୍ଦଟି ଗାଉଁଲି ।

ସାଧାରଣତଃ ଓଷା ଓ ବ୍ରତ ନୀତାତ୍ମକ, ଧର୍ମାତ୍ମକ ଓ କୌଣସି କୌଣସି ନିର୍ଦ୍ଦିଷ୍ଟ ଧର୍ମମତ ବା 'ବାଦ' ଉପରେ ଆଧାରିତ । କୁକ୍କୁଟୀ ବ୍ରତରେ 'ଜୈନ' ଧର୍ମଧାରା ବଳସିତ । ମାତ୍ର ସାବିତ୍ରୀ ବ୍ରତରେ ସତୀ, ସାଧ୍ୱୀ ପତିବ୍ରତା ସାବିତ୍ରୀଙ୍କ ଗୁଣ ସ୍ମରଣ ସହ ତାଙ୍କ ପନ୍ଥା ଅନୁସରଣ ହିଁ ଲକ୍ଷ୍ୟ । ତଥାପି ସାବିତ୍ରୀଙ୍କ ଜନ୍ମ ଆଖ୍ୟାନରେ ବୈଦିକ ବିସ୍ତାର ଅଙ୍ଗୁଳି ନିର୍ଦ୍ଦେଶ ରହିଛି । ଏ ସାବିତ୍ରୀ ଅନ୍ୟ କେହି ନୁହନ୍ତି । ନିଜେ ଦୁର୍ଗା ପୁଣି ସାବିତ୍ରୀ । ଅପୁତ୍ରକ ଅଶ୍ୱପତି ତାଙ୍କୁ ସାବିତ୍ରୀ ମନ୍ତ୍ର ପ୍ରଭାବରୁ ପାଇଲେ । ସାବିତ୍ରୀଙ୍କ ଆସନ ରାଜାଙ୍କ ଯଜ୍ଞ ପ୍ରଭାବରୁ ଟଳିଗଲା ବୋଲି ଅନ୍ୟତ୍ର ଉଲ୍ଲେଖ ଅଛି ।

'କଠୋର ତପରୁ ସାବିତ୍ରୀ ଦେବୀଙ୍କ ପଦ୍ମାସନ ଗଲା ଟଳି,
ହୋମ ଯଜ୍ଞ କୁଣ୍ଡୁ ବାହାରି ଆସିଲେ ତେଜ ନ ପାରଇ କଳି ।'

ଏହି ଅଶ୍ୱପତି କନ୍ୟା 'ସାବିତ୍ରୀ'ଙ୍କ ମୂଳରେ ମଧ୍ୟ ସେଇ ଧର୍ମ-ଧାରଣା, ସେଇ ଅତିମାନବତା ଦେଖାଯାଏ । ସତେ ଯେପରି ଭ୍ରଷ୍ଟା ଓ ପତିଭକ୍ତିହୀନା ନାରୀ ସମାଜର ପୁନରୁଦ୍ଧାର ନିମନ୍ତେ ତାଙ୍କର ଜନ୍ମ । ଏଣୁ ସେ ସ୍ତ୍ରୀ ସମାଜର ମଉଡ଼ମଣି । ଏହି ସାବିତ୍ରୀ ବ୍ରତର କର୍ମକାଳ ସମ୍ବନ୍ଧରେ ବ୍ରତ ସ୍ୱରୂପ ଭବିଷ୍ୟ ପୁରାଣ ଓ ମହାଭାରତରେ ବିସ୍ତୃତ ଆଲୋଚନା କରାଯାଇଛି ।

'ଜ୍ୟେଷ୍ଠ କୃଷ୍ଣ ତ୍ରୟୋଦଶ୍ୟାଂ ତ୍ରିରାତ୍ରଂ ବ୍ରତ ମାଚରେତ୍,
ସାବିତ୍ରୀଂ ପୂଜୟେତ୍ ଦେବୀଂ ସୁ ସୁଂଗନ୍ଧ ମୃଣ୍ଡେ ପ୍ରଭୁଂ,
ତ୍ରିରାତ୍ରେ ପୋଷଣାଂ ଚାତ୍ର ସ୍ତ୍ରୀଣାଂ ନାନ୍ୟତ୍ର ଶଂସ୍ୟତେ,
କାର୍ଯ୍ୟଂ ପତ୍ୟୁର ନୁଜ୍ଞାତେ ବୈଧବ୍ୟଂ ନ ଭବେତ୍ କ୍ୱଚିତ୍ ।'

ଅର୍ଥାତ୍ ନିଜ ପତିଙ୍କଠାରୁ ଅନୁମତି ନେଇ ଜ୍ୟେଷ୍ଠ ମାସର କୃଷ୍ଣ ତ୍ରୟୋଦଶୀ ଠାରୁ ତିନଦିନ ଯାଏଁ ଏ ବ୍ରତ କରିବ । ଏହି ବ୍ରତ

ଛଡ଼ା ସ୍ତ୍ରୀମାନେ ଅନ୍ୟନ ତିନ ଦିନ ଉପବାସ କରିବା ପ୍ରଶସ୍ତ ନୁହେଁ । ଏହି ବ୍ରତଦ୍ୱାରା ସ୍ତ୍ରୀମାନେ ବୈଧବ୍ୟ ଦଶା ଭୋଗିବେ ନାହିଁ । ପୁଣି ସାବିତ୍ରୀଙ୍କ କୋଳରେ ତାଙ୍କ ପତି ମୃତାବସ୍ଥାରେ ଥିବାବେଳେ ସାବିତ୍ରୀଙ୍କୁ ପୂଜା କରିବ ଅର୍ଥାତ୍ ମଧ୍ୟାହ୍ନ ସମୟ ଏ ବ୍ରତର କର୍ମକାଳ । ଚତୁର୍ଦ୍ଦଶୀ ଯୁକ୍ତ ଅମାବାସ୍ୟାରେ ଅନ୍ୟ କୌଣସି ବ୍ରତ ନ କରି କେବଳ ସାବିତ୍ରୀ ବ୍ରତ କରିବ ।

ପ୍ରାଚୀନ ପୁରାଣମାନଙ୍କରେ ଏହା ବଟ ସାବିତ୍ରୀ ନାମରେ ନାମିତ । କାରଣ ସତୀ ସାବିତ୍ରୀ ବଟ ମୂଳରେ ଦିବସ ଯାପନ କରିଥିଲେ । ଏଣୁ ଦନ୍ତ ଧାବନ ପୂର୍ବରୁ ନଦୀର ବିମଳ ଜଳରେ ସ୍ନାନ କରି ସ୍ତ୍ରୀମାନେ ବଟ ମୂଳରେ ବହୁଜଳ ସିଞ୍ଚନ କରିବେ । ଭବିଷ୍ୟ ପୁରାଣରେ···

'ଅମାୟାଂ ଚ ତଥା ଜ୍ୟେଷ୍ଠେ ବଟମୂଳେ ମହାସତୀ,
ତ୍ରିରାତ୍ରୋ ପୋଷିତା ନାରୀ ବିଧି ନାନେନ ପୂଜୟେତ୍,
ଜ୍ୟେଷ୍ଠ ମାସି ତ୍ରୟୋଦଶ୍ୟାଂ ଦନ୍ତ ଧାବନ-ପୂର୍ବକଂ,
ଦନ୍ତ କାଷ୍ଠଂ ସମଂ ଶୁଭ୍ରଂ ଜାତୀୟଂ ଚତୁରଙ୍ଗୁଳମ୍,
ସ୍ନାତ୍ୱା ଚୈବ ଶୁଚିର୍ଭୂତ୍ୱା ବଟଂ ସିଂଚେତ୍ ବହୁଦକୈଃ,
ସଧବା ବିଧବା ବା ପି ସପୁତ୍ରା ପୁତ୍ର ବର୍ଜିତା,
ଭର୍ତ୍ତୃରାୟୁ ର୍ବିବୃଦ୍ଧ୍ୟର୍ଥଂ କୁର୍ଯ୍ୟାଦ୍ ବ୍ରତମିଦଂ ଶୁଭମ୍,
ଜ୍ୟେଷ୍ଠେ ମାସେ ସିତେ ପକ୍ଷେ ତ୍ରୟୋଦଶ୍ୟାଂ ପତିବ୍ରତା'

ଏଣୁ ପ୍ରଥମେ ପ୍ରାତଃରୁ ପୂର୍ବାଭିମୁଖୀ ବା ଉତ୍ତରାଭିମୁଖୀ ହୋଇ ବଟମୂଳ ଜଳରେ ସିଞ୍ଚନ କରି ଏହି ମନ୍ତ୍ର ଉଚ୍ଚାରଣ କରିବ ଓ ମୂଳରେ ଧୂପ ଜାଳିବ ।

ଜ୍ଞମା — 'ବଟମୂଳେ ସ୍ଥିତୋ ବ୍ରହ୍ମା ବଟ ମଧ୍ୟେ ଜନାର୍ଦ୍ଦନଃ
ବଟାଗ୍ରେ ତୁ ଶିବଂ ବିଦ୍ୟାତ୍ ସାବିତ୍ରୀ ବ୍ରତସମ୍ଭୃତା'

ବଟମୂଳେ ପୂଜା ସମୟରେ ନିମ୍ନ ନୈବେଦ୍ୟ ମନ୍ତ୍ର ଉଚ୍ଚାରଣ କରିବା ବିଧେୟ ।

'ଶର୍କରା କଦଳୀ ଯୁକ୍ତଂ ଦଧିକ୍ଷୀର ଘୃତ ପ୍ଳୁତଂ
ନାନା ରସମୟଂ ଶୁଭ୍ରଂ ନୈବେଦ୍ୟ ପ୍ରତିଗୃହ୍ୟତାଂ ।'

ବିଘ୍ନରାଜ, ସରସ୍ୱତୀ, ହିରଣ୍ମୟ, ଉମା, ମହେଶ୍ୱର, ଯମରାଜ, ବଟ, ଅଶ୍ୱତ୍ଥ, ପ୍ଲକ୍ଷ, ମଧୁକ, ନିମ୍ବ—ଏହିପରି ପଞ୍ଚ ବୃକ୍ଷ ପୂଜା କରିବ । ବ୍ରତ ପୁସ୍ତକମାନଙ୍କରେ ଦିଆଯାଇଥିବା ନମସ୍କାର ଓ ଆବାହନ ମନ୍ତ୍ର ମଧ୍ୟରେ ବଟବୃକ୍ଷ ପୂଜା ସମ୍ପର୍କୀୟ ଆବାହନ ମନ୍ତ୍ର ବିଶେଷ ଗୁରୁତ୍ୱପୂର୍ଣ୍ଣ ବୋଧହୁଏ । ହେ ବଟବୃକ୍ଷ, ତୁମେ ବୃକ୍ଷରାଜ, ହରିହରାତ୍ମକ, ତୁମ ପ୍ରଭାବରେ ମୋର ବ୍ରତ ସଫଳ ହେଉ ।'

'ବଟାସି ବୃକ୍ଷ ରାଜସ୍ତ୍ୱଂ ଖ୍ୟାତୋ ହରିହରାତ୍ମକଃ,
ଭବନ୍ତୁ ଭବତ୍ ପ୍ରସାଦେନ ବ୍ରତଂ ମେ ସଫଳଂ ମମ ।
× × × ×
ନମୋସ୍ତୁ ବ୍ୟକ୍ତ ରୂପାୟ ମହାପ୍ରଳୟ ବାସିନେ
ମହେନ୍ଦ୍ରସେ୍ୟା ପରିସ୍ଥାୟ ନ୍ୟଗ୍ରୋଧାୟ ନମୋନମଃ,
ଅମର ସ୍ତ୍ୱଂ ସଦାକଂଦ, ବଷ୍ୱୋ ରାସୂତନଂ ବଟ,
ନ୍ୟଗ୍ରୋଧ, ହର ମେ ପାପଂ କଳ୍ପବୃକ୍ଷ ନମୋସ୍ତୁତେ ।'

ଜନ୍ତୁରାଜ ଯମଦେବତା ମଧ୍ୟ ବ୍ରତଚାରିଣୀଙ୍କ ଦ୍ୱାରା ବିଶେଷ ଭାବେ ବ୍ରତ ଦିବସରେ ଆରାଧ୍ୟ ।

'ଏବନ୍ତୁ ପୂଜୟେଦ୍ ଭକ୍ତ୍ୟା ସାବିତ୍ରୀଂ ପତିବଲ୍ଲଭାଂ,
ଯମଂ ସମ୍ପୂଜ୍ୟ ବିଧିବତ୍ ମନ୍ତ୍ରେଣାନେନ ବୁନମେତ୍,
ନମସ୍ତେ ଧର୍ମରାଜାୟ ଜନ୍ତୂନାଂ ହନ୍ତକାୟ ଚ,
ପତିଂ ଦଦସ୍ୱ ମେ ଦେବ ! ଯମରାଜ ! ନମୋସ୍ତୁତେ' ।
(ବ୍ରତବିଧାନ ପଦ୍ଧତି)

ସାଧବା ସ୍ତ୍ରୀମାନେ ନିଜ ନିଜ ସ୍ୱାମୀମାନଙ୍କର ଶୁଭ ମନାସିବା ସଙ୍ଗେ ସଙ୍ଗେ ପିତୃକୁଳର ମଙ୍ଗଳ କାମନା କରିବା ଓ ନାନାବିଧ ଫଳ ଭକ୍ଷଣ ଓ ବିତରଣ ମାଧ୍ୟମରେ ମୂଲ୍ୟବାନ୍ ଖାଦ୍ୟସାରର ବ୍ୟବସ୍ଥା କରିବା ସ୍ୱାସ୍ଥ୍ୟ ବିଜ୍ଞାନ ଦୃଷ୍ଟିରୁ ଅତ୍ୟନ୍ତ ଯୁକ୍ତିଯୁକ୍ତ । ଗଜାମୁଗ, ଆମ୍ବ, ତାଳସଜ, ପଣସ ପ୍ରଭୃତିରେ ଭରିଥିବା ବହୁଳ ଜୀବନୀଶକ୍ତି ନିଜ ସହ ପରିବାରବର୍ଗ ସମସ୍ତଙ୍କର ସ୍ୱାସ୍ଥ୍ୟବର୍ଦ୍ଧକ । ଉପରୋକ୍ତ ନାରୀ ଓଷା ବ୍ରତ

ଜରିଆରେ ଅଟଳ ନିଷ୍ଠା ଓ ଧର୍ମଭାବନା ସହିତ ନିଜର ସ୍ୱାମୀ, ପୁତ୍ରକନ୍ୟା, ସାଇପଡ଼ିଶାମାନଙ୍କୁ ମିଳେଇ ଦୀର୍ଘ ଜୀବନ ପ୍ରଚ୍ଛନ୍ନରେ ଦାନ କରି ପାରୁଛି—ଏହା ବାସ୍ତବିକ୍ ଏକ ଚମତ୍କାର ତଥ୍ୟ । ପୁଣି ଉପବାସର ଗୁରୁତ୍ୱ ସମ୍ବନ୍ଧରେ ପୂର୍ବରୁ ଆଲୋଚନା ହୋଇଅଛି । ବଟମୂଳରେ ଜଳ ସିଞ୍ଚନ ଅର୍ଥ ମଧ୍ୟ ସ୍ପଷ୍ଟ । ଜ୍ୟେଷ୍ଠ ମାସରେ ପଥଯାତ୍ରୀ ବଟ ଅଶ୍ୱତ୍ଥ ବୃକ୍ଷର ଶୀତଳ ଛାୟାରେ ଆଶ୍ରୟ ନିଅନ୍ତି । ଏଣୁ ଜଳଦାନ ଦ୍ୱାରା ବୃକ୍ଷମୂଳ ଶୀତଳ ରହିବା ସଙ୍ଗେ ସଙ୍ଗେ ବଟବୃକ୍ଷ ରୌଦ୍ର ତାପରୁ ରକ୍ଷା ପାଏ ।

ସାବିତ୍ରୀ ବ୍ରତ ଏହିପରି ପ୍ରତି ବର୍ଷ ଆସୁଥାଏ ଏବଂ ଆମ ନାରୀ ସମାଜରେ ଆଧ୍ୟାତ୍ମିକ ବାତାବରଣ, ପତିଭକ୍ତି, ଦେବ ବିଶ୍ୱାସ, ପତିପତ୍ନୀ ପ୍ରୀତି, ଧୈର୍ଯ୍ୟ, ନିଷ୍ଠା, ସଂଯମ ଓ ଚରିତ୍ର ଗଠନ ସହ ଉତ୍ତମ ସ୍ୱାସ୍ଥ୍ୟ ଗଠନରେ ସହାୟକ ହେଉଥାଏ ।



# ଗଙ୍ଗା-ଦଶହରା

**ଜ୍ୟେଷ୍ଠ** ମାସର ଗଙ୍ଗା ଦଶହରା ପର୍ବଟି ହିନ୍ଦୁମାନଙ୍କ ପକ୍ଷେ ଏକ ପବିତ୍ର ଦିବସ । ପୁରାଣ ବିଶ୍ବାସୀ ହିନ୍ଦୁମାନେ ସମସ୍ତେ ଏ ଦିବସଟିର ତାତ୍ପର୍ଯ୍ୟ ହୃଦୟଙ୍ଗମ କରିଥିବାରୁ ଏହା ସର୍ବଭାରତୀୟ ପ୍ରସିଦ୍ଧି ଲାଭ କରିଅଛି । ବିଶେଷତଃ ଉତ୍ତର ଭାରତରେ ଏହାର ବିଶେଷ ଉତ୍ସବ ଓ କାର୍ଯ୍ୟକ୍ରମ ସବୁ ଅନୁଷ୍ଠିତ ହୁଏ । ଯେଉଁ ବର୍ଷ ଦୁଇଟି ଜ୍ୟେଷ୍ଠ ମାସ ପଡ଼େ, ଏହି ପର୍ବଟି ପ୍ରଥମ ଜ୍ୟେଷ୍ଠରେ ହିଁ ପାଳିତ ହୁଏ । ଯେଉଁ ଦିନ ପୂର୍ବାହ୍ଣରେ ଦଶମୀ ପଡ଼େ ଓ ଦଶଯୋଗ ଯୁକ୍ତ ହୁଏ ସେ ଦିନଟି ଏ ପର୍ବ ପାଳନ ପକ୍ଷେ ପ୍ରଶସ୍ତ । ସେହି 'ଦଶଯୋଗ' ହେଲା—(୧) ଜ୍ୟୋଷ୍ଠ ମାସ (୨) ଶୁକ୍ଳପକ୍ଷ (୩) ଦଶମୀ ତିଥି (୪) ବୁଧବାର (୫) ହସ୍ତାନକ୍ଷତ୍ର (୬) ବ୍ୟତିପାତ ଯୋଗ (୭) ଗର କରଣ (୮) ଆନନ୍ଦଯୋଗ (ବୁଧବାର ଦିନ ହସ୍ତାନକ୍ଷତ୍ର ହେଲେ ଆନନ୍ଦଯୋଗ ଧରାଯାଏ) (୯) କନ୍ୟାରାଶିର ଚନ୍ଦ୍ରମା (୧୦) ବୃଷରାଶିର ସୂର୍ଯ୍ୟ । ଏହି ଦଶଯୋଗ ମଧ୍ୟରେ 'ଦଶମୀ' ଓ 'ବ୍ୟତିପାତ ଯୋଗ' ମୁଖ୍ୟ ଅଟେ (ଧର୍ମସିନ୍ଧୁ) ।

ପୁରାଣ ଅନୁସାରେ ଏ ଦିନ ଗଙ୍ଗା ମର୍ତ୍ତ୍ୟାଗମନ କରିଥିଲେ । ବ୍ରହ୍ମାଙ୍କ କମଣ୍ଡଳୁରୁ ବାମନ (ନାରାୟଣ)ଙ୍କ ଚରଣ ପ୍ରକ୍ଷାଳନ ଦ୍ୱାରା ଉତ୍ପନ୍ନ ହୋଇ ଶିବଙ୍କ ଜଟାରେ ଶରଣ ନେଲେ । ପରେ ସୂର୍ଯ୍ୟଙ୍କ କିରଣ ଦ୍ୱାରା ହିମାଳୟ କୋଡ଼ରେ ଅବସ୍ଥାପିତ ହେଲେ ଓ ପରେ ରାଜା ଭଗୀରଥଙ୍କ ତପସ୍ୟାଦ୍ୱାରା ଭାରତଭୂମିରେ ପ୍ରବେଶ କଲେ । ଏଣୁ ଏହି ପୁଣ୍ୟ ଦିବସରେ ଗଙ୍ଗାମାତାଙ୍କ ସହ ନାରାୟଣ, ଶିବ, ବ୍ରହ୍ମା, ସୂର୍ଯ୍ୟ, ଭଗୀରଥ ରାଜା ଓ ହିମାଳୟ ମଧ୍ୟ ପୂଜନୀୟ ।

ଗଙ୍ଗା ଦଶହରା ଦିନ ଯେଉଁ ବସ୍ତୁ ସବୁ ଉପଯୋଗ କରାଯାଏ, ଏହାର ସଂଖ୍ୟା ମଧ୍ୟ ୧୦ ହେବା ଦରକାର । ପୂଜାରେ ଦଶପ୍ରକାର ପୁଷ୍ପ, ଦଶଦୀପ, ଦଶଧୂପ, ଦଶବିଧ ନୈବେଦ୍ୟ, ଦଶତାମ୍ବୁଳ ଓ ଦଶ ଫଳ ବ୍ୟବହୃତ ହୁଏ । ଦଶ ଜଣ ବ୍ରାହ୍ମଣଙ୍କୁ ମଧ୍ୟ ଦକ୍ଷିଣା ଦିଆଯିବା

ବିଧେୟ । ଗୋଦାନ, ସ୍ୱର୍ଣ୍ଣଦାନ ମଧ୍ୟ କରାଯାଏ । ସଂକଳ୍ପପୂର୍ବକ ଗଙ୍ଗା ନଦୀରେ ବା ଯେ କୌଣସି ନଦୀରେ ଗଙ୍ଗାମାତାଙ୍କୁ ସ୍ମରଣ କରି ଦଶ ଆଞ୍ଜୁଳା ତିଳ ଜଳ ଅଞ୍ଜଳି ଦିଆଯାଏ । ସୁନା, ରୂପା କିମ୍ବା ମୃତ୍ତିକାରେ ଗଙ୍ଗାମାତାଙ୍କ ପ୍ରତିମାକୁ ପୂଜା କରାଯାଏ । ସେ ପୂଜନ ମନ୍ତ୍ର ହେଉଛି—

"ନମୋ ଭଗବତ୍ୟୈ ଦଶପାପ ହରାୟୈ ଗଙ୍ଗାୟୈ ନାରାୟଣ୍ୟୈ
ରେବତ୍ୟୈ, ଶିବାୟୈ, ଅମୃତାୟୈ ବିଶ୍ୱରୂପିଣ୍ୟୈ ନାନ୍ଦିନ୍ୟୈ
ତେ ନମୋ ନମଃ"

ପୂଜାରେ ପୂର୍ବୋକ୍ତ '୧୦' ସଂଖ୍ୟା ଆଧିକ୍ୟ ମୂଳରେ ରହସ୍ୟ ଅଛି । ମନୁଷ୍ୟ ତା ଜୀବନକାଳ ମଧ୍ୟରେ ଦଶବିଧ ପାପକରେ । ୩ଟି କାୟିକ, ୪ଟି ବାଚିକ ଓ ୩ଟି ମାନସିକ । ସ୍କନ୍ଦ ପୁରାଣରେ ଗଙ୍ଗାସ୍ତୋତ୍ରରେ ଏହାର ସ୍ପଷ୍ଟ ଉଲ୍ଲେଖ ଦେଖାଯାଏ ।

'ଅଦତ୍ତାନା ମୁପାଦାନଂ ହିଂସା ଚୈବା ବିଧାନତଃ
ପରଦାରୋପ ସେବା ଚ କାୟିକଂ ତ୍ରିବିଧଂ ସ୍ମୃତମ୍
ପାରୁଷ୍ୟମନୃତଂ ଚୈବପୈଶୁନ୍ୟଂ ଚାପି ସର୍ବଶଃ
ଅସଂବଦ୍ଧ ପ୍ରଳାପଶ୍ଚ ବାଙ୍ମୟଂ ସ୍ୟାଚ୍ଚତୁର୍ବିଧମ୍
ପରଦ୍ରବ୍ୟେ ଷ୍ୱଭିଧ୍ୟାନଂ ମନସ୍ୟାନିଷ୍ଟ ଚିନ୍ତନମ୍
ବିତଥାଭି ନିବେଶଶ୍ଚ ମାନସଂ ତ୍ରିବିଧ ସ୍ମୃତମ୍'

ଅର୍ଥାତ୍ ଦେଇଥିବା ବସ୍ତୁର ଅପହରଣ (ଚୋରି) ଅବିଧି ପୂର୍ବକ ହିଂସା ଏବଂ ପରସ୍ତ୍ରୀ ସେବନ-ଏ ତିନୋଟି କାୟିକ ପାପ, କଠୋର ବଚନ, ମିଥ୍ୟା, ଚୁଗୁଲି ଏବଂ ଅସଂବଦ୍ଧ ପ୍ରଳାପ ଏ ଚାରୋଟି ବାଚିକ ପାପ, ପରଦ୍ରବ୍ୟପ୍ରତି ଦୃଷ୍ଟି, ମନରେ ପର ଅନିଷ୍ଟଚିନ୍ତା ଓ ଅର୍ଥଲାଳସା—ଏ ତିନୋଟି ମାନସ ପାପ; ଏଣୁ ଏହି ଦଶଦୋଷ ନିବୃତ୍ତିଲାଗି ସର୍ବପାପହାରିଣୀ ଭଗବତୀ ଗଙ୍ଗା ଜଳରେ ସ୍ନାନ ହିଁ ଯଥେଷ୍ଟ । ଗଙ୍ଗା ସ୍ନାନ ବିଧି ସମ୍ପର୍କରେ ଲେଖାଅଛି ଯେ ସ୍ନାନ ସମୟରେ ନିମ୍ନ ମନ୍ତ୍ର ପାଠ କରିବ ।

'ଏତାନ ଦଶ ପାପାନ ପ୍ରଶମଂ ଯାନ୍ତୁ ଜାହ୍ନବି
ସ୍ନାତସ୍ୟ ମମତେ ଦେବି ଜଳେ ବିଷ୍ଣୁ ପାଦ ଦ୍ରବେ ।
ବିଷ୍ଣୁ ପାଦାର୍ଘ୍ୟ ସମ୍ଭୂତେ ଗଙ୍ଗେ ତ୍ରିପଥଗାମିନି
ଧର୍ମ ଦ୍ରବେତି ବିଖ୍ୟାତେ ପାପଂ ମେହର ଜାହ୍ନବୀ'

ଶ୍ରଦ୍ଧୟା ଭକ୍ତିସମ୍ପନ୍ନେ ଶ୍ରୀ ମାତର୍ଦ୍ଦେବି ଜାହ୍ନବୀ
ଅମୃତେନାଽମ୍ବୁନା ଦେବି ଭାଗୀରଥୀ ପୁନୀହିମାମ୍ ।'

(ବର୍ଷକୃତ୍ୟ—ପ୍ରଥମଭାଗରୁ ଉଦ୍ଧୃତ)

ଯେଉଁ ଗଙ୍ଗୋତ୍ରୀ ଭାରତୀୟ ଆଧ୍ୟାତ୍ମିକ ଜଗତର ପ୍ରାଣକେନ୍ଦ୍ର, ସେହି ଗଙ୍ଗାମାତାଙ୍କ ମହିମା କେଉଁ ହିନ୍ଦୁ ନ ଜାଣେ । ଗଙ୍ଗାମାହାତ୍ମ୍ୟକୁ କେନ୍ଦ୍ରକରି ବହୁ ଭାଷାରେ ବିଭିନ୍ନ ପୁସ୍ତକ ରଚିତ ହୋଇଛି । ଗଙ୍ଗା ପତିତପାବନୀ । ଭାରତୀୟ କାବ୍ୟ, ପୁରାଣ, ଦର୍ଶନ ତନ୍ତ୍ର ସର୍ବକ୍ଷେତ୍ରରେ ଗଙ୍ଗାଙ୍କ ସ୍ଥାନ ସୁରକ୍ଷିତ । ଏବେ ବି ଗଙ୍ଗାସ୍ନାନ ଲାଗି ସୁଦୂର ଗ୍ରାମ କୋଣରୁ ଶ୍ରଦ୍ଧାବାନ୍ ବୃଦ୍ଧ ଆଗ୍ରହ ପ୍ରକାଶ କରୁଛି । ଗଙ୍ଗାରେ ଅସ୍ଥି ବିସର୍ଜନ ମୁମୂର୍ଷୁ ପ୍ରାଣରେ ଏବେ ବି ସାନ୍ତ୍ୱନା ଆଣୁଛି । 'ନମାମି ଗଙ୍ଗା ପୁରୁଷୋତ୍ତମ ବିଷ୍ଣୁଃ' ମଧ୍ୟ ସେହି 'କାଶୀତଳ ବାହିନୀ ଗଙ୍ଗା'କୁ ଲକ୍ଷ୍ୟକରି । ଗଙ୍ଗାମହିମା ଶାସ୍ତ୍ରସିଦ୍ଧ । ଗଙ୍ଗାଙ୍କ ଉତ୍ପତ୍ତି ସହ ଏହାଙ୍କ ମାହାତ୍ମ୍ୟର ଏକ ସୁନ୍ଦର ବର୍ଣ୍ଣନା ଶ୍ରୀ ବିଷ୍ଣୁପୁରାଣରେ ଦିଆଯାଇଛି—

"ତତଃ ପ୍ରଭବତି ବ୍ରହ୍ମନ୍ ସର୍ବପାପହରା ସରିତ୍
ଗଙ୍ଗାଦେବାଙ୍ଗନା ଙ୍ଗାନାମନୁ ଲେପନ ପିଙ୍ଗଳ ।
ବାମ ପାଦାମ୍ବୁଜା ଙ୍ଗୁଷ୍ଠନଖ ସ୍ରୋତ ବିନର୍ଗତାମ୍
ବିଷ୍ଣୋର୍ବିଭର୍ତ୍ତି ଯାଂ ଭକ୍ତ୍ୟା ଶିରସା ହର୍ନିଶଂଧ୍ରୁବଃ
ତତଃ ସପ୍ତର୍ଷୟୋ ଯସ୍ୟାଃ ପ୍ରାଣାୟାମ ପରାୟଣାଃ
ତିଷ୍ଠନ୍ତି ବୀଚମାଳାଭିରୁହ୍ୟମାନ ଜଟାଜଳେ'
ମେରୁପୃଷ୍ଠେ ପତତ୍ୟୁର୍ବ୍ୟାଂ ନିଷ୍କ୍ରାନ୍ତା ଶଶିମଣ୍ଡଳାତ୍
ଜଗତଃ ପାବନାର୍ଥାୟ ପ୍ରୟାତି ଚ ଚତୁର୍ଦ୍ଦିଶମ୍ ।
ସୀତା, ଚ୍ଚଳକାନନ୍ଦା ଚ ଚକ୍ଷୁର୍ଭଦ୍ରା ଚ ସଂସ୍ଥିତା
ଏକୈବ ଯା ଚତୁର୍ଭେଦା ଦିଗ୍‌ଭେଦ ଗତିଲକ୍ଷଣା'

× × ×

'ସ୍ନାତସ୍ୟ ସଲିଳେ ଯସ୍ୟାଃ ସଦ୍ୟଃ ପାପଂ ପ୍ରଣଶ୍ୟତି
ଅପୂର୍ବ ପୁଣ୍ୟ ପ୍ରାପ୍ତିଶ୍ଚ ସଦ୍ୟୋ ମୈତ୍ରେୟ ଜାୟତେ
ଦତ୍ତାଃ ପିତୃଭ୍ୟୋ ଯତ୍ରା ପସ୍ତନୟୈଃ ଶ୍ରଦ୍ଧୟାନ୍ୱିତୈଃ
ସମାଶତଂ ପ୍ରଯଚ୍ଛନ୍ତି ତୃପ୍ତିଂ ମୈତ୍ରେୟ ଦୁର୍ଲଭାମ୍
ସ୍ନାନାଦ୍ୱିଧୂତ ପାପାଶ୍ଚ ଯଜ୍ଜଳେ ଯତୟସ୍ତଥା ।

କେଶ ବାସକ୍ତ ମନସଃ ପ୍ରାପ୍ତା ନର୍ବାଣ ମୁତ୍ତମମ୍
ଶ୍ରୁତାଭିଲଷିତା ଦୃଷ୍ଟା ସ୍ପୃଷ୍ଟା ପୀତା ବଗାହିତା
ଯା ପାବୟତି ଭୂତାନ କୀର୍ତ୍ତିତା ଚ ଦିନେ ଦିନେ
ଗଙ୍ଗା ଗଙ୍ଗେତି ଯୈର୍ନାମ ଯୋଜନାନାଂ ଶତେଷ୍ୱପି
ସ୍ଥିତୈରୁଚ୍ଚାରିତଂ ହନ୍ତି ପାପଂ ଜନ୍ମତ୍ରୟାର୍ଜିତମ୍"

( ବିଷ୍ଣୁ ପୁରାଣ—୨ୟ ଅଂଶ-ଅଷ୍ଟମାଧ୍ୟାୟ )

ଅର୍ଥାତ୍ ଏହି ବିଷ୍ଣୁ ପଦରୁ ହିଁ ଦେବାଙ୍ଗନାଙ୍କ ଅଙ୍ଗରାଗରୁ ପାଣ୍ଡୁରବର୍ଣ୍ଣ ହୋଇ ସର୍ବପାପ ହାରିଣୀ ଗଙ୍ଗାଜୀ ଉତ୍ପନ୍ନ ହୋଇଅଛନ୍ତି । ବିଷ୍ଣୁ ଭଗବାନଙ୍କର ବାମଚରଣ କମଳ ଅଙ୍ଗୁଷ୍ଠର ନଖ ନର୍ଗତ ସ୍ରୋତରୁ ଗଙ୍ଗା ଜନ୍ମିଛନ୍ତି ଓ ଏହାଙ୍କୁ ଧ୍ରୁବ ଦିନରାତି ନିଜର ମସ୍ତକ ଉପରେ ଧାରଣ କରନ୍ତି । ଏହାଙ୍କ ପବିତ୍ର ଜଳରେ ଦଣ୍ଡାୟମାନ ହୋଇ ପ୍ରାଣାୟାମ ପରାୟଣ ସପ୍ତର୍ଷିଗଣ ଏହାର ତରଙ୍ଗ ଭଙ୍ଗିରେ ଜଟାକଳାପକୁ ଥରେଇ ଦିଅନ୍ତି । × × × ଏ ଗଙ୍ଗ ନଦୀ ଚନ୍ଦ୍ର-ମଣ୍ଡଳରୁ ବାହାରି ମେରୁ ପର୍ବତ ଉପର ଦେଇ ସଂସାର ପବିତ୍ର କରିବା ନିମନ୍ତେ ଚାରି ଦେଶରେ ବିଭକ୍ତ ହୋଇଛନ୍ତି । ସେମାନଙ୍କର ନାମ ହେଲା—ସୀତା, ଅଳକନନ୍ଦା, ଚକ୍ଷୁ ଓ ଭଦ୍ରା । ଏହି ଚାରି ଭେଦରେ ନାମିତ । × × × ହେ ମୈତ୍ରେୟ ! ଯାହାର ଜଳରେ ସ୍ନାନମାତ୍ରେ ଶୀଘ୍ର ପାପ ନାଶ ହୁଏ ଓ ଅପୂର୍ବ ପୁଣ୍ୟ ମିଳେ, ଯାହାର ପ୍ରବାହରେ ପୁତ୍ରଦ୍ୱାରା ପିତୃପୁରୁଷଙ୍କୁ ଶ୍ରଦ୍ଧା ପୂର୍ବକ ତର୍ପଣ କରାଯାଇ ସେମାନଙ୍କୁ ଶତ ବର୍ଷ ପର୍ଯ୍ୟନ୍ତ ତୃପ୍ତ କରାଯାଏ, × × × ଯାହାର ଜଳରେ ସ୍ନାନ କଲେ ଲୋକ ନିଷ୍ପାପ ହୁଏ, ଋଷିମାନେ କେଶବଙ୍କୁ ଧ୍ୟାନକରି ଉତ୍ତମ ନିର୍ବାଣ ପଦଲାଭ କରନ୍ତି, ଯାହାର ଶ୍ରବଣ, ଇଚ୍ଛା, ଦର୍ଶନ, ସ୍ପର୍ଶ, ଜଳପାନ, ସ୍ନାନ ତଥା ଯଶୋଗାନ କରିବା ଦ୍ୱାରା ପ୍ରାଣୀ ନିତ୍ୟ ପବିତ୍ର ହୁଏ, ସେହି 'ଗଙ୍ଗା' 'ଗଙ୍ଗା' ନାମ ଶହେ ଯୋଜନ ଦୂରରୁ ଉଚ୍ଚାରଣ କଲେ ମଧ୍ୟ ଜୀବର ତିନିଜନ୍ମର ସଞ୍ଚିତ ପାତକ ଖଣ୍ଡିତ ହୁଏ । ଶ୍ରୀମଦ୍ ଭାଗବତରେ ଲେଖା ଅଛି—ଯସ୍ୟାଂ ସ୍ନାନାର୍ଥେ ଗଚ୍ଛତଃ ପୁଂସଃ ପଦେ ପଦେଽଶ୍ୱମେଧ ରାଜସୂୟା ଫଳଂ ନ ଦୁର୍ଲ୍ଲଭ ମିତି"—ଅର୍ଥାତ୍ ଗଙ୍ଗା-ସ୍ନାନ ଅଭିଳାଷୀ ଅଗନ୍ତୁକ ପୁରୁଷ ପଦେ ଅଶ୍ୱମେଧ ଯଜ୍ଞର ଫଳ

ଦୁର୍ଲ୍ଲଭ ନୁହେଁ । ମହାଭାରତ, ରାମାୟଣ ଓ ଅନ୍ୟାନ୍ୟ ବହୁ କାବ୍ୟ ପୁରାଣର ପୃଷ୍ଠାସବୁ ମଧ୍ୟ ଗଙ୍ଗାମହିମା ପ୍ରଖ୍ୟାପନରେ ଉଜ୍ଜ୍ୱଳ । ଏହାର ଜଳ ସ୍ପର୍ଶମାତ୍ରେ ଶତ ପାତକ ଦୂରୀଭୂତ ହୁଏ । ଏହାର ସ୍ୱାସ୍ଥ୍ୟ ସମ୍ବନ୍ଧ ଗୁଣର ଉଲ୍ଲେଖ 'ଚରକ'ଙ୍କ ଶାସ୍ତ୍ରରେ ମିଳେ । 'ଚରକ' ପ୍ରାୟ ୨୦୦୦ ବର୍ଷ ପୂର୍ବେ ଜୀବିତ ଥିବାର ଅନୁମାନ । ସେ ଲେଖିଛନ୍ତି—'ହିମବତ ପ୍ରଭବାଃ ପଥ୍ୟାଃ''—ହିମାଳୟରୁ ଉତ୍ପନ୍ନ ଜଳକୁ ଦେଖ । ଏଠାରେ ଗଙ୍ଗାଜଳ ହିଁ ଲକ୍ଷ୍ୟ । କାରଣ ଏ ପଦ ପୂର୍ବରୁ ଅଛି 'ପୁଣ୍ୟା ଦେବର୍ଷି ସେବତାଃ । ଅଷ୍ଟମ-ନବମ ଶତାବ୍ଦୀର ବାଗ୍‌ଭଟ୍ଟଙ୍କ କୃତ 'ଅଷ୍ଟାଙ୍ଗ ହୃଦୟ'ରେ ମଧ୍ୟ ଏକ ସ୍ପଷ୍ଟ ବର୍ଣ୍ଣନା ଦେଖାଯାଏ—'ହିମ ବନ୍ମଳୟୋଦ୍ଭୂତାଃ ପଥ୍ୟାସ୍ତା ଏବ ତ ସ୍ଥିରାଃ'' 'ଆନୁମାନିକ ୧୦୫୦ ମସିହାର ଚକ୍ରପାଣି ଦତ୍ତ ମଧ୍ଯ ଲେଖିଛନ୍ତି—'ହିମାଳୟଜାତ ଗଙ୍ଗାକୁ ଦେଖ—'ଯଥୋକ୍ତ ଲକ୍ଷଣ ହିମାଳୟ ଭବତ୍ୟା ଦେବ ଗାଙ୍ଗମ୍ ପଥ୍ୟମ୍ ।'

ଭଣ୍ଡାର କର 'ଓରିଏଣ୍ଟାଲ ଇନଷ୍ଟିଚିଉଟ୍, ପୁନା'ରେ ହସ୍ତ ଲିଖିତ ଗ୍ରନ୍ଥ 'ଭୋଜନ କୁତୂହଳ'ରେ ଲେଖାଅଛି – 'ଗଙ୍ଗାଜଳ ଶୀତଳ, ସ୍ୱାଦୁ, ସ୍ୱଚ୍ଛ, ଅତ୍ୟନ୍ତ ରୁଚିକର, ପଥ୍ୟ, ପାନଯୋଗ୍ୟ, ପାଚନ-ଶକ୍ତି ବୃଦ୍ଧିକାରକ, ସର୍ବପାପହର, ଶାନ୍ତିକାରକ, ମୋହନଷ୍ଟକାରୀ, କ୍ଷୁଧା ଓ ବୁଦ୍ଧିବର୍ଦ୍ଧକ ଅଟେ ।—

'ଶୀତଂ ସ୍ୱାଦୁ ସ୍ୱଚ୍ଛ ମତ୍ୟନ୍ତ ରୁଚ୍ୟଂ ପଥ୍ୟଂ ପାକ୍ୟଂ ପାଚନଂ ପାପହାରି ତୃଷ୍ଣା ମୋହ ଧ୍ୱଂସନଂ ଦୀପନଂଚ ପ୍ରଜ୍ଞା ଧତ୍ତେବାରି ଭାଗୀରଥୀୟମ୍ ।'

ଗଙ୍ଗାଜଳ ଗୁଣମୁଗ୍‌ଧ ବିଦେଶୀ ଏବଂ ଅହିନ୍ଦୁମାନେ ମଧ୍ଯ ଏହାର ଗୁଣକୀର୍ତ୍ତନ କରିଅଛନ୍ତି—ଇବନବତୁତା ଆଫ୍ରିକା ତଥା ଏସିଆର କେତେ ଦେଶ ପରିଦର୍ଶନ କରି ଭାରତ ଭ୍ରମଣରେ ଆସି ଲେଖିଛନ୍ତି—'ସୁଲତାନ ମହମ୍ମଦ ତୋଗଲକଙ୍କ ପାଇଁ ଗଙ୍ଗାଜଳ ବରାବର ଦୌଲତାବାଦ ନେଇ ଆସୁଥିଲେ । ଏଠାରେ ପହଞ୍ଚିବା ପାଇଁ ୪୦ ଦିନ ଲାଗୁଥିଲା ।'

ମୋଗଲ ସମ୍ରାଟ ଆକବରଙ୍କର ମଧ୍ଯ ଗଙ୍ଗାଜଳ ପ୍ରିୟ ଥିଲା । ଆବୁଲଫଜଲ 'ଆଇନ ଆକବରୀ'ରେ ଲେଖିଛନ୍ତି, ''ବାଦଶାହ ଗଙ୍ଗା

ଜଳକୁ ଅମୃତ ତୁଲ୍ୟ ଜ୍ଞାନ କରୁଥିଲେ, ବହୁତ ପିଉଥିଲେ, ଯାତ୍ରା ସମୟରେ ମଧ୍ୟ ଏ ଜଳ ପାନ କରୁଥିଲେ । ଗଙ୍ଗାତଟରେ ବିଶ୍ୱାସୀ ଲୋକ ନିଯୁକ୍ତ କରାଯାଇଥିଲେ 'ସେ ପ୍ରତିଦିନ ପାତ୍ରରେ ଜଳଭରି ମୋହରି ମାରି ପଠାଉଥିଲେ । ବାଦଶାହ ସଲ୍‌ତନତ୍ ରାଜଧାନୀ ଆଗ୍ରା ବା ଫତେପୁର ସିକ୍ରିରେ ରହୁଥିବା ବେଳେ ଗଙ୍ଗାଜଳ ନିଆଯାଉଥିଲା । କଠୋର ସମ୍ରାଟ ଆଉରଙ୍ଗଜେବଙ୍କ କୌଣସି କାମ ବିନା ଗଙ୍ଗା ଜଳରେ ହେଉ ନ ଥିଲା । ଫ୍ରାନ୍‌ସିସ୍ ଯାତ୍ରୀ ବର୍ନିୟର ଯେଉଁ ଭାରତରେ ଥିଲେ ଓ ସାହାଜାଦା ଦାରାସିକୋଙ୍କ ଚିକିତ୍ସକ ଥିଲେ । ସେ ତାଙ୍କ ଯାତ୍ରା ବିବରଣୀରେ ଲେଖିଛନ୍ତି—"ଦିଲ୍ଲୀ ଓ ଆଗ୍ରାରେ ଆଉରଙ୍ଗଜେବଙ୍କ ପାଇଁ ଖାଦ୍ୟ ପାନୀୟ ସହ ସର୍ବଦା ଗଙ୍ଗାଜଳର ବ୍ୟବସ୍ଥା ଥିଲା । ଯାତ୍ରା ସମୟରେ ମଧ୍ୟ ଏହା ଆବଶ୍ୟକ ପଡୁଥିଲା । ସମ୍ରାଟଙ୍କ ଛଡ଼ା ଦରବାରର ଅନ୍ୟମାନେ ମଧ୍ୟ ଗଙ୍ଗାଜଳ ବ୍ୟବହାର କରୁଥିଲେ ।' ସେ ପୁଣି ଲେଖିଛନ୍ତି, 'ଓଟ ପିଠିରେ ଲଦାହୋଇ ଗଙ୍ଗାଜଳ ବୁହା ହେଉଥିଲା । ସକାଳ ଜଳଖିଆ ସହିତ ଏକ ସୁରେଇ ଗଙ୍ଗା ପାଣି ସମ୍ରାଟଙ୍କ ନିକଟକୁ ପଠାଯାଉଥିଲା । ଏହାର ସ୍ୱାସ୍ଥ୍ୟ ସମ୍ବନ୍ଧୀ ଗୁଣ ଦେଖି ମୁସଲମାନ ନବାବ ଏହାକୁ ବରାବର ବ୍ୟବହାର କରୁଥିଲେ ।

କ୍ୟାପ୍‌ଟେନ୍ ଏଡ୍‌ୱାର୍ଡ୍ ମୁର (ଯେଉଁ ବ୍ରିଟିଶ ସେନାଧ୍ୟକ୍ଷ ଥାଇ ଟିପୁ ସୁଲତାନ ସହ ଯୁଦ୍ଧରେ ଅଂଶ ଗ୍ରହଣ କରିଥିଲେ) ଲେଖିଛନ୍ତି—

"ସବନୁର (ଶାହନବର)ର ନବାବ କେବଳ ଗଙ୍ଗାଜଳହିଁ ପାନ କରୁଥିଲେ । ଏହାକୁ ଆଣିବାଲାଗି ଓଟର ବ୍ୟବସ୍ଥା ହୋଇଥିଲା ।"

ଗୁଲାମ ହୋସେନଙ୍କ୍ ବଙ୍ଗଳା ଇତିହାସରେ ଲେଖିଛନ୍ତି– 'ମଧୁରତା ଓ ସ୍ୱାଦ ଦୃଷ୍ଟିରୁ ଗଙ୍ଗାଜଳ ପରି ଅନ୍ୟ ଜଳ ନାହିଁ । ବହୁ ଦିନ ଧରି ରଖିଲେ ମଧ୍ୟ ଏହା ଖରାପ ହୁଏ ନାହିଁ ।'

ଶ୍ରୀ ଭେଙ୍କଟେଶ୍ୱର ଓରିୟେଣ୍ଟାଲ ଇନଷ୍ଟିଚ୍ୟୁଟ୍ ତ୍ରୈମାସିକ ପତ୍ରିକା 'ଅନାଲସ' ପ୍ରଥମ ଖଣ୍ଡ ୩ୟ ଭାଗରେ 'ମୁସଲମାନ ଶାସକଙ୍କ ଦ୍ୱାରା ଗଙ୍ଗାଜଳର ବ୍ୟବହାର ଉପରେ ଆଧାରିତ ଏକ ଲେଖାରୁ ଏହି ଜଳ ପ୍ରତି ଅହିନ୍ଦୁମାନଙ୍କର ଶ୍ରଦ୍ଧା ଥିବାର ଜଣାଯାଏ ।

ଆଉ ଜଣଙ୍କ ଭ୍ରମଣ କାହାଣୀରୁ ଜଣାଯାଏ "ନବାବ ଗୃହାଙ୍ଗରେ ଦୂରରୁ ଗଙ୍ଗାଜଳ ଆଣିବାକୁ ଲୋକେ ଆନନ୍ଦରେ ବହୁ ଖର୍ଚ୍ଚ କରୁଥିଲେ । ନବାବ ହିସ୍ସାରେ କେବେ କେବେ ଦୁଇ ତିନି ହଜାର ଟଙ୍କା ଖର୍ଚ୍ଚ ହେଉଥିଲା ।"

ପେଶବାଙ୍କ ଲାଗି ଗଙ୍ଗାଜଳ ବାହୁଙ୍ଗୀରେ ବୁହାହୋଇ ଯାଉଥିଲା । ଏକ ମରାଠୀ ପୁସ୍ତକ 'ପେଶବାପ୍ପିଏ୍ୟା ସାବଲୀତ'ରୁ ଜଣାଯାଏ ଗଙ୍ଗାଜଳ କାଶୀରୁ ପୁନା ଯିବାକୁ ଏକ ବାହୁଙ୍ଗୀ ପ୍ରତି ଦଶ ଟଙ୍କା ଓ ପୁନା'ରୁ ରାମେଶ୍ୱର ପର୍ଯ୍ୟନ୍ତ ଚାଳିଶ ଟଙ୍କା ଖର୍ଚ୍ଚ ପଡ଼ିଲେ ମଧ୍ୟ ଏ ଖର୍ଚ୍ଚ ବହୁତ ନୁହେଁ ବୋଲି ଧାରଣା ଥିଲା ।

ମୁମୂର୍ଷୁ ପ୍ରାଣରେ ଗଙ୍ଗାଜଳ ହିଁ ସୁଦୂର ଦକ୍ଷିଣରେ ଶାନ୍ତିର ପ୍ରଲେପ ବୋଲି ଥିଲା । ମୃତ ପ୍ରାୟ କୃଷ୍ଣନଗର ରାଜା କୃଷ୍ଣ ଦେବ ରାୟଙ୍କୁ ଗଙ୍ଗାଜଳ ଢଆଯିବାରୁ ସେ ଆରୋଗ୍ୟ ଲାଭ କଲେ ।

ଭୁଟାନ ଯୁଦ୍ଧ ଶେଷ ପରେ ତିବ୍ବତ ଲାମା ଓ୍ୟାରେନ୍ ହେଷ୍ଟିଙ୍ଗସଙ୍କ ପାଖକୁ ଏକ ଦୂତ ପଠାଇ ଗଙ୍ଗା ତଟରେ ଭୂମି ଖଣ୍ଡିଏ ନେବାକୁ ମନ ବଳାଇଥିଲେ । ପରେ ସେ ଏଠାରେ ମନ୍ଦିର ନିର୍ମାଣ କଲେ । ଏଣୁ ଗଙ୍ଗା କେବଳ ହିନ୍ଦୁଙ୍କର ନୁହେଁ, ବୌଦ୍ଧଙ୍କ ପକ୍ଷେ ମଧ୍ୟ ପବିତ୍ର ।

(ସିଦ୍ଧାନ୍ତ ପତ୍ରିକାରୁ)

କବି କାଳିଦାସଙ୍କ ବନ୍ଦନା କାବ୍ୟରେ ଗଙ୍ଗା ମାହାତ୍ମ୍ୟ ଉଦ୍‌ଘୋଷିତ ହେଲା ପରେ ଉତ୍କଳର କବି ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଲେଖନୀରେ 'ଜାହ୍ନବୀ'ର ବହୁରୂପୀ ଚିତ୍ର ବର୍ଣ୍ଣାଢ୍ୟ ହୋଇ ଉଠିଛି । ଗବେଷକ ଓ ପାଲାଗାୟକମାନେ ଏହାର ଗୋଟିଏ ଗୋଟିଏ ପଦର ବନ୍ଦନାର୍ଥ ପ୍ରକାଶ କରି ସ୍ୱସ୍ୱ ଗମ୍ଭୀର ଜ୍ଞାନର ପରିଚୟ ଦେଉଅଛନ୍ତି । ଉତ୍କଳର ଗାଁ ଗହଳର ଚଷା ଠାରୁ ଆରମ୍ଭ କରି ଅନ୍ତଃପୁର ଯୋଷା ପର୍ଯ୍ୟନ୍ତ 'ହିମାଚଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ' ସମସ୍ତଙ୍କ ମୁଖରେ ଧ୍ୱନିତ । ପୁରୋହିତ ଶୁଭକାର୍ଯ୍ୟରେ ଶୁଭ ଦେବା ମାନସେ 'ଗଙ୍ଗେ ଚ ଯମୁନେ ଚୈବ' କହି ଗଙ୍ଗାମାତାଙ୍କୁ ସ୍ମରଣ କରୁଛନ୍ତି ।

ଚଳଚ୍ଚିତ୍ର ଜଗତରେ 'ଯିସ୍ ଦେଶମେ ଗଙ୍ଗା ବହତି ହୈ' ଚିତ୍ର ଚଳଚ୍ଚିତ୍ରାଭିନେତା ତଥା ପ୍ରଯୋଜକ ରାଜକପୁରଙ୍କୁ ଅସାମାନ୍ୟ

ଗୌରବର ଅଧିକାରୀ କରିଛି । 'ହର ହର ଗଙ୍ଗେ' କୁ କେନ୍ଦ୍ର କରି କେତେକ ଶବ୍ଦ ପ୍ରସ୍ତୁତ ହେଲାଣି ଓ ଏବେ ବି ଦ୍ରୁତ ପ୍ରସ୍ତୁତି ପଥେ କେତେକ ରହିଛି ।

**ଉପସଂହାର**—ଜ୍ୟେଷ୍ଠ ମାସ ପ୍ରଚଣ୍ଡ ଉଷ୍ଣତାଯୁକ୍ତ । ଏଣୁ ଶୀତଳ ଜଳରେ ସାଧାରଣ ସ୍ନାନ ସ୍ୱାସ୍ଥ୍ୟ ପକ୍ଷେ ହିତକର । ପୁଣି ଗଙ୍ଗା ସ୍ନାନ ଆହୁରି ସ୍ୱାସ୍ଥ୍ୟବର୍ଦ୍ଧକ, କାରଣ ଗଙ୍ଗାଜଳ ଏହି ଗ୍ରୀଷ୍ମ ଋତୁରେ ହିଁ ସ୍ୱାଭାବିକ ଅବସ୍ଥାରେ ଥାଏ । ଆଷାଢ଼ ଆରମ୍ଭରେ ଶୁଦ୍ଧ ଜଳ ପ୍ରାପ୍ତି ଅସମ୍ଭବ, କାରଣ ବର୍ଷା ଜଳ ପ୍ରବେଶ କରିଥାଏ । ଜ୍ୟେଷ୍ଠ ମାସରେ ଅଭିବର୍ଦ୍ଧମାନ ଚନ୍ଦ୍ରମାସ ସହ ଯୁକ୍ତ ଶୁକ୍ଳପକ୍ଷ ହିଁ ଏହାର ଉପଯୁକ୍ତ ସମୟ, କାରଣ ଚନ୍ଦ୍ରଙ୍କ ଜଳ ସହିତ ଓ ସୂର୍ଯ୍ୟଙ୍କ ଅଗ୍ନି ସହ ସିଧା ସମ୍ବନ୍ଧ ଅଛି । ତେବେ ପ୍ରଶ୍ନ ଉଠିପାରେ ଚନ୍ଦ୍ର ସହ ଯଦି ଜଳର ସମ୍ପର୍କ ଏତେ ନିବିଡ଼ ତେବେ ପୂର୍ଣ୍ଣିମା ତ ଏଥିପାଇଁ ଆହୁରି ପ୍ରଶସ୍ତ ହେବ । ଦଶମୀ କାହିଁକି ? କିନ୍ତୁ ଜ୍ୟୋତିଷ ଶାସ୍ତ୍ରାନୁଯାୟୀ ଯାତ୍ରା ଓ ମଙ୍ଗଳ କାର୍ଯ୍ୟପାଇଁ ଦ୍ୱିତୀୟା ତିଥି ସର୍ବାପେକ୍ଷା ପ୍ରଶସ୍ତ । କେତେକ ତୃତୀୟା, ପଞ୍ଚମୀ ଓ ସପ୍ତମୀ ତିଥିକୁ ମଧ୍ୟ ଦ୍ୱିତୀୟା ପରି ଉଚ୍ଚସ୍ଥାନ ଦେଇଥାନ୍ତି । ମାତ୍ର ଏହି ୨ୟା, ୩ୟା, ୫ମୀ, ୭ମୀ ତିଥିରେ ଯେଉଁ ଯେଉଁ ଶୁଭକାମ କରାଯାଏ, ଏସବୁ ଦଶମୀ ତିଥିରେ କଲେ ସିଦ୍ଧି ହୁଏ । ଲେଖାଅଛି—

'ଦ୍ୱିତୀୟାୟାଂ ତୃତୀୟାୟାଂ ପଞ୍ଚମ୍ୟାଂ ସପ୍ତମୀତିଥୌ
ଉକ୍ତାନ ଯାନ ସିଦ୍ଧ୍ୟନ୍ତି ଦଶମ୍ୟାଂ ତାନ ସର୍ବଦା'

ଏହି ପ୍ରଶଂସା ପର ଏପରିକି 'ପୂର୍ଣ୍ଣିମା' ତିଥିକୁ ମଧ୍ୟ ଦିଆଯାଇ ନାହିଁ । ଏଣୁ ଏହିପରି ଏକ ସର୍ବୋତ୍କୃଷ୍ଟ ଶାସ୍ତ୍ରସମ୍ମତ ପୁଣ୍ୟତମ ତିଥିରେ ସର୍ବପ୍ରଥମ ଭଗବତୀ ଗଙ୍ଗାମାତାଙ୍କ ମର୍ତ୍ତ୍ୟାଗମନ ନିଶ୍ଚୟ ଯୁକ୍ତିସମ୍ମତ ପରି ବୋଧହୁଏ ।

●

ଆଷାଢ଼

# "ରଥେ ତୁ ବାମନଂ ଦୃଷ୍ଟ୍ୱା"

ପୁରୁଷୋତ୍ତମ କ୍ଷେତ୍ରରେ ଆଜି ପୁରୁଷୋତ୍ତମଙ୍କର ପବିତ୍ର ମହୋତ୍ସବର ବିପୁଳ ଆୟୋଜନ । ଚନ୍ଦନଚର୍ଚ୍ଚିତ ନୀଳକଳେବର ଚକାଡ଼ୋଳାଙ୍କର ଏହି ସର୍ବଜନପ୍ରିୟ ରଥଯାତ୍ରା । ଉତ୍ସବ ଭାରତର ସମସ୍ତ ମଠବାଡ଼ି ଭକ୍ତମଣ୍ଡଳୀଙ୍କ ମଧ୍ୟରେ ଅଫୁରନ୍ତ ଆନନ୍ଦ, ଅପ୍ରକଟ ବିଶ୍ୱାସ ଓ ଅନିର୍ବଚନୀୟ ଭାବନାର ଲହରୀ ଖେଳାଇ ଦେଇଛି । ଭେଦାଭେଦ ରହିତ ଭକ୍ତବତ୍ସଳ ଆଜି ନିର୍ବିକାର ଭାବରେ ଭକ୍ତଙ୍କ ଆଲିଙ୍ଗନ ପାଶରେ ଆବଦ୍ଧ ହେବେ । ଅହରହ ବିଷୟାସକ୍ତ ଜୀବ ଆଜି ପାଇବ କଳାପ୍ରିୟ ପରମପୁରୁଷଙ୍କର ଅଙ୍ଗସଙ୍ଗ । 'ମହାବାହୁ, ଭୁଜତଳେ ମୋତେ ରଖ' ବୋଲି କିଏ କହିବ । 'ଚକାଡ଼ୋଳା କଥା ତକା ନ ଶୁଣ' ବୋଲି କେହି କେହି ଅଭିମାନ କରିବେ; ମାତ୍ର ଦାରୁବ୍ରହ୍ମ ସବୁ ଶୁଣି ମଧ୍ୟ, ସବୁ ଦେଖି ସୁଦ୍ଧା ମୂକଙ୍କ ପରି ତୁନି ହୋଇ ରହିବେ । ରଥରେ ଆଜି ଦେଖା ଅଦେଖାର ପାର୍ଥକ୍ୟ ନାହିଁ । ରଥର ପ୍ରତ୍ୟେକ ଅଂଶ ହିଁ ଭକ୍ତ ପକ୍ଷରେ କୋଟି ପାରିଜାତ । ସାଧ୍ୟ ସାଧକର ମଧ୍ୟରେ ଆଜି ଭେଦ ନାହିଁ । ଏହି ଭୂୟୁଲ୍ଲୀନ ଭାବ ବା ମହାଭାବ ଜଗନ୍ନାଥଙ୍କର ବୈଶିଷ୍ଟ୍ୟ । ଏଣୁ ଏହା ସୁଦୂରପ୍ରସାରୀ । ରଥ ଛୁଇଁବା ଯାହା, ଜଗତର ନାଥ ଜଗନ୍ନାଥଙ୍କୁ ସ୍ପର୍ଶ କରିବା ତାହା ।

"ଏ ରଥଯାତ୍ରା ଉତ୍ସବ ଆଜିକାଲିର ନୁହେଁ । ନାରଦ ପୁରାଣ, ସୂତସଂହିତା, ସ୍କନ୍ଦପୁରାଣ, ପଦ୍ମପୁରାଣ, ସୌଦଶିମା ବାମଦେବ ସଂହିତାରୁ ଜଣାଯାଏ 'ଜଗନ୍ନାଥଙ୍କ ପ୍ରଥମ ଇତିହାସ ସଙ୍ଗେ ବୈଦିକ କର୍ମକାଣ୍ଡର ଅଙ୍ଗାଙ୍ଗୀ ସମ୍ବନ୍ଧ ରହିଛି । ଯେତେବେଳେ ଜଗନ୍ନାଥ ଧର୍ମର ପ୍ରଥମ ପ୍ରବର୍ତ୍ତକ ମହାରାଜ ଇନ୍ଦ୍ରଦ୍ୟୁମ୍ନ ଶ୍ରୀକ୍ଷେତ୍ରକୁ ଆସିଲେ, ସେତେବେଳେ ସେ ଶବର ପୂଜିତ ମାଧବ ବିଗ୍ରହଙ୍କ ଦେଖା ପାଇପାରିଲେ ନାହିଁ । ଏହି ନୈରାଶ୍ୟ ମଧ୍ୟରେ ଦେବର୍ଷି ନାରଦଙ୍କ ସ୍ୱପ୍ନାଦେଶ ଅନୁସାରେ

ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମ କ୍ଷେତ୍ରରେ ଯଜ୍ଞକର୍ମ ଅନୁଷ୍ଠିତ କଲେ । ଉକ୍ତ ଯଜ୍ଞକର୍ମ ହିଁ ପୁରୁଷୋତ୍ତମ କ୍ଷେତ୍ରର ସର୍ବପ୍ରଥମ ଆଧ୍ୟାତ୍ମିକ କର୍ମ ଓ ଜଗନ୍ନାଥଙ୍କର ଏହି ଉନ୍ମୋଚନ କର୍ମକୁ ନେଇ ରଥଯାତ୍ରା ବା ଘୋଷ ଯାତ୍ରା ହୋଇଥିବା ହିଁ ସାର କଥା ।" ଶ୍ରୀମନ୍ଦିର ସମାଚାର)

ଏହି ଭୁବନବିଖ୍ୟାତ ରଥୋତ୍ସବ ବା ଶ୍ରୀଗୁଣ୍ଡିଚା ଆଷାଢ଼ ମାସ ଶୁକ୍ଳ ଦ୍ୱିତୀୟାରେ ଅନୁଷ୍ଠିତ ହୋଇ ଆସୁଅଛି । ଜଗନ୍ନାଥଙ୍କର ସୁପରିଚିତ ଦ୍ୱାଦଶ ଯାତ୍ରା ମଧ୍ୟରେ ଏ ଶ୍ରେଷ୍ଠସ୍ଥାନ ଅଧିକାର କରିଛି । ଯାହା ସ୍କନ୍ଦପୁରାଣରେ ଲେଖାଅଛି—

'ଆଷାଢ଼ସ୍ୟ ସିତେ ପକ୍ଷେ ଦ୍ୱିତୀୟାୟାଂ ଶୁଭେହନି
ଶ୍ରୀଜଗନ୍ନାଥ ଦେବସ୍ୟ ଗୁଣ୍ଡିଚା ଭବତି ଧ୍ରୁବ
ରଥସ୍ଥଂ ଚ ଜଗନ୍ନାଥଂ ପ୍ରୟାତଂ ଗୁଣ୍ଡିଚା ଗୃହଂ
ଯେ ପଶ୍ୟନ୍ତି ନରଶ୍ରେଷ୍ଠା—ସ୍ତେଧନ୍ୟା ଭୁବନତ୍ରୟେ ।"

ପୁଣି ବ୍ରହ୍ମପୁରାଣରେ ମଧ୍ୟ ଉଲ୍ଲେଖ ଅଛି

"ଗୁଣ୍ଡିଚା ମଣ୍ଡପେ ଯାନ୍ତଂ ଯେ ପଶ୍ୟନ୍ତି ରଥେସ୍ଥିତଂ
ବଳଂ କୃଷ୍ଣଂ ସୁଭଦ୍ରାଂ ଚ ତେ ଯାନ୍ତି ଭୁବନଂ ହରେଃ ।"

ଅର୍ଥାତ୍ ଏହି ଗୁଣ୍ଡିଚା ମଣ୍ଡପକୁ ରଥରେ ଆସୁଥିବା କୃଷ୍ଣ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଯେଉଁମାନେ ଦର୍ଶନ କରନ୍ତି ସେମାନେ ବିଷ୍ଣୁ ଲୋକପ୍ରାପ୍ତ ହୁଅନ୍ତି । ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ରଥରେ ଅସୁଥିଲେ ସୁଦ୍ଧା ଜଗନ୍ନାଥଙ୍କ ନାମସ୍ମରଣ, କୀର୍ତ୍ତନ ଭଜନ ହିଁ ମୁଖ୍ୟ । ଅବଶ୍ୟ ଆଧ୍ୟାତ୍ମିକବାଦୀଙ୍କ ମତରେ ଜଗନ୍ନାଥାଦି ତିନ ଜଣମାନେ ଏକତ୍ରରେ (ସୁଦର୍ଶନଙ୍କ ବ୍ୟତୀତ) ପ୍ରଣବ ରୂପ ଅଟନ୍ତି । ଜଗନ୍ନାଥଙ୍କ ମୂର୍ତ୍ତି ସମ୍ବନ୍ଧରେ ବ୍ରହ୍ମ ପୁରାଣରେ ଲେଖାଅଛି—

" 'ଅ' କାର ଆଦ୍ୟଦେଶେ ଚ 'ଉ'କାରେ ମଧ୍ୟ ଦେଶୟୋଃ
'ମ' କାରଃପ୍ରାନ୍ତ ଦେଶେ ତୁ 'ଓଁ'କାରସ୍ୟ ନମୋନମଃ"

ବଳଭଦ୍ରାଦି ତ୍ରିମୂର୍ତ୍ତିଙ୍କଠାରେ ପ୍ରଣବ ବା ଓଁକାର (ଅ+ଉ+ମ) ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ଆରୋପ କରାଯାଏ । ଋଗ୍ବେଦର 'ଦ୍ୱାଦଶ ଅଧ୍ୟାୟ'ରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା

ସତ୍ତ୍ୱ, ରଜ ଓ ତମୋମୟୀ ଗୁଣତ୍ରୟ ବିଶିଷ୍ଟ ପ୍ରକୃତିର ରୂପାନ୍ତର ବୋଲି କଳ୍ପିତ । ଲେଖାଅଛି, "କୌଣସି କୌଣସି ମତରେ ପରବର୍ତ୍ତୀ ଟୀକା ରୂପରେ ପ୍ରଣବର ଚତୁର୍ମାତ୍ରା ସ୍ଥାନରେ ଶ୍ରୀଜଗନ୍ନାଥାଦି ସପ୍ତାବରଣ ଦେବତାଙ୍କୁ ମଧ୍ୟ ପ୍ରଣବ ରୂପରେ ହିଁ ସମ୍ମାନ ଦିଆଯାଇଛି । ସେମାନଙ୍କ ମତରେ ବଳଦେବ 'ଅ'କାର, ସୁଭଦ୍ରା 'ଉ'କାର, ଜଗନ୍ନାଥ 'ମ'କାର । ସୁଦର୍ଶନ ପ୍ରଣବାତ୍ମକ ତେଜ ।"

ତୈତ୍ତିରୀୟ ଉପନିଷଦରେ ଉଲ୍ଲେଖ ଅଛି, "ଯତୋ ବା ଇମାନି ଭୂତାନି ଜାୟନ୍ତେ, ଯେନ ଯାତାନି ଜୀବନ୍ତି ଯତ୍ ପ୍ରୟନ୍ତ୍ୟଭିସଂ ବିଶନ୍ତି ତତ୍ ବିଜ୍ଞା ସସ୍ୱତ ବ୍ରହ୍ମେତି"—ଅର୍ଥାତ୍ ଯାହାଙ୍କଠାରେ ଜଡ଼ ଓ ଚେତନ ଜଗତର ଉତ୍ପତ୍ତି, ଯାହାଙ୍କ କୃପାରେ ଏମାନେ ଜୀବିତ ଓ ଶେଷରେ ଯେଉଁଠାରେ ଏମାନେ ଲୀନ ହୁଅନ୍ତି ସେହି ଦାରୁମୟ ଶ୍ରୀଜଗନ୍ନାଥ ରୂପରେ ଆବିର୍ଭୂତ ହୋଇଥିବାରୁ ତାଙ୍କ ସମ୍ବନ୍ଧରେ ଆମେ କିଛି ଜାଣିବା ଉଚିତ ।"

ସ୍ମାର୍ତ୍ତ ବ୍ରାହ୍ମଣମାନଙ୍କ 'ନୀଳାଦ୍ରୌଶଙ୍ଖମଧ୍ୟେ ଶତଦଳ କମଳେ ରତ୍ନସିଂହାସନସ୍ଥଂ' ବା ଜୈନମାନଙ୍କର 'ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜନ ଦର୍ଶିତଂ' ମହାବାହୁ ଜଗନ୍ନାଥ ଆଜି ନନ୍ଦିଘୋଷ ରଥରେ । ଏ କାଳିଆ କଳା ବଦନ ପୁଣି 'ବାମନ' ନାମରେ ନାମିତ । ଶ୍ରୀଗୁଣ୍ଡିଚା ବା ରଥ-ଯାତ୍ରାରେ ନନ୍ଦିଘୋଷ ରଥାରୋହୀ ଦେବବିଗ୍ରହ 'ବାମନ' ନାମରେ ସୁପରିଚିତ । ଚାପ ବା ଚନ୍ଦନଯାତ୍ରାରେ ସେ 'ମଧୁସୂଦନ', ଦୋଳରେ ସେ 'ଦୋଳଗୋବିନ୍ଦ' ଓ ଆଜି ରଥଯାତ୍ରାରେ ସେ 'ବାମନ' । ନୈଷଧକାର ଶ୍ରୀହର୍ଷ ତାଙ୍କ କାବ୍ୟରେ ରଥାରୋହୀ ଜଗନ୍ନାଥଙ୍କୁ 'ବାମନ' ବୋଲି କହିଛନ୍ତି ।

'ଦୋଳେ ତୁ ଦୋଳଗୋବିନ୍ଦଂ ଚାପେ ତୁ ମଧୁସୂଦନଂ
ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।'

ଅର୍ଥାତ୍ 'ଦୋଳରେ' ସେ ଦୋଳଗୋବିନ୍ଦ, 'ଚାପରେ' ମଧୁସୂଦନ ଓ 'ରଥରେ' ବାମନଙ୍କୁ ଦେଖିଲେ ପୁନର୍ଜନ୍ମ ହୁଏନାହିଁ ଅର୍ଥାତ୍ ପ୍ରାଣୀ ମୋକ୍ଷଲାଭ କରେ । ଏଠାରେ 'ବାମନ'ର ଦୁଇଟି ମୁଖ୍ୟ

ଅର୍ଥ ଆସିପାରେ । ପ୍ରଥମତଃ ବିଷ୍ଣୁଙ୍କର ନାମାନ୍ତର 'ବାମନ' । ମାତ୍ର ଅମରକୋଷରେ ବିଷ୍ଣୁଙ୍କର ଯେଉଁ ୪୯ଟି ନାମର ଉଲ୍ଲେଖ ଅଛି ସେଥିରେ 'ବାମନ' ଶବ୍ଦ ନାହିଁ । ମାତ୍ର ଶେଷ ପଦଟିରେ ଅଛି—

'ବନମାଳୀ ବଳିଧ୍ୱଂସୀ କଂସା ରାତି ରଧୋକ୍ଷଜଃ
ବିଶ୍ୱମ୍ଭରଃ କୈଟଭଜିତ୍ ବିଧୁଃ ଶ୍ରୀବତ୍ସଲାଞ୍ଛନଃ ।'

'ବଳିଧ୍ୱଂସୀ' ଶବ୍ଦ ପ୍ରକାରାନ୍ତରେ 'ବାମନ'କୁ ବୁଝାଏ । ମାତ୍ର ଶ୍ରୀକୃଷ୍ଣ ସହସ୍ର ନାମରେ 'ବାମନ' ଶବ୍ଦ ଦେଖାଯାଏ, ଯଥା—

"ଅଭିମନ୍ୟୁ କୃପାକାଙ୍କ୍ଷ ପ୍ରଦ୍ୟୁମ୍ନୋ ମଧୁସୂଦନଃ
ବାମନୋ ବଳିଦର୍ପଘ୍ନଃ ପୂର୍ଣ୍ଣବ୍ରହ୍ମ ସନାତନଃ ।"

'ବାମନ'ର ଦ୍ୱିତୀୟାର୍ଥ ଦକ୍ଷିଣ ଦିଗଗଜ । ସାଧାରଣତଃ ପୁରାଣରୁ ଆମେ ଅଷ୍ଟଦିଗ୍ ଗଜଙ୍କ ନାମ ପାଉ । ସେମାନେ ହେଲେ—

'ଐରାବତଃ ପୁଣ୍ଡରୀକୋ ବାମନଃ କୁମୁଦୋଽଞ୍ଜନଃ
ପୁଷ୍ପଦନ୍ତଃ ସାର୍ବଭୌମଃ ସୁ ପ୍ରତୀକଶ୍ଚ ଦିଗ୍‌ଗଜାଃ ।
(ଅମରକୋଷଃ)

ଏମାନଙ୍କ ମଧ୍ୟରୁ ଐରାବତ ପୂର୍ବ ଦିଗ୍‌ଗଜ ଓ ବାମନ ଦକ୍ଷିଣ କୁଞ୍ଜର । ଐରାବତ ଧବଳ ବର୍ଣ୍ଣ ଓ ବାମନ କୃଷ୍ଣବର୍ଣ୍ଣ । କବିସମ୍ରାଟ ଉପେନ୍ଦ୍ରଭଞ୍ଜ ମଧ୍ୟ ତାଙ୍କ 'କୋଟୀ ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଜଗନ୍ନାଥଙ୍କୁ 'ଦକ୍ଷିଣକୁଞ୍ଜର' ଓ ବଳରାମଙ୍କୁ ଐରାବତ ହସ୍ତୀଙ୍କ ଶୋଭା ସହ ତୁଳନା କରି ପୂର୍ବ ପୁରାଣ ପ୍ରସିଦ୍ଧି ବା ପରମ୍ପରାକୁ ବଜାୟ ରଖିଛନ୍ତି । କବି ଜଗନ୍ନାଥଙ୍କ ସ୍ନାନଯାତ୍ରା ଓ ଗୁଣ୍ଡିଚାକୁ ଲକ୍ଷ୍ୟକରି ଲେଖିଛନ୍ତି—

'କଂସାଳ, ତାଳ, କର୍ଣ୍ଣାଳ, ପଟହ, ଝର୍ଝର
ମୋ ପରେ ବଜେ କରିବେ ଭାବ ତୋଷ ଧରା ହେ
ନୋହିବେ ସର୍ବଙ୍କ କର୍ମା ବ୍ରହ୍ମ— ପରିବାର
ଜାଣିଲେ କିଷ୍ଟପ୍ରୁ ପ୍ରଭୁ ଦକ୍ଷିଣ କୁଞ୍ଜର ହେ
ପୂର୍ବଜନ୍ମେ ପୂର୍ବଗଜ ଭାବ ଉପୁଜାଇ
ପହଣ୍ଡି ବିଜୟ କଲେ ଝୁଲାଇ ଝୁଲାଇ ଯେ ।'

ନନ୍ଦିଘୋଷରେ ବିଜେ କରିଥିବା 'ବାମନ'ଙ୍କ ଠାରେ ଯବନ କବି ସାଲବେଗ ନିଜର ଭକ୍ତି ନୈବେଦ୍ୟ ଢାଳି ଗାଇଅଛନ୍ତି—

'ଦାରୁମୟ ରଥ ବାଳିଆ ପଥରେ ବ୍ରହ୍ମନାମ କରି ବନ୍ଦିତ
ନିର୍ବିକଳ୍ପ ମୂର୍ତ୍ତି ବିକାର ରହିତ ସଙ୍କଳେ କରି କୋଳାଗ୍ରତ
ସେହି ନନ୍ଦିଘୋଷ ଆରୂଢ଼ ବାମନ ଚରଣେ ଥାଉ ମୋର ମନ
ରଥପଥେ ପଡ଼ି କଇବଲ୍ୟ ଭୁଞ୍ଜି ଯାଉ ଏ ଯବନ ଜୀବନ ।'

ଜଗନ୍ନାଥଙ୍କର ଏହି 'ବାମନ' ଶବ୍ଦ ପୃଷ୍ଠରେ ଆଉ ଗୋଟିଏ କିମ୍ବଦନ୍ତୀ ଅଛି । ଗୁଣ୍ଡିଚା ଘରଠାରେ ଗୋଟିଏ 'ବାବନାଭୂତ' ମୂର୍ତ୍ତି ଅଛି । ରଥରେ ଜଗନ୍ନାଥଙ୍କ ନାମ ବାମନ ହୋଇଥିବାରୁ (ରଥସ୍ଥଂ ବାମନଂ ଦୃଷ୍ଟ୍ୱା) ଏବଂ ଯେତେବେଳେ ସେହି 'ବାମନ' ଶ୍ରୀଗୁଣ୍ଡିଚା ମନ୍ଦିରର ଲୀଳାଖେଳା ଶେଷକରି ଫେରି ଆସନ୍ତି ସେଠାରେ ନିର୍ଜନତା ବିରାଜିତ କରେ । ସେ ଜାଗା ନିସ୍ତଛିଆ ହୋଇଯାଏ, କାରଣ କଡ଼େଇ ଲଗି ସିନା ଗାଣ୍ଡିଗୁହାଳ । ସେହି ନିର୍ଜନତାକୁ ବାବନାଭୂତ କୁହାଯାଏ ବୋଲି କେତେକ କହନ୍ତି । ମାଝ ଯଜ୍ଞବେଦିରୁ ମହାପ୍ରଭୁମାନେ ଫେରି ଆସିବା ପରେ ସେ ବେଦିର ରକ୍ଷଣାବେକ୍ଷଣ ଦାୟିତ୍ୱ 'ଭୈରବ'ଙ୍କ ଉପରେ ନ୍ୟସ୍ତ ହୁଏ । ସେହି ଭୈରବଙ୍କୁ ମଧ୍ୟ 'ଭୂତ' କୁହାଯିବାର ଲୌକିକ ବିଧି ରହିଛି । ସିଂହାସନରେ ମଙ୍ଗଳାଙ୍କୁ ପ୍ରାର୍ଥନା କରାଯାଏ—

'ମେଘବର୍ଣ୍ଣଂ ମହାକାୟଂ ତୀକ୍ଷ୍ଣଦଂଷ୍ଟ୍ରଂ ମହାବଳଂ
ରକ୍ଷରକ୍ଷ ମହାଦେବୀ ଭୈରବ ଈଶ୍ୱର ପ୍ରିୟାମ୍ ।'

କବି ସାଲବେଗ ମଧ୍ୟ 'ଆହେ ନୀଳଶଇଳ ପ୍ରବଳ 'ମତ୍ତବାରଣ' ବୋଲି ଜଗନ୍ନାଥଙ୍କୁ ସମ୍ବୋଧନ କରି ପ୍ରଭୁଙ୍କଠାରେ 'ବାରଣତ୍ୱ' ବା ଗଜତ୍ୱ ଆରୋପ କରିଅଛନ୍ତି ।

'ରଥଯାତ୍ରା'ର ଅନ୍ୟ ଏକ ଆକର୍ଷଣ 'ରଥତ୍ରୟ'ର ବୈଶିଷ୍ଟ୍ୟ । ବଳଭଦ୍ରଙ୍କ ରଥର ନାମ 'ତାଳଧ୍ୱଜ', ସୁଭଦ୍ରାଙ୍କ 'ଦର୍ପଦଳନ' ଓ ଜଗନ୍ନାଥଙ୍କର 'ନନ୍ଦିଘୋଷ' ନାମରେ ପରିଚିତ । 'ତାଳଧ୍ୱଜ' ରଥ ରଜଗୁଣସମ୍ପନ୍ନ, ଏହା ଚତୁର୍ଦ୍ଦଶ ଚକ୍ରସମନ୍ୱିତ, ଲଙ୍ଗଳଶୋଭିତ ଓ

ନୀଳ ଲୋହିତ ବସ୍ତ୍ରାବୃତ । ଏ ରଥର ସାରଥି 'ସାତ୍ୟକ' ଓ ଅଶ୍ୱମାନେ ହେଉଛନ୍ତି 'ସ୍ଥିର', 'ଧୃତ', 'ସ୍ଥିତ' ଓ 'ସିଦ୍ଧି'। ରଥର ଦ୍ୱାର-ଦେଶରେ ଥିବା ଶସ୍ୟଗୁଚ୍ଛ ଓ ପୂର୍ଣ୍ଣକୁମ୍ଭ ହଳ ମୂଷଳ ଭୂଷିତ ବଳଭଦ୍ରଙ୍କର ସୃଜନଶୀଳତାର ତଥା ଧନ ଧାନ୍ୟାଦି ସମୃଦ୍ଧିର ପ୍ରତୀକ। ସୁଭଦ୍ରାଙ୍କ 'ଦର୍ପଦଳନ' ୧୨ ଚକ୍ର ବିଶିଷ୍ଟ ଏହା ତାମସିକଭାବାପନ୍ନ ଏଣୁ କୃଷ୍ଣବର୍ଣ୍ଣ। ଏ ରଥର ସାରଥି 'ଅର୍ଜ୍ଜୁନ' । ଏ ରଥରେ ସୁଭଦ୍ରାଙ୍କ ସହ ସୁଦର୍ଶନ ମଧ୍ୟ ବିଜେ କରନ୍ତି । ଅଶ୍ୱମାନଙ୍କର ନାମ— 'ଅଧର୍ମ', 'ଅଜ୍ଞାନ','ଅପରାଜିତା' ଓ 'ଜ୍ୟୋତିମା'। ଦ୍ୱାଦଶ ଚକ୍ରରେ ଦ୍ୱାଦଶ ମାସର କଳ୍ପନା କଳ୍ପିତ। ବଳଭଦ୍ରଙ୍କ ସୃଜନଶୀଳ କାର୍ଯ୍ୟକ୍ରମରେ ଏହା ବିଶେଷ ସହାୟକ। ନନ୍ଦିଘୋଷ ରଥ ୧୬ ଚକ୍ର ବିଶିଷ୍ଟ ଓ ସତ୍ତ୍ୱଗୁଣ ଯୁକ୍ତ । ଏହା ପୀତ ବସ୍ତ୍ରାଚ୍ଛାଦିତ, ଧ୍ୱଜ କପି ଚିହ୍ନିତ, ମାତଳି ଏଥିରେ ସାରଥି, ଅଶ୍ୱମାନେ ଶୁକ୍ଳବର୍ଣ୍ଣ। ସେମାନେ ହେଲେ– 'ଚଣ୍ଡିକା', ମୋଚିକା, ସୂକ୍ଷ୍ମା ଓ ଅମୃତା। 'ଜଗନ୍ନାଥ ଯେ ଷୋଳକଳା' ଏଣୁ ତାଙ୍କର ରଥ ମଧ୍ୟ ଷୋଡ଼ଶ କଳା ଯୁକ୍ତହୋଇ ସୃଷ୍ଟିର ମଙ୍ଗଳକାରକ । 'ରଥଯାତ୍ରା'ର ଅନ୍ୟନାମ ଘୋଷଯାତ୍ରା ଏବଂ ଏହି 'ଘୋଷ' ଶବ୍ଦ 'ନନ୍ଦୀ' ସହ ମିଶ୍ରିତ। 'ନନ୍ଦ୍' ଧାତୁର ଅର୍ଥ ଆନନ୍ଦ ଦାନ କରିବା। ଏଣୁ ରଥଯାତ୍ରା ପ୍ରକାରାନ୍ତରେ ଆନନ୍ଦ ଯାତ୍ରା, ଭକ୍ତିର ଯାତ୍ରା ଓ ଭବବନ୍ଧନର ଯାତ୍ରା ।

କେହି କେହି ଅବଶ୍ୟ ପୁଣି, ଭୁବନେଶ୍ୱର ରଥଯାତ୍ରାକୁ ବୌଦ୍ଧ ଉତ୍ସବର ରୂପାନ୍ତର ବୋଲି କହନ୍ତି। ଦାକ୍ଷିଣାତ୍ୟ ଶ୍ରୀରଙ୍ଗମ୍‌ର ରଙ୍ଗସ୍ୱାମୀ ଦେବତାଙ୍କର ବୈକୁଣ୍ଠ ଏକାଦଶୀ ଦିନ ରଥଯାତ୍ରା ହୁଏ । ସେଠାରେ ଗୋଟିଏ ସହସ୍ର ସ୍ତମ୍ଭଯୁକ୍ତ ମଣ୍ଡପ ଅଛି (ଭାଷାକୋଷ-୬୯୮୩ କୋଣାର୍କର ମାଘ ସପ୍ତମୀରେ ପୂର୍ବେ ରଥଯାତ୍ରା ହେଉଥିବାର ପ୍ରମାଣ ମିଳେ । ଭୁବନେଶ୍ୱର ଅଶୋକାଷ୍ଟମୀର 'ରୁକୁଣାରଥ (ରୁକ୍ମିଣୀ) ଅଣଲେଉଟା' ଏବେ ବି ପ୍ରଚଳିତ ।

ରଥଯାତ୍ରା ଏକ ସାର୍ବଜନୀନ ପର୍ବ। ପତିତ ଓ ଅସ୍ପୃଶ୍ୟମାନଙ୍କର ଜଗନ୍ନାଥ ଦର୍ଶନ ଲାଭ, ପୁଣି ଗଜପତିଙ୍କର ଛେରାପହରା ମାଧ୍ୟମରେ ରାଜଧର୍ମ ସେବାଲାଗି ଉଦବୃଷ୍ଟ ହେବାର ଧାରଣା ଜ୍ଞାନ, ମହାଲକ୍ଷ୍ମୀଙ୍କୁ ସଙ୍ଗରେ ନ ଆଣି ଜଗନ୍ନାଥ ଭଉଣୀ ସୁଭଦ୍ରାଙ୍କୁ ଆଣିବାରେ ଭଗ୍ନୀ ପ୍ରୀତି

ଓ ସର୍ବୋପରି 'ବାମନ'ଙ୍କର ଦର୍ଶନ ଯେ କୋଟି ଜନ୍ମର ପାତକ ହାରକ ଏବଂ ସାମ୍ୟ ମୈତ୍ରୀର ଋଗ୍‌ଦର୍ଶକ ଏହା ନିଃସନ୍ଦେହ । ହିନ୍ଦୁ ଜଗତର ଏହା ପ୍ରାଚୀନତମ ଓ ଶ୍ରେଷ୍ଠ ଯାତ୍ରା । ଜଣେ ଲେଖକ ଲେଖିଛନ୍ତି—

'Of all Hindu shrines, the temple of Jagannath ( Lord of the Universe ) in Orissa is undoubtedly the most famous.From very early times, we have detailed descriptions of the temple, the vast concourse of people who attend the annual festival. and the ponderous cars of Jagannath and his brother and sister drawn by the pilgrims to his country house,

(Festivals and Holidays of India— page – 17)

'ସର୍ବେଷାଂ ସର୍ବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମଃ'ଙ୍କଠାରେ ଗୋଟିଏ ସ୍ତବ ମାଧ୍ୟମରେ ( 'ପୁରୁଷୋତ୍ତମ କ୍ଷେତ୍ର' ମାହାତ୍ମ୍ୟ ଅନ୍ୟ ପ୍ରବନ୍ଧରେ ବର୍ଣ୍ଣିତ ) ଏ ପ୍ରବନ୍ଧର ଉପସଂହାର କରୁଛି ।

"ନମୋନମୋ ଜଗନ୍ନାଥ—ବ୍ରହ୍ମଣେ ଯଃ ସନାତନଃ
ସଚ୍ଚିଦାନନ୍ଦରୂପାୟ ନମୋ ଯଜ୍ଞପତିଃ ସ୍ୱୟଂ
ଜୟ ରାମ ଜୟ ଭଦ୍ରେ ଯୋଗମାୟେ ସନାତନୀ
ଜୟ ତତ୍ତ୍ୱ ପରଂ ବ୍ରହ୍ମ ଚତୁର୍ବ୍ୟୂହ ନମୋସ୍ତୁତେ ।"

( ତା ୫।୭।୭୦ର 'ସମାଜ' ସାପ୍ତାହିକ ସାହିତ୍ୟ ବିଭାଗରେ
ଶ୍ରୀଗୁଣ୍ଡିଚ୍ଚ ଦାସ ପ୍ରକାଶିତ )



## "ପୁରୁଷାଖ୍ୟଂ ସମଂ କ୍ଷେତ୍ରଂ ନାସ୍ତି ତ୍ରୈଲୋକ୍ୟ ମଣ୍ଡଳେ"

**ଧ**ନ୍ୟ ଏ ପୁରୁଷୋତ୍ତମ କ୍ଷେତ୍ର ! ଧନ୍ୟ ଏ ହିନ୍ଦୁ ଜଗତର ମହା ପୁଣ୍ୟଭୂମି ! ଏ ମହାନ୍ ପୀଠରେ ଏକମୂ କଟକର ରାଜା ଜଗନ୍ନାଥ, ସେ ପୁଣି ପୁରୁଷୋତ୍ତମ । କ୍ଷେତ୍ର ଓ କ୍ଷେତ୍ରପତି ଉଭୟେ ଏକ ଅଙ୍ଗୀଭୂତ; ଏକ ଅଦ୍ଭୁତ ଏକୀକରଣ । "ସର୍ବେଷାଂ ସର୍ବକ୍ଷେତ୍ରାଣାଂ ରାଜା ଶ୍ରୀ ପୁରୁଷୋତ୍ତମଃ । ସର୍ବେଷାଂ ସର୍ବ ଦେବ ନାଂ ରାଜା ଶ୍ରୀପୁରୁଷୋତ୍ତମଃ ଉକ୍ତି ବାସ୍ତବିକ୍ ଧର୍ମଜଗତରେ ପ୍ରସିଦ୍ଧି ଲାଭ କରିଛି । ଏ ଭୂମିର ଗୋଡ଼, ମାଟି, ଧୂଳି ପବିତ୍ରୀକୃତ । ଭକ୍ତ ଏଠାର 'ଶରଧାବାଲି'ରୁ ହାତେ ମାଧ ପାଇବା ପାଇଁ ବ୍ୟାକୁଳ । ବାର ମାସରେ ଏଠାର ତେର ଯାତ୍ରାର ବିଧିବିଧାନ ସ୍ୱଦେଶୀ ଓ ବିଦେଶୀଙ୍କ ମନରେ ଉଲ୍ଲାସ ଖେଳାଇ ଦିଏ । ଦାଣ୍ଡ ଏଠାର 'ବଡ଼ଦାଣ୍ଡ', ପଣ୍ଡା ପୁଣି 'ବଡ଼ପଣ୍ଡା', ଠାକୁର ସହଜେ 'ବଡ଼ଠାକୁର', ପ୍ରସାଦ ପୁଣି 'ମହାପ୍ରସାଦ' । ରାଜା ଏଠାର ଗଜପତି । ଉଦଧି ପୁଣି 'ମହୋଦଧି । 'ସେ ପୁଣି କ୍ଷେତ୍ରରାଜ ପଦବୀଭୂଷିତ । ଏ କ୍ଷେତ୍ରର ପଦ ପ୍ରକ୍ଷାଳନ ତତ୍ପର । ଚତୁର୍ବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ ସ୍ୱୟଂ ରାଜା ଜଗନ୍ନାଥ ବିମଣ୍ଡିତ ଶ୍ରୀକ୍ଷେତ୍ର—ଦୁର୍ଗର ଏ ମହୋଦଧି ପରିଖା । ଗର୍ଜନ ଛଳରେ ପାପବ୍ୟୂହଦହନ ଏଠାର ଧର୍ମ । କବିସମ୍ରାଟ ଉପେନ୍ଦ୍ର ଯଥାର୍ଥରେ ଲେଖିଛନ୍ତି—

"ସେ ଦୁର୍ଗ ପରିଖା ତୀର୍ଥରାଜ, ଗର୍ଜନରେ
କହେ ଅବଗାହେ ପାପବ୍ୟୂହ ଦହନରେ
ଦନ୍ତ ସବୁ ବାଡ଼ବରେ ଦେବ ଏ ପକାଇ
ଏ ଦର ବରିରୁ ଦୂରୁ ଦୂରିତ ପଳାଇ ।"

ଭାରତର ଅନ୍ୟ କି ପୁଣ୍ୟଧାମ ରାମେଶ୍ୱର, ଦ୍ୱାରକାନାଥ ଓ ବଦ୍ରିନାଥ ପରି ଜଗନ୍ନାଥ ଧାମ ମଧ୍ୟ ଏକ ପୁଣ୍ୟପୀଠ; ମାତ୍ର ଏ କ୍ଷେତ୍ରରେ 'ମୁକ୍ତି' ପ୍ରାପ୍ତି ନିମନ୍ତେ କଷ୍ଟ କରିବାକୁ ପଡ଼େ ନାହିଁ ।

ସାମାନ୍ୟ କୈବଲ୍ୟ କଣିକାଟିଏ ଯଥେଷ୍ଟ । 'କଢ଼ଉଣ' ମହାପ୍ରାସାଦ ସେବନରେ ମୁକ୍ତିଲାଭ ଏହାର ବୈଶିଷ୍ଟ୍ୟ । ମୁକ୍ତିଲାଭ ସମସ୍ତଙ୍କର କାମ୍ୟ । ଏଥିରେ ବର୍ଣ୍ଣବୈଷମ୍ୟର ସ୍ଥାନ ନାହିଁ । ସ୍ୱଦେଶପ୍ରେମୀ କବି ଗାଇଛନ୍ତି—

"ଯେବଣ କଣ୍ଠକେ ଛଣ୍ଠକେ ବଣ୍ଠକେ ମୁକତି ·
ମହାପ୍ରସାଦରେ ସାଦରେ ନରମାନେ ଲଭନ୍ତି ।"

ସ୍କନ୍ଦ କାବ୍ୟ ପୁରାଣ ଶାସ୍ତ୍ରରେ ଏ ଶ୍ରୀକ୍ଷେତ୍ର କଟକ ଏକ ଅତି ପାବନ ସ୍ଥଳୀ, ଯଥା

"ମହୋଦଧ୍ୟନ୍ତରେ ପାର୍ଶ୍ୱେ କୈବଲ୍ୟଂ କ୍ଷେତ୍ରମୁତ୍ତମମ୍
ସଦାନନ୍ଦ୍ୟ ପୁଣ୍ୟ ଭବନଂ ବନ୍ଦନଂ ପାବନଂ ପୁରା"

( ବାମଦେବ ସଂହିତା )

ଏକାମ୍ରକ୍ଷେତ୍ର ପୁଣ୍ୟ ବାରାଣସୀ ସହ ସାମ୍ୟ ରକ୍ଷାକରେ, ମାତ୍ର ପୁରୁଷୋତ୍ତମ କ୍ଷେତ୍ର ଏ ତ୍ରିଲୋକରେ ଅତୁଳ । ସଂସ୍କୃତରେ ଲେଖାଅଛି—

"ବାରାଣସ୍ୟାଃ ସମଂ ଅସ୍ତି କ୍ଷେତ୍ର ମେକାମ୍ରକାନନମ୍
ପୁରୁଷାଖ୍ୟଂ ସମକ୍ଷେତ୍ରଂ ନାସ୍ତି ତ୍ରୈଲୋକ୍ୟ ମଣ୍ଡଳେ ।"

ଅଦ୍ଭୁତ ଏ ସ୍ଥଳୀ ! ବିରଜା 'ଗଦାକ୍ଷେତ୍ର', ଏକାମ୍ରକ୍ଷେତ୍ର, 'ଚକ୍ରକ୍ଷେତ୍ର', କୋଣାର୍କ 'ପଦ୍ମ' ଓ ପୁରୁଷୋତ୍ତମ ସର୍ବାପେକ୍ଷା ଅଧିକ ଗୌରବ ଯୁକ୍ତ 'ଶଙ୍ଖକ୍ଷେତ୍ର' । ଏହାର ବ୍ୟାପ୍ତି ପଞ୍ଚକ୍ରୋଶ— ସମୁଦ୍ରରେ ଦୁଇକ୍ରୋଶ ଓ ପୃଥ୍ୱୀମଧ୍ୟେ ତିନିକ୍ରୋଶ । 'ବାମଦେବ ସଂହିତା'ରେ ଏହି ଶଙ୍ଖକ୍ଷେତ୍ରର ପୁଙ୍ଖାନୁପୁଙ୍ଖ ତଥା ଚମତ୍କାର ବର୍ଣ୍ଣନା ଦିଆଯାଇଛି । ଶଙ୍ଖ ମଧ୍ୟରେ ନୀଳରୂପୀ ଚତୁର୍ଭୁଜ ବସ୍ତୁ ଅଛନ୍ତି । ଏ ଶଙ୍ଖକ୍ଷେତ୍ର ତ୍ରିଆବରଣ-ଯୁକ୍ତ । ଏଥିମଧ୍ୟରେ ଦେବତାମାନେ ଆଶ୍ରୟ ନେଇଛନ୍ତି—

"ଶଙ୍ଖମଧ୍ୟେ ସ୍ଥିତୋ ବସ୍ତୁ ନୀଳରୂପ ଶ୍ଚତୁର୍ଭୁଜଃ
ସ୍ୱରାଜତେ ନୃପଶ୍ରେଷ୍ଠଃ ଦର୍ଶନାନ୍ମୁକ୍ତି ଦୋନୃଣାଂ

ଶଙ୍ଖେ ଭବେଦ୍ଧଗ ବୃତ୍ତ ସ୍ତସ୍ମିନ୍ ଯେ ଦେବତାଃ ସ୍ଥିତାଃ
ତେଷାଂ ନାମାନି ବକ୍ଷେ଼ୃହଂ ଶୃଣୁ ରାଜନ୍ ସୁଖଂ ଭଜ ।'

ପ୍ରଥମାବରଣରେ ଶକ୍ତିଦା ବିମଳା, ତାଙ୍କ ସମ୍ମୁଖରେ ରୋହିଣୀ କୁଣ୍ଡ, ଯାହାର ପବିତ୍ର ଉଦକରେ ବାୟସ ପତିତ ହୋଇ ମୁକ୍ତିମାର୍ଗର ପଥିକ ହୋଇଛି । ତାଙ୍କ ସମ୍ମୁଖରେ ନୃସିଂହ, ପୁଣି କଳ୍ପବୃକ୍ଷ, ତାଙ୍କ ଛାୟାସୀନ ବ୍ରହ୍ମହତ୍ୟାକାରୀର ମଧ୍ୟ ପାପ ଦୂରୀଭୂତ ହୁଏ । ଏହି ଆବରଣରେ।ପୁଣି ଈଶାନେଶ୍ୱରଙ୍କ ସ୍ଥିତି । ଦ୍ୱିତୀୟାବରଣରେ ବାସ କରୁଥିବା ଦେବତାମାନଙ୍କ ମଧ୍ୟରେ କପାଳମୋଚନ ଦେବ ଓ ମଣି-କର୍ଣ୍ଣିକା ତୀର୍ଥ । ଏହାଙ୍କ ପାର୍ଶ୍ୱରେ ଆୟୁଧଯୁକ୍ତା ଦେବୀ 'ଚଣ୍ଡରୂପା' ତାଙ୍କ ସମ୍ମୁଖରେ 'ଶ୍ୱେତଗଙ୍ଗା' ଓ ମତ୍ସ୍ୟମାଧବ । ଏହାଛଡ଼ା 'କାଳିକା' ଓ ସୂତ୍ରଧାରକ 'ଚକ୍ରତୀର୍ଥ' ମଧ୍ୟ ଏହି ସ୍ତର ଅନ୍ତର୍ଗତ । ଏହି ସେହି 'ଚକ୍ରତୀର୍ଥ' ଯେଉଁଠାରେ ଋଗ୍‌ଦେବ ବର୍ଣ୍ଣିତ ସେହି ଅପୌରୁଷେୟ 'ଦାରୁ' ଭାସମାନ ଅବସ୍ଥାରେ ଏଠାରେ ପହଞ୍ଚିଥିଲେ—

'ଅଦୋ ଯଦ୍ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୂରୁଷମ୍
ତଦାରୁ ଭସ୍ୱ ଦୁର୍ହଣୋ ତେନଗଚ୍ଛ ପର ସ୍ତରମ୍ ।
( ଋଗ୍‌ବେଦ, ୧୦ମ ମଣ୍ଡଳ—୩ୟ ମନ୍ତ୍ର )

ଏଠାରେ 'ଚକ୍ରନାରାୟଣ' ଦେବ ମଧ୍ୟ ସେବ୍ୟ । ଏହାପରେ ତୀର୍ଥରାଜ 'ମହୋଦଧି' ସର୍ବୋପରି ନୀଳସୁନ୍ଦର ପର୍ବତ ସ୍ଥିତ ନୀଳମାଧବ ଜଗନ୍ନାଥ ଏ ଶଙ୍ଖକ୍ଷେତ୍ରର ଗୌରବ । ପ୍ରାସାଦର ବାୟୁକୋଣରେ ମାର୍କଣ୍ଡେୟ ବଟ ଓ ମାର୍କଣ୍ଡେଶ୍ୱର ଶମ୍ଭୁ ବିରାଜମାନ । ଶଙ୍ଖକ୍ଷେତ୍ରର ତୃତୀୟାବରଣରେ ସମୁଦ୍ର ତଟରେ ଯମେଶ୍ୱର, କୋଟିଲିଙ୍ଗେଶ୍ୱର, ପ୍ରାସାଦର ପଶ୍ଚିମ ଦେଶରେ ସର୍ବମଙ୍ଗଳା, ଶଙ୍ଖର ଦକ୍ଷିଣ ଦେଶରେ 'ଅଲମ୍ବୁକେଶ୍ୱର' ବିରାଜମାନ । ଏହିପରି ଭାବରେ 'ଶଙ୍ଖ' ପରମ ପବିତ୍ର ଭୂଭାଗ ପୁରୁଷୋତ୍ତମ କ୍ଷେତ୍ରକୁ ଚତୁର୍ଦ୍ଦିଗରେ ପରିକ୍ରମା କରୁଛି ।

ଏ ପୁଣି ନାଭିକ୍ଷେତ୍ର । ପୂର୍ଣ୍ଣ ତନ୍ତ୍ରକ୍ଷେତ୍ର । ଜଗନ୍ନାଥ ଏଠି ଶିବ ଓ 'ବିମଳା' ଶକ୍ତି । ଦକ୍ଷଯଜ୍ଞ ନିପତିତା ସତୀଙ୍କ ମୃତଦେହ ଧରି ଯୋଗେଶ୍ୱର ଶିବ ବ୍ରହ୍ମାଣ୍ଡ ବା ଜମ୍ବୁଦ୍ୱୀପ ପରିକ୍ରମା କଲେ । ପ୍ରିୟାବିରହୀ

ମହାଦେବଙ୍କ ବେଷ୍ଟରେ ଚତୁର୍ଦ୍ଦିଗ ରୁକ୍ଷ ଓ କର୍କଶ ହୋଇ ଉଠିଲା । ଦେବତାମାନେ ସ୍ଥାନସାପେକ୍ଷ୍ୟ ହେଲେ । ବିଷ୍ଣୁ, ସୃଷ୍ଟି ରକ୍ଷାର୍ଥେ ସୁଦର୍ଶନକୁ ଆଜ୍ଞାଦେଲେ ଯେ ଶକ୍ତିଙ୍କର ଅଙ୍ଗପ୍ରତ୍ୟଙ୍ଗକୁ ଖଣ୍ଡ ବିଖଣ୍ଡ କରିପକାଅ । ସେହି ଅଙ୍ଗ ଯେଉଁ ଯେଉଁ ସ୍ଥାନରେ ପତିତ ହେବ, ସେଠାରେ ଏକ ଏକ ଶାକ୍ତ ପୀଠ ଗଢ଼ିଉଠ ଓ ପ୍ରତ୍ୟେକ ଶାକ୍ତ ପୀଠ ନିକଟରେ ଏକ ଏକ ଦେବ ଭୈରବ ରୂପରେ ଜଗି ରହନ୍ତୁ ।' ସତୀଙ୍କ ଛିନ୍ନାଂଶ ଏହିପରିଭାବେ ୫୧ଟି ସ୍ଥାନରେ ପତିତ ହେଲା । କାଳିକା ପୁରାଣ ୨୬ ଅଧ୍ୟାୟ ଓ ଦେବୀ ଭାଗବତରେ ୧୦୮ ପୀଠର ଉଲ୍ଲେଖ ଅଛି; ମାତ୍ର ତନ୍ତ୍ରଚୂଡ଼ାମଣିରେ ପୂର୍ବୋକ୍ତ ୫୧ଟି ପୀଠର ଉଲ୍ଲେଖ ଅଛି । ଏଥିରେ ଅଙ୍ଗ, ସ୍ଥାନ, ଭୈରବ ଓ ଶକ୍ତିଙ୍କ ନାମ ସୂଚିତ । ଏହି ପୁରୁଷୋତ୍ତମ କ୍ଷେତ୍ରରେ ଦେବୀଙ୍କର 'ନାଭି' ଅଂଶ ପଡ଼ିଥିଲା । ତେଣୁ ଏହା ନାଭିକ୍ଷେତ୍ର ରୂପେ ପ୍ରସିଦ୍ଧି ଲାଭ କରିଛି ।–

"ଉତ୍କଳେ ନାଭି ଦେଶଞ୍ଚ ବିମଳା ପୁରୁଷୋତ୍ତମେ—
ବିମଳା ଭୈରବୀ ତତ୍ର ଜଗନ୍ନାଥସ୍ତୁ ଭୈରବଃ" ।

ଏ ପୀଠର ଅଧିକାରିଣୀ ବିମଳା । ତନ୍ତ୍ରମତରେ ବିମଳା ପୀଠରେ ପ୍ରସାଦ ନୈବେଦ୍ୟ ହୋଇସିବା ପରେ 'ମହାପ୍ରସାଦ' ରୂପେ କଥିତ ହୁଏ । ତେଣୁ କେତେକ ଏହାକୁ 'ରସନାପୀଠ' ବୋଲି କହନ୍ତି । କଥିତ ଅଛି ଯେ—

"ରସନା ଉତ୍କଳଦେଶେ ଚ ବିମଳା ପୁରୁଷୋତ୍ତମେ
ତତ୍ପୁରିଷ୍ଟ ମହାପୀଠେ ଜଗନ୍ନାଥାଖ୍ୟ ଭୈରବଃ" ।

ମାତ୍ର ନାଭିକ୍ଷେତ୍ର ରୂପେ ଏହାର ପ୍ରସିଦ୍ଧି ଅଧିକ । ଜଗନ୍ନାଥ ଯେ ଭୈରବ, ଉଡ୍ଡୀଶତନ୍ତ୍ରରେ ମଧ୍ୟ ପ୍ରମାଣ ରହିଛି ।

"ଶଙ୍ଖ ଚକ୍ର ଗଦା ପଦ୍ମ ଧାରଣୋ ବନମାଳୀ ଚ
ଅନନ୍ତ ରୂପୀଣଃ ସାକ୍ଷାତ୍ ଜଗନ୍ନାଥାଖ୍ୟ ଭୈରବଃ" ।

ଓଡ଼ିଆ ଜଣାଣ ଭଜନରେ ଏବେ ମଧ୍ୟ ଗୁଞ୍ଜରି ଉଠେ—'ଥକାମନ ଗ୍ଭଲ ଯିବା, ଚକାନୟନ ଦେଖିବା, ଶଙ୍ଖନାଭି ମଣ୍ଡଳରେ ବେକନେଇ ପଖାଳିବା ।' ଏଣୁ ଏ ପୀଠ ତାନ୍ତ୍ରିକପ୍ରିୟ ।

ବଚନ ଏ ପୀଠ, ବୈଚିତ୍ର୍ୟ ହିଁ ଏହାର ବୈଶିଷ୍ଟ୍ୟ ! କଥିତ ଅଛି ପ୍ରାୟ ପଚ୍ଚିଶ ହଜାର ଲୋକଙ୍କ ପାଇଁ ସେତେବେଳେ ହେବା ବ୍ୟବସ୍ଥା ଏ କ୍ଷେତ୍ର ବ୍ୟତୀତ ପୃଥିବୀରେ ଅନ୍ୟତ୍ର ନାହିଁ । ଏଣୁ ଏ କ୍ଷେତ୍ରର ପାକଶାଳା ବିଶ୍ୱରେ ସର୍ବବୃହତ୍ । ଏ କ୍ଷେତ୍ରର 'ମଠ'ମାନଙ୍କ ଉତ୍ପତ୍ତି, ବିକାଶ ଓ ସ୍ଥାପନ ସମ୍ବନ୍ଧୀୟ ଇତିହାସ ଏକ ଏକ ଦୀର୍ଘ ଗ୍ରନ୍ଥ । ଆଦ୍ୟ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ, ମାଧ୍ୱାଚାର୍ଯ୍ୟ, ନିମ୍ବାର୍କାଚାର୍ଯ୍ୟ ରାମାନନ୍ଦାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ଚୈତନ୍ୟ, ଅତିବଡ଼ୀଜଗନ୍ନାଥ ଦାସ, ମତ୍ତବଳରାମ, ଅଚ୍ୟୁତ, ଯଶୋବନ୍ତ, ଶିଶୁଅନନ୍ତ, ଗୋପାଳ ଭଞ୍ଜ ଓ ଜୟଦେବଙ୍କଠାରୁ ଆରମ୍ଭ କରି ଯବନ ହରିଦାସ, ଯବନ ସାଲବେଗ, ଖ୍ରୀଷ୍ଟ ବଷାଡ଼, ସଦ୍‌ଗୁରୁ ନାନକ, କବିର ସାହେବ ଇତ୍ୟାଦି ଭାରତର ବିଭିନ୍ନ ପ୍ରାନ୍ତାଗତ ବିଭିନ୍ନ ମତାବଲମ୍ବୀ ଭକ୍ତାଗ୍ରଣୀଙ୍କ ଅଗଣିତ କ୍ଷୁଦ୍ର ବୃହତ୍ ମଠରେ ଏ ପୁରୁଷୋତ୍ତମ କ୍ଷେତ୍ର ମଣ୍ଡିତ । ଗବେଷକ ଶ୍ରୀ ସଦାଶିବ ରଥଶର୍ମାଙ୍କ ମତରେ ଆଦର୍ଶ ସତ୍ ବିଭୂତିକୁ କେନ୍ଦ୍ରକରି ଏ ପୀଠରେ ୭୫୨ ମଠ ଥିବାର ପ୍ରମାଣ ମିଳୁଛି । ବିଭିନ୍ନ ପରମପୂଜ୍ୟ ସନ୍ଥମାନେ ଅନୈକ୍ୟ ମଧ୍ୟରେ ଐକ୍ୟ ସ୍ଥାପନ କରି ଏହି ଦେବତାବାଞ୍ଛିତ ସାଗରସେବିତ ସ୍ଥଳୀରେ ସ୍ୱ ସ୍ୱ ଧର୍ମମତର ସ୍ମାରକୀ ରଖିଯାଇଛନ୍ତି ।

ଯୁଗ ଯୁଗାନ୍ତରର ନୀରବ ସ୍ମୃତି ମନେ ଉଙ୍କିମାରେ । ଆଧୁନିକ ପୁରୀକ୍ଷେତ୍ର ସତ୍ୟଯୁଗରେ ଥିଲା ଘନ ଅରଣ୍ୟାଚ୍ଛନ୍ନ । ମଧ୍ୟଭାଗରେ ଥିଲା ନୀଳପର୍ବତ । ଶିଖର ଦେଶରେ ଶୋଭା ପାଉଥିଲା କଳ୍ପଦ୍ରୁମ । ପର୍ବତର ପଶ୍ଚିମପଟେ ରୋହିଣୀଝର ଥିଲା । ଏହାର ଚତୁର୍ଦ୍ଦିଗରେ ଥିଲା ମଣିମୟ ବେଦୀ । ପୂର୍ବ ଦିଗସ୍ଥ ବେଦୀର ମଧ୍ୟଭାଗରେ ବଟମୂଳସ୍ଥିତଳେ ବିରାଜୁଥିଲେ ନୀଳମାଧବ । ରୋହିଣୀକୁଣ୍ଡକୁ ଗମନାଗମନ ନିମନ୍ତେ ଶୋଭା ପାଉଥିଲା ନୀଳକାନ୍ତ ମଣିର ସୋପାନଶ୍ରେଣୀ ।



# ନାଗ ପଞ୍ଚମୀ

ସର୍ପମାନେ ସବୁ ସନ୍ତୁଷ୍ଟ ହୁଅନ୍ତି ଭାଗ୍ୟ ଓ ସମ୍ପତ୍ତି ପ୍ରଦାନ କରନ୍ତି ବୋଲି କୁହାଯାଏ । ଏହି ବିଶ୍ୱାସ ଯୋଗୁଁ ହିନ୍ଦୁ ସ୍ତ୍ରୀମାନେ ନାଗ ପଞ୍ଚମୀ ନାମକ ଏକ ପର୍ବ ପାଳନ କରନ୍ତି ।

ସ୍ତ୍ରୀମାନେ ପ୍ରାତଃକାଳରେ ସ୍ନାନ କରନ୍ତି ଏବଂ ଦୁଗ୍ଧ ଓ ମଧୁ ପ୍ରଦାନ କରି ସର୍ପମାନଙ୍କର ପୂଜା କରନ୍ତି । ବିଶ୍ୱାସ କରାଯାଏ ଯେ ଯଦି କୌଣସି ସ୍ତ୍ରୀଲୋକର ସନ୍ତାନସନ୍ତତି ନ ଥାଏ ତେବେ ଏହି ସର୍ପ ପୂଜା ତାହାର ବନ୍ଧ୍ୟାତ୍ୱ ଦୂର କରେ । ପୂର୍ବକାଳରୁ ସର୍ପମାନେ ବନ୍ଧ୍ୟାହୀନତା ସହିତ ସଂଯୁକ୍ତ ହୋଇ ଆସୁଛନ୍ତି ।

ସ୍ତ୍ରୀମାନେ ପବିତ୍ର ପିପ୍ପଳୀବୃକ୍ଷ ତଳେ ଖୋଦିତ ହୋଇଥିବା ସର୍ପ ମୂର୍ତ୍ତି ନିକଟକୁ ଯାନ୍ତି । ସେଥିରେ ହଳଦୀ ଓ ଚନ୍ଦନ ଲେପନ କରନ୍ତି ଏବଂ କୁଙ୍କୁମ ଲଗାଇ ତାହାକୁ ପୂଜା କରନ୍ତି । ସେମାନେ ପ୍ରାୟ ୧୦୮ ଥର ସେହି ବୃକ୍ଷ ଚାରିପଟେ ବୁଲନ୍ତି । ଏହାକୁ "ଅଶ୍ୱତ୍ଥ ପ୍ରଦକ୍ଷିଣ" କୁହାଯାଏ । ପୂଜା ସମୟରେ ବ୍ରାହ୍ମଣମାନେ ବୈଦିକ ଶ୍ଳୋକ ଉଚ୍ଚାରଣ କରନ୍ତି । ଯେତେବେଳେ କୌଣସି ପୂଜାରିଣୀର ପ୍ରାର୍ଥନା ସଫଳ ହୁଏ ସେ ସ୍ତ୍ରୀଲୋକ ସେହି ବୃକ୍ଷମୂଳେ ଆଉ ଗୋଟିଏ ସର୍ପ ମୂର୍ତ୍ତି ସ୍ଥାପନ କରେ ।

ନାଗ ପଞ୍ଚମୀ ଭାରତର ସବୁ ଅଞ୍ଚଳର ଲୋକଙ୍କ ଦ୍ୱାରା ପାଳିତ ହୁଏ । ଗ୍ରାମମାନଙ୍କରେ ଥିବା ପୁରୁଣା ଗୃହମାନଙ୍କରେ ବିଶେଷତଃ କେରଳରେ ନାଗମାନେ ଗୃହ ଭିତରେ ରହନ୍ତି ଏବଂ ଗୃହବାସୀମାନଙ୍କର କ୍ଷତି କରନ୍ତି ନାହିଁ । କେବଳ ପବିତ୍ର ଦିବସରେ ଅନ୍ଧାର ଘର ଭିତରେ ସେମାନଙ୍କୁ କ୍ଷୀର ଦିଆଯାଏ । ଗୃହର କାନ୍ଥମାନଙ୍କରେ ଫଣାଯୁକ୍ତ ସର୍ପର ଚିତ୍ର ଅଙ୍କାଯାଇ ମଧ୍ୟ ନାଗପୂଜା କରାଯାଇପାରେ । ଫଣାଟି ହଳଦିଆ ଚନ୍ଦନରେ ସଜ୍ଜିତ ହୋଇଥାଏ ଏବଂ ଏହାକୁ ପୂଜା ଦିଆଯାଏ । ନାଗମାନେ ପ୍ରାୟ ବାସ କରୁଥିବା ହୁଙ୍କାମାନଙ୍କୁ ଚନ୍ଦନ ଏବଂ କୁଙ୍କୁମରେ

ସଜାଯାଇଥାଏ ଏବଂ ସେହି ଗାତ ଭିତରେ କ୍ଷୀର ଢଳାଯାଏ । ପିମ୍ପୁଡ଼ି ହୁଙ୍କାରୁ କାଦୁଅ ଘରକୁ ଅଣାଯାଇ ପଟା ଉପରେ ରଖାଯାଏ ଏବଂ ପୂଜା କରାଯାଏ ।

ସାପୁଆକେଳାମାନେ ସେମାନଙ୍କର ତାଲିମପ୍ରାପ୍ତ ନାଗମାନଙ୍କୁ ନେଇ ନାଗ ପଞ୍ଚମୀ ଦିନ ପଇସା ସଂଗ୍ରହ କରନ୍ତି । ସ୍ତ୍ରୀମାନେ ନାଗକୁ କ୍ଷୀର ଏବଂ ମଧୁ ଦିଅନ୍ତି । ଭାରତର କୌଣସି କୌଣସି ଅଞ୍ଚଳରେ କନାରେ ନାଗର ଆକୃତି କରାଯାଇ ପୂଜା କରାଯାଏ । ନେପାଳରେ ବିଭିନ୍ନ ରଙ୍ଗରେ ଚିହ୍ନିତ ଫଣା ସହ ସର୍ପର ପୂଜା କରାଯାଏ ।

ନାଗପୂଜା ସହ ବହୁ ଲୋକକଥା ମଧ୍ୟ ଜଡ଼ିତ । 'ମନସା' ଦେବୀଙ୍କୁ ସର୍ପମାତା କୁହାଯାଏ । ବଙ୍ଗଳାରେ ତାଙ୍କର ମାଟିରେ ମୂର୍ତ୍ତି କରାଯାଇ ପୂଜା କରାଯାଏ । ଏହି ଦେବୀ ମଧ୍ୟ 'ପରିବାରର ଦେବୀ' ହିସାବରେ ପୂଜିତ ହୁଅନ୍ତି ।

ସବୁଠାରୁ ଲୋକପ୍ରିୟ ଗଳ୍ପ ହେଲା ଯେ ଗୋଟିଏ ବଣିକ ସମ୍ପୂର୍ଣ୍ଣ ଭାବରେ ସର୍ପମାନଙ୍କୁ ଘୃଣା କରୁଥିଲା । ସେ ସେମାନଙ୍କୁ ହତ୍ୟା କରିବା ପାଇଁ ଆରମ୍ଭ କଲା; ତେଣୁ ମନସା ଦେବୀ ତା ପ୍ରତି କ୍ରୋଧାନ୍ୱିତା ହେଲେ । ଜଣକ ପରେ ଜଣେ ଏହିପରି ତାଙ୍କର ଛଅଟି ପୁଅ ସର୍ପ-ମାନଙ୍କ ଦ୍ୱାରା ଦଂଶିତ ହେଲେ ଏବଂ ପ୍ରାଣ ହରାଇଲେ । ଯେତେବେଳେ ସପ୍ତମ ପୁତ୍ର ଜନ୍ମ ହେଲା, ଜ୍ୟୋତିଷମାନେ ଭବିଷ୍ୟତବାଣୀ କଲେ ଯେ ଏହି ପୁତ୍ର ମଧ୍ୟ ସର୍ପ ଦଂଶନରେ ତାର ମଧୁଶଯ୍ୟାରେ ପ୍ରାଣ ହରାଇବ । ସେହି ପୁତ୍ରଟି ଖୁବ୍ ସୁନ୍ଦର ଭାବରେ ବଢ଼ିବାକୁ ଲାଗିଲା । ଯେତେବେଳେ ତାର ବୟସ ହେଲା ସେ ଅନ୍ୟଜଣେ ଧନୀ ବଣିକର କନ୍ୟାକୁ ବିବାହ କଲା । ସେହି ପୁତ୍ରର ପିତା ପୁତ୍ରକୁ ବିବାହ ରାତିରେ ସର୍ପଦଂଶନରୁ ରକ୍ଷା କରିବାପାଇଁ ଗୋଟିଏ ଲୁହା ଘର ତୋଳାଇଲେ । ସେହି ଘର ଭିତରକୁ ଯେପରିକି କୌଣସି ନାଗ ପ୍ରବେଶ କରି ନ ପାରେ । ସେଥିପାଇଁ ଜଗୁଆଳକୁ ନିଯୁକ୍ତ ଦିଆଗଲା । କିନ୍ତୁ ଠିକ୍ ପାହାନ୍ତା ପୂର୍ବରୁ ଯେତେବେଳେ ସମସ୍ତେ ଟିକିଏ ଘୁମେଇ ପଡ଼ିଲେ ଗୋଟିଏ ଗ୍ଲେଟ ସର୍ପ ପବନ ଯାତାୟାତ କରୁଥିବା ପଥ ଦେଇ ପ୍ରବେଶ କଲା ଏବଂ ତାହାକୁ ମୃତ୍ୟୁ ପର୍ଯ୍ୟନ୍ତ ଦଂଶନ କରି ଉଭେଇ ଗଲା । ବୋହୂଟି ଦୁଃଖରେ

ସେହି ମୃତ ଦେହଟିକୁ ସଂସ୍କାର ପାଇଁ ଦେଲ ନାହିଁ । କିନ୍ତୁ ନିଜ ସ୍ୱାମୀର ଜୀବନ ଫେରାଇ ଦେବାପାଇଁ ମନସା ଦେବୀଙ୍କୁ ପ୍ରାର୍ଥନା କଲ । ଶେଷରେ ଦେବୀ ତାର ଭକ୍ତିରେ ସନ୍ତୁଷ୍ଟ ହୋଇ ତାକୁ ଗୋଟିଏ ବର ଦେଲେ ଏବଂ ତାର ସ୍ୱାମୀର ଜୀବନ ଫେରାଇ ଦେଲେ । ସେହିଦିନଠାରୁ ସେହି ବଣିକ ନାଗ ଏବଂ ମନସା ଦେବୀଙ୍କୁ ପୂଜା କରିବାକୁ ଲଗିଲେ ।

ଏହି "ନାଗ ପଞ୍ଚମୀ" ଦିନ ଦେଶର ବହୁ ଅଞ୍ଚଳରେ ବିଶେଷତଃ ମହାରାଷ୍ଟ୍ରରେ କୌଣସି କୃଷକ ସେମାନଙ୍କର ଜମିକୁ ହଳ କରନ୍ତି ନାହିଁ । କାରଣ ହଳ ଦ୍ୱାରା କାଳେ ସାପ ବା ନାଗମାନେ ମରିଯିବେ । ଏହି ବିଷୟରେ ମଧ୍ୟ ଗୋଟିଏ ଗଳ୍ପ ଅଛି । ଥରେ ଗୋଟିଏ କୃଷକ ଜମି ହଳ କରିବାରେ ବ୍ୟସ୍ତ ଥିଲ । ତାର ହଳ ଗୋଟିଏ ସିଆର ଉପରେ ଯାଉଥିଲ । କେତେଗୁଡ଼ିଏ ଗ୍ରେଟ ସାପ ତା' ତଳେ ରହୁଥିଲେ । ମା' ନାଗ ଯେତେବେଳେ ଫେରି ଆସିଲ, ତାର ଛୁଆମାନଙ୍କୁ ମୃତ ହୋଇଥିବାର ଦେଖିଲ । ହଳର ଅଗ୍ରଭାଗରେ ରକ୍ତଚିହ୍ନ ଲଗିଥିବାର ଦେଖି ଜାଣିଲ ଯେ, ସେହି କୃଷକ ହିଁ ତାର ଦୁଃଖର କାରଣ; ତେଣୁ ପ୍ରତିଶୋଧ ନେବାପାଇଁ ନାଗୁଣୀ ସେହି ପରିବାରର ଜଣକ ପରେ ଜଣକୁ ହତ୍ୟା କରିବାକୁ ଲଗିଲ । କେବଳ ସେହି କୃଷକର ଗୋଟିଏ କନ୍ୟା ଅନ୍ୟ ଗ୍ରାମରେ ବାସ କରୁଥିବାରୁ ରକ୍ଷା ପାଇ ପାରିଥିଲ । ନାଗୁଣୀ ତାକୁ ମାରିବାପାଇଁ ସେଠାକୁ ମଧ୍ୟ ଗଲ । କିନ୍ତୁ ଦେଖିଲ ଯେ ନାଗପୂଜା ପାଇଁ ସେଠାରେ ଆୟୋଜନ ଚାଲିଛି । ସେ ଝିଅଟି ପୂଜା ପରେ ବାହାରକୁ ଆସି ନାଗକୁ ଦେଖିଲ, ଯେ କି ତାକୁ ସବୁକଥା ଜଣାଇଲ । ସେ ଝିଅଟି ଭାରି ଦୁଃଖିତା ହେଲ ଏବଂ ତାର ପରିବାରମାନଙ୍କ ଜୀବନ ଫେରାଇ ଆଣିବାର ଉପାୟ ବତାଇବା ପାଇଁ ଅନୁରୋଧ କଲ । ମା' ନାଗୁଣୀ ତା ଦୁଃଖରେ ଦୁଃଖିତା ହେଲ ଏବଂ ତାର ରାଗ ଉଭେଇ ଗଲ । ସେ ତାକୁ ଗୋଟିଏ ପାତ୍ରପୂର୍ଣ୍ଣ ଜଳ ଦେଲ ଏବଂ କେତେଗୁଡ଼ିଏ ସୂଚନା ଦେଇ ମୃତବ୍ୟକ୍ତିମାନଙ୍କ ଦେହ ଉପରେ ଛିଞ୍ଚିଦେବା ପାଇଁ କହିଲ । ସେ ଝିଅଟି ସଙ୍ଗେ ସଙ୍ଗେ ତାର ପିତାଙ୍କ ଘରକୁ ଯାଇ ପୂର୍ବୋକ୍ତ ପ୍ରକାରେ କାର୍ଯ୍ୟ କଲ ଏବଂ ମୃତ ବ୍ୟକ୍ତିମାନେ ନିଦରୁ ଉଠିଲା ପରି ଉଠି ବସିଲେ ।

ଜୁଲାଇ ବା ଅଗଷ୍ଟ ମାସରେ ନାଗ ପଞ୍ଚମୀ ପର୍ବର ଦିନ ପର୍ଯ୍ୟନ୍ତ ପାଳିତ ହୁଏ । ଗ୍ରାମବାସୀମାନେ ଲୋକଗୀତ ଗାଆନ୍ତି । ନାଗ ମୂର୍ତ୍ତି ସବୁ ଗୁଜୁଳ ଚୂନା ବା ଗହମ ଅଟାରେ ତିଆରି କରାଯାଏ । ପୂଜାଘରେ ସେହି ପ୍ରତିକୃତିକୁ ଦୁଗ୍‌ଧ ଓ ଖାଦ୍ୟ ସହ ସମାଧି ଦିଆଯାଏ । ଏହି ସମୟରେ ମେଳା ମଧ୍ୟ ଅନୁଷ୍ଠିତ ହୋଇଥାଏ । କଥିତ ଅଛି ଯେ ଶିବ ନିଜର ଦେହକୁ କେବଳ ସର୍ପ ଦ୍ୱାରା ଆବୃତ କରି ପାର୍ବତୀଙ୍କୁ ବିବାହ କରିବା ପାଇଁ ଆସିଥିଲେ । ବିହାରରେ ବହୁସ୍ଥାନରେ ଭୂଖୋଦନ ଫଳରେ ପ୍ରାଚୀନ ସର୍ପମାନଙ୍କ ଫଣା ଚିହ୍ନ ସବୁ ବାହାରିଛି ।

ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଶିଷ୍ଟ ନାଗ ପଥର ମୂର୍ତ୍ତି ପଛ ପଟରେ ଗୋଟିଏ ସର୍ପ ଫଣା ଥାଇ ପାଟନା ଜିଲାର ନାଳନ୍ଦାଠାରେ ଆବିଷ୍କୃତ ହୋଇଛି । ତାମିଲନାଡ଼ୁରେ ବିଷ୍ଣୁଙ୍କର ଶଯ୍ୟା ହିସାବରେ ସପ୍ତଫଣା ବିଶିଷ୍ଟ ନାଗ "ଆଦିଶେଷ" ପୂଜିତ । ଯେଉଁ ପିଲା ନାଗପୂଜା ପରେ ଜନ୍ମ ହୁଅନ୍ତି, 'ନାଗରାଜା' ବା 'ନାଗମଣି' ଇତ୍ୟାଦି ନାମରେ ନାମିତ ହୁଅନ୍ତି । ଯେଉଁ ଲୋକମାନେ ସର୍ପ ପୂଜା କରନ୍ତି ସେମାନେ ସର୍ପ ପରି ଦେଖା ଯାଉଥିବା କେତେକ ପନିପରିବା ମଧ୍ୟ ଖାଆନ୍ତି ନାହିଁ ।

ପ୍ରାଚୀନ ପଲ୍ଲବ ସମୟଠାରୁ ସର୍ପମାନଙ୍କୁ ସ୍ଥାପତ୍ୟମାନଙ୍କରେ ପ୍ରାଧାନ୍ୟ ଦିଆଯାଇଛି । ତାମିଲନାଡ଼ୁର 'ସୀତା ନବସାଲ'ରେ ଏହାର ନମୁନା ଦେଖିବାକୁ ମିଳେ । ତାମିଲନାଡ଼ୁର ବହୁତ ମନ୍ଦିରରେ ପଥରରେ ଖୋଦିତ ବହୁତ ସର୍ପଙ୍କର ଆକୃତି ଦେଖାଯାଏ । ପ୍ରତ୍ୟେକ ବୈଷ୍ଣବ ଧର୍ମାବଲମ୍ବୀଙ୍କ ମନ୍ଦିରରେ ଦେବତା ଶୋଇବା ଅବସ୍ଥାରେ ହେଉ ବା ବସିବା ଭଙ୍ଗୀରେ ହେଉ ତାଙ୍କ ପଛପଟେ ପଥରରେ ନିର୍ମିତ ହୋଇଥିବା ନାଗମୂର୍ତ୍ତି ଦେଖିବାକୁ ମିଳେ । କର୍ଣ୍ଣାଟକ ରାଜ୍ୟର 'ଚିତ୍ରାଲଦୁର୍ଗ'ଠାରେ ପ୍ରବେଶପଥରେ ଗୋଟିଏ ଫଣାଯୁକ୍ତ ସର୍ପର ଚିହ୍ନ ରହିଛି ।

( ଏନ୍, ରାମକ୍ରିଷ୍ଣନ୍‌ଙ୍କ ଲିଖିତ ଇଂରାଜୀ ଲେଖା "ନାଗ ପଞ୍ଚମୀ'୦" — ଭବନ୍‌ସ୍ ଜର୍ଣ୍ଣାଲ - ଜୁଲାଇ ୨୮, ୧୯୬୪ର ସଂଖ୍ୟାରେ ଲିଖିତ)

●

# ଧନ, ଜନ, ଆୟୁଷ ଓ ବର୍ଷାର ପ୍ରତୀକ: ସର୍ପ

ପ୍ରାଚୀନ କାଳରେ ଯାହାକିଛି ମାନବଠାରୁ ଅତି ଦୁଃସାଧ୍ୟ ଓ ଶକ୍ତିଶାଳୀ ରୂପେ ବିବେଚିତ ହେଉଥିଲା ଓ ମାନବର ଆୟତ୍ତାଧୀନ ନ ଥିଲା ସେ ସବୁକୁ ଲୋକେ ସମ୍ମାନର ସହ ପୂଜା କରୁଥିଲେ । ସର୍ପ ପୂଜା ଏହାର ସତ୍ୟତା ପୂର୍ଣ୍ଣମାତ୍ରାରେ ପ୍ରତିପାଦନ କରେ । ଲୋଭନୀୟ ସୌନ୍ଦର୍ଯ୍ୟ, ମନ ଭୁଲାଣିଆ ଚଞ୍ଚଳତା, ଗତିର ଚମତ୍କାରିତା, ପାଦ ଓ ଡେଣାର ବିନା ସାହାଯ୍ୟରେ ରହସ୍ୟଜନକ ବଙ୍କିଲ ଗତି, ଆକସ୍ମିକ ଆବିର୍ଭାବ ଓ ହଠାତ୍ ଅପସାରଣ, ଚକ୍ଷୁର କମନୀୟତା ଏବଂ ସର୍ବୋପରି ଏହାର ଫଣାର ଭୟାବହ ପରିଣାମ ସାପକୁ ଆକର୍ଷଣ, ଭୟ ଓ ଭକ୍ତିର ଆସନରେ ପୃଥିବୀବାସୀ ଇତିହାସ ଯୁଗରୁ ଥୋଇଛନ୍ତି ।

ଖ୍ରୀଷ୍ଟଯୁଗ ପୂର୍ବରୁ ସର୍ପ ପୂଜା ସାର୍ବଜନୀନ ଥିଲା । ଆଶ୍ଚର୍ଯ୍ୟର କଥା ସୂର୍ଯ୍ୟ ପୂଜା ସହିତ ଏହା ମିଶ୍ରିତ ଭାବରେ ହୋଇ ଆସୁଥିଲା । ସର୍ପ ଧନ ପ୍ରାଚୂର୍ଯ୍ୟ, ବର୍ଷା ଓ ଆୟୁଷର ପ୍ରତୀକ । ସାପ ତାର ପୁରୁଣା କାତି ପରିତ୍ୟାଗ କରି ନୂଆ କାତି ଗ୍ରହଣକୁ କେନ୍ଦ୍ର କରି ନାନାପ୍ରକାର ଗପ ପୃଥିବୀର ବିଭିନ୍ନ ଅଂଶରେ ଶୁଣାଯାଏ ।

ଭାରତୀୟ 'ପୁରାଣ' ସର୍ପକୁ କେନ୍ଦ୍ର କରି ନାନାପ୍ରକାର କାହାଣୀରେ ପୂର୍ଣ୍ଣ ଓ ଏହି କାହାଣୀଗୁଡ଼ିକରେ ସର୍ପର ବଡ଼ ଗୁରୁତ୍ୱପୂର୍ଣ୍ଣ ଭୂମିକା ପରିଲକ୍ଷିତ ହୁଏ । ଯଦିଓ ସର୍ପ ବିଷାଦଜନକ ଓ ମାରାତ୍ମକ ରୂପେ ବିବେଚିତ ତଥାପି ପୌରାଣିକ ସମସ୍ତ କିମ୍ବଦନ୍ତୀ ବା କାହାଣୀର ଇଙ୍ଗିତ ଗୁଡ଼ିକରେ ସର୍ପର ଉତ୍କୋଶତା ଦେଖାଯାଏ । ସାପମାନଙ୍କଠାରେ ଜ୍ଞାନ, ଗୁପ୍ତତଥ୍ୟ, କୁହୁକବିଦ୍ୟା, ଆରୋଗ୍ୟ ଶକ୍ତି ଇତ୍ୟାଦି ବହୁ ଗୁଣ ଅରୋପ କରାଯାଏ ।

ସ୍ୱୟଂ ବିଷ୍ଣୁଙ୍କୁ ଶେଷଶାୟୀ ଭଗବାନ୍ ବୋଲି କୁହାଯାଏ । କାରଣ ମହାପ୍ରଭୁ ଶେଷନାଗର ମଳା ବା ମନ୍ଦା ଉପରେ ଶୟନ କରିଥାନ୍ତି । ଏହି ସର୍ପର ବିରାଟ ଫଣା ପ୍ରଭୁଙ୍କ ମୁଣ୍ଡରେ ଛତାପରି ଥାଏ ଏବଂ ଏହି ଫଣା ପୃଥିବୀକୁ ବହନ କରିଥାଏ । ସ୍ୱୟଂ ଶିବଙ୍କ ଗଳା ଓ ବାହୁ ଦେଶରେ ସର୍ପମାନେ ଗୁଡ଼େଇ ହୋଇଥାନ୍ତି । କିନ୍ତୁ ହିନ୍ଦୁଶାସ୍ତ୍ରରେ ସମୁଦ୍ର ମନ୍ଥନ ଗୋଟିଏ ସୁନ୍ଦର ଆଖ୍ୟାୟିକା । ଏଥିରେ ମଧ୍ୟ ଏକ ପାଖରେ ଦେବତା ଓ ଅପର ପାଖରେ ଅସୁରମାନେ ସମୁଦ୍ରକୁ ମନ୍ଥନ କରିବା ବେଳେ ବାସୁକି ନାଗଙ୍କୁ ଗୋଟିଏ ଦଉଡ଼ି ରୂପେ ବ୍ୟବହାର କରିଥିଲେ । କୃଷ୍ଣକାଳୀୟ ନାଗଙ୍କୁ ଦଳନ କରି ତାଙ୍କର ଶକ୍ତି ଓ ସାମର୍ଥ୍ୟର ପରିଚୟ ଦେଇଅଛନ୍ତି । ପୁରାଣରୁ ଜଣାଯାଏ ଯେ ପାଣି କିମ୍ବା ପୃଥିବୀ ତଳେ ଗୋଟିଏ ସର୍ପବଂଶ ରହିଛି । ଏହାକୁ ନାଗଲୋକ ବୋଲି କୁହାଯାଏ । ଏହି ନାଗଲୋକର ଅଦ୍ଭୁତ ଶକ୍ତି ଅଛି । ଏହି ନାଗ-ଲୋକବାସୀମାନେ ଇଚ୍ଛାକଲେ ମନୁଷ୍ୟରୂପ ଗ୍ରହଣ କରିପାରନ୍ତି । ବାସୁକି ସେମାନଙ୍କ ରାଜା । ତାଙ୍କର କନ୍ୟା ଉଲୁପି ମଧ୍ୟମ ପାଣ୍ଡବ ଅର୍ଜୁନଙ୍କର ସହଧର୍ମିଣୀ ଥିଲେ । ଏହି ଉଲୁପିଙ୍କ ଭଉଣୀ ମନସା କଥିତ ଅଛି ଯେ ଋଷି 'ଜରତ୍କାର'ଙ୍କୁ ବିବାହ କରିଥିଲେ ଓ ଆସ୍ତିକଙ୍କର ଜନନୀ ଥିଲେ । ଏହି ଆସ୍ତିକ ପରବର୍ତ୍ତୀ କାଳରେ ଜନ୍ମେଜୟଙ୍କର ସର୍ପଯଜ୍ଞ ଉତ୍ସବରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ସର୍ପମାନଙ୍କୁ ବଂଶ ନାଶରୁ ରକ୍ଷା କରିଥିଲେ । ମଣିଷ ଓ ସର୍ପମାନଙ୍କ ମଧ୍ୟରେ ସଂଯୋଗ ବା ମିଳନ ସମ୍ପର୍କୀୟ ଗପସବୁ ହିନ୍ଦୁ ଶାସ୍ତ୍ରମାନଙ୍କ ଛଡ଼ା ଅନ୍ୟ ଶାସ୍ତ୍ରମାନଙ୍କରେ ଦେଖାଯାଏ । 'ସର୍ପକୁମାରୀ' ବା ନାଗକନ୍ୟାମାନେ ଅସାମାନ୍ୟ ସୌନ୍ଦର୍ଯ୍ୟ ଓ ସମ୍ମୋହନ ବିଦ୍ୟାର ଅଧିକାରିଣୀ ରୂପେ ସବିଶେଷ ବର୍ଣ୍ଣିତ ।

ଆଜିକାଲି ଏହି ଗୋଟିରେ ବା ନାଗ ସାପମାନଙ୍କୁ ଭାରତରେ ହିନ୍ଦୁ ଶ୍ରାବଣ ମାସରେ ଶୁକ୍ଳ ପକ୍ଷର ୫ମ ଦିନରେ ପୂଜା କରାଯାଉ-ଅଛି । ଏହା ନାଗ ପଞ୍ଚମୀ ରୂପେ ପରିଚିତ । ଭିନ୍ନ ଭିନ୍ନ ଅଞ୍ଚଳରେ ଏହାର ପାଳନ ବିଧି ଓ ପୂଜାପ୍ରଣାଳୀ ଭିନ୍ନ ଭିନ୍ନ ହୋଇଥାଏ । ସାଧାରଣତଃ ଏହି ଦିନ ସାପୁଆ କେଳାମାନେ ସାପପେଡ଼ିରେ ସାପମାନଙ୍କୁ ଆଣି

ଦ୍ୱାର ଦ୍ୱାର ବୁଲି ଏହି ସର୍ପମାନଙ୍କୁ ଦେଖାନ୍ତି । ପୂଜକମାନେ ସର୍ପମାନଙ୍କୁ କ୍ଷୀର ଓ ଅନ୍ୟାନ୍ୟ ଜିନିଷ ଅର୍ପଣ କରି ସେହି ସାପୁଆକେଳାଙ୍କୁ ତାଙ୍କର ପାରିଶ୍ରମିକ ମଧ୍ୟ ଦେଇ ଥାଆନ୍ତି । ସର୍ପ ପୂଜା ଛଡ଼ା ସର୍ପ ମନ୍ଦିର ଓ ସର୍ପ ବେଦୀ ଭାରତର ବିଭିନ୍ନ ସ୍ଥାନରେ ଦେଖାଯାଏ ଓ ବର୍ଷର ଯେ କୌଣସି ଦିନ ସର୍ପପୂଜା ମଧ୍ୟ କରାଯାଇପାରେ । ବିଭିନ୍ନ ଦେଶର ଲୋକେ ବିଭିନ୍ନ ଉପାୟରେ, ବିଭିନ୍ନ ପାରମ୍ପରିକ ସ୍ତରରେ ଯେଉଁପରି ସର୍ପ ପାଳନ କରନ୍ତି ତାହା ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ।

ଦକ୍ଷିଣ ଭାରତରେ ଅନ୍ୟ ଯେ କୌଣସି ସ୍ଥାନ ଅପେକ୍ଷା ସର୍ପପୂଜା ଏକ ସାଧାରଣ ଦୃଶ୍ୟ । ଏଠାରେ ହିନ୍ଦୁମାନେ ତାଙ୍କ ବଗିଚାର ଦକ୍ଷିଣ-ପୂର୍ବ କୋଣଟିକୁ ସର୍ପର ପବିତ୍ର ସର୍ପ ବେଦୀ ନିମନ୍ତେ ସଂରକ୍ଷଣ କରି ରଖନ୍ତି । ଏହି ବଗିଚାର କେତେକ ଅଂଶ ପ୍ରକୃତି ପାଇଁ ଛଡ଼ାଯାଏ । ଏହାର ସାମାନ୍ୟ କୌଣସି କଅଁଳ ପତ୍ର ମଧ୍ୟ ଛିଣ୍ଡାଯାଏ ନାହିଁ । ଏଠାରେ କ୍ଷୀର, ଫୁଲଧବୁ ସର୍ପମାନଙ୍କୁ ଅର୍ପଣ କରାଯାଏ ଓ ଏଠାକୁ ସାପ ମନଇଚ୍ଛା ଆସନ୍ତି ଓ ଯାଆନ୍ତି । ମଧ୍ୟ-ପ୍ରଦେଶର ଗଣ୍ଡମାନେ ମୌସୁମୀ ପ୍ରବାହର ଆରମ୍ଭରେ ଗୋଟିଏ ନାଗକୁ ମାରନ୍ତି । ଏହାର ମୁଣ୍ଡ ଓ ଲାଞ୍ଜକୁ ସର୍ପ ଦେବତା ନାଗ ଦେଓଙ୍କୁ ଅର୍ପଣ କରନ୍ତି ଓ ଅବଶିଷ୍ଟାଂଶ ରାନ୍ଧି ସମସ୍ତେ ଖାଆନ୍ତି । ଏମାନଙ୍କର ବିଶ୍ୱାସ, ବର୍ଷସାରା କୌଣସି ବିଷାକ୍ତ ଖାଦ୍ୟ ଏହାଙ୍କ ଦେହର କୌଣସି କ୍ଷତି କରିବ ନାହିଁ ।

ଆସାମରେ ଏକ ଅସ୍ୱାଭାବିକ ଭାବେ ଏହି ପୂଜା କରାଯାଏ । ଏଠାରେ ଇଉଥେଲନ୍ (Uthlen) ନାମକ ଏକ ବିରାଟକାୟ ସର୍ପକୁ ପ୍ରଥମେ ପ୍ରାର୍ଥନା କରାଯାଏ ଏବଂ ଗୋଟିଏ ମଣିଷକୁ ବଳି ଦିଆଯାଇ ସ୍ତୁତି କରାଯାଏ । କିମ୍ବଦନ୍ତୀରୁ ଜଣାଯାଏ ଯେ ଏହି ସର୍ପ ଚେରାପୁଞ୍ଜି ନିକଟରେ କୌଣସି ଏକ ଗୁମ୍ଫାରେ ଥିଲା ଏବଂ ଗୋଟିଏ ମଣିଷ ଦ୍ୱାରା ଏହାକୁ ଯଥେଷ୍ଟ ମାଂସ ଦିଆଯାଉଥିଲା । ସେହି ଲୋକଟି ସର୍ପଟିକୁ ମାରିଲା । ସେ ତାପରେ ତାକୁ ଠିକ ଠିକ କରି କାଟିଲା ଓ ଦେଶର ଘରଆଡ଼କୁ ଲୋକଙ୍କ ମଙ୍ଗଳ ନିମନ୍ତେ ବାଣ୍ଟିଦେଲା । ସାରା ଦେଶ ଉଥଲେନ୍‌ଙ୍କ ଦାଉରୁ ମୁକ୍ତି ପାଇଲା । ଏହା ଭିତରୁ ଖଣ୍ଡେ

ଅଜ୍ଞାତସାରରେ ଉଦ୍ଭବଗଲ ଏବଂ ସେଥିରୁ ବହୁ 'ଥେଲେନ୍' ଜନ୍ମଗ୍ରହଣ କଲେ । ଏହି ଥେଲେନ୍‌ମାନେ ଘରର ସମ୍ପତ୍ତି, ସୁନା ଅଳଙ୍କାର ସବୁ ଜଗି ରହନ୍ତି । ଯଦି ଏମାନଙ୍କୁ ମନୁଷ୍ୟ ରକ୍ତ ପିଇବାକୁ ଦିଆଯାଏ, ସେମାନେ ଘର ଜଗନ୍ତି ଓ କୌଣସି କ୍ଷତି କରନ୍ତି ନାହିଁ ।

କେତେକ ଜାତିର ଲୋକ ସାପମାନଙ୍କୁ ମାରିବାକୁ ପାପ ବୋଲି ବିବେଚନା କରନ୍ତି । ବିଶ୍ୱାସ କରାଯାଏ ଯେ ସାପଟିଏ ମାରିଲେ ମାରିବା ଲୋକର ଦୁଃଖ ସମସ୍ତ ଆସି ପଡ଼ନ୍ତି । ଖରାପ ସ୍ୱାସ୍ଥ୍ୟ, ଦରିଦ୍ରତା ଏପରିକି ମୃତ୍ୟୁ ମଧ୍ୟ ସାପ ମାରିବା ଲୋକକୁ ଆକ୍ରମଣ କରେ ।

**ଇସ୍‌ଲାମ୍**—ଇସ୍‌ଲାମ୍ ଧର୍ମାବଲମ୍ବୀମାନେ ମଧ୍ୟ ସର୍ପ ପୂଜାରେ ଆଗ୍ରହ ପ୍ରକାଶ କରନ୍ତି । ନୀଲଗିରି ପାହାଡ଼ର ପାଦଦେଶରେ ଅବସ୍ଥିତ ମନାର ଘାଟ୍ (Manar Ghat)ରେ ଥିବା ସର୍ପମସଜିଦ୍ ଏହାର ପ୍ରକୃଷ୍ଟ ପ୍ରମାଣ । ଏଠାରେ ଗୋଟିଏ ପଶୁ ଉତ୍ସବ ପାଳିତ ହୁଏ ଏବଂ ମସ୍‌ଜିଦ୍ ନିମନ୍ତେ ଭିକ୍ଷାସବୁ ସଂଗ୍ରହ କରାଯାଏ ।

**ବୌଦ୍ଧଧର୍ମ**—ବୌଦ୍ଧଶାସ୍ତ୍ରରେ ମଧ୍ୟ ଏହି ନାଗଗୋଷ୍ଠୀ ଥିବାର ଜଣାଯାଏ । ବୌଦ୍ଧଧର୍ମାବଲମ୍ବୀମାନେ ସର୍ପମାନଙ୍କୁ ବୃକ୍ଷ ଓ ବସନ୍ତଋତୁରେ ଅଭିଭାବକ ରୂପେ ମାନନ୍ତି । ବୁଦ୍ଧ ଜନ୍ମ ହେଲା ବେଳେ ମଧ୍ୟ ଗୋଟିଏ ସାପର ଫଣା ତାଙ୍କୁ ଛାଇ କରିଥିବାର ଦେଖାଯାଏ ।

**ଜୈନଧର୍ମ**—ଜୈନମାନେ ବିଶ୍ୱାସ କରନ୍ତି ଯେ ସର୍ପ ତୀର୍ଥଙ୍କର ପାର୍ଶ୍ୱନାଥଙ୍କର ପ୍ରତୀକ । ଗୋମଟେଶ୍ୱରଙ୍କ ମୂର୍ତ୍ତି ସର୍ପଦ୍ୱାରା ପରି-ବେଷ୍ଟିତ ଏବଂ ଏହିଠାରୁ ହିଁ ସର୍ପମାନେ ବାହାରନ୍ତି ।

**ଶିଖ୍‌ଧର୍ମ**—ଏମାନଙ୍କର ମଧ୍ୟ ସର୍ପ ସହ ସମ୍ପର୍କ ଅଛି । ଗୁରୁ ହର ଗୋବିନ୍ଦ ସିଂହ ତାଙ୍କ ବାଲ୍ୟତ ଅବସ୍ଥାରେ ଗୋଟିଏ ସର୍ପକୁ ମାରିଥିଲେ । ସାପ ତାଙ୍କୁ ଆକ୍ରମଣ କରିବା ପାଇଁ ଶତ୍ରୁ ପଠାଇଥିଲା । ଗୁରୁ ହରରାୟ ଗୋଟିଏ ଅଜଗର ସାପକୁ ମାରିଦେଇଥିଲେ କାରଣ ଏହି ସାପ ପୂର୍ବଜନ୍ମରେ ବେଦଶାସ୍ତ୍ର ଉପରେ ମିଛରେ ପଣ୍ଡିତ ହୋଇ ଗର୍ବ କରୁଥିଲା ।

ସର୍ପ ପୂଜା କେବଳ ଭାରତରେ ସୀମାବଦ୍ଧ ନୁହେଁ । ଏହା ଅଷ୍ଟ୍ରେଲିଆର ଉତ୍ତର କେନ୍ଦ୍ରାଞ୍ଚଳର 'ୱ୍ୟାରାମୁଙ୍ଗା' ନାମକ ଏକ ଜାତି ଦ୍ୱାରା ପୂଜିତ । ଏମାନେ 'ଉଲୁଙ୍କା' ( Wollunqua ) ନାମକ ଏକ ସର୍ପକୁ (ଯିଏ କି ସବୁ ସାପଙ୍କର ଜନକ) ପୂଜା କରନ୍ତି । ଏହି ସର୍ପ ପାଣି ଗାତ ମଧ୍ୟରେ ବାସକରେ ଏବଂ ମନୁଷ୍ୟଙ୍କୁ ମାରିଦେଇ ପାରେ । ଏଣୁ ଏହାର ଉଦ୍ଦେଶ୍ୟରେ ପ୍ରାର୍ଥନା ହୁଏ ଓ ଏହାକୁ ସନ୍ତୁଷ୍ଟ କରାଯାଏ । ଉତ୍ତର, କେନ୍ଦ୍ର ଓ ଦକ୍ଷିଣ ଆମେରିକାରେ ବାସକରୁଥିବା ଆମେରିକୀୟ ଓ ଭାରତୀୟ ଲୋକମାନେ ଖ୍ରୀଷ୍ଟିୟାନ୍ ଧର୍ମ ସେଠାରେ ପ୍ରସାରିତ ହେବା ପୂର୍ବରୁ ସ୍ଥାନୀୟ ସର୍ପମାନଙ୍କୁ ପୂଜା କରୁଥିଲେ । ଏପରିକି ସର୍ପବେଦୀ ଓ ମନ୍ଦିରମାନଙ୍କରେ ଜୀଅନ୍ତା ସାପମାନଙ୍କୁ ରଖାଯାଇ ତାଙ୍କୁ ମଣିଷ ମାଂସ ଖାଇବାକୁ ଦିଆ ଯାଉଥିଲା । ମେଲାନେସିଆର ଡାୱାକ୍ ( Dawaks ) ମାନେ ବେଳେବେଳେ ସର୍ପମାନଙ୍କୁ ଭୂତ ବା ପ୍ରେତର ପ୍ରତୀକ ଭାବେ ପୂଜା କରନ୍ତି । ଚୀନ ଧର୍ମରେ ଅନ୍ୟ ଜନ୍ତୁମାନଙ୍କ ପରି ସାପମାନଙ୍କ ଉଦ୍ଦେଶ୍ୟରେ ମନ୍ଦିରସବୁ ନିର୍ମିତ ହୋଇଥିଲା । ପ୍ରାଚୀନ ଶାସ୍ତ୍ରରେ ଡେଣାଯୁକ୍ତ ଅଗ୍ନିପରି ଉତ୍ତପ୍ତ-ନିଃଶ୍ୱାସ ଛାଡୁଥିବା ଜନ୍ତୁ ଡ୍ରାଗନ ( Dragon ) କୁ କେନ୍ଦ୍ର କରି ବହୁ ଗପ ଶୁଣାଯାଏ । କୌତୂହଳର କଥା ଯେ ଚୀନ୍ ପରିବ୍ରାଜକ ହୁଏନସାଂ ଲେଖିଛନ୍ତି କାଶ୍ମୀର ଗୋଟିଏ ଡ୍ରାଗନ୍ ଦ୍ୱାରା ସୁରକ୍ଷିତ ଥିଲା । ମିଶର ଦେଶରେ ଏହି ସର୍ପ ପୂଜା ଅତି ପ୍ରାଚୀନ କାଳରୁ ଚଳି ଆସୁଅଛି । ଏହା ସବୁ ପୂଜା ଭିତରେ ଶୀର୍ଷସ୍ଥାନ ଅଧିକାର କରିଅଛି । ସାପର ମୂର୍ତ୍ତି ଇଜିପଟ୍ ଇତିହାସରେ ସଂସ୍କୃତିର ପ୍ରତୀକ । ମିଶର ଓ ଗ୍ରୀସ୍‌ରେ ଜୀଅନ୍ତା ସର୍ପ-ମାନଙ୍କୁ ବେଦୀରେ ରଖି ଯଥାମତ ପୂଜା କରାଯାଏ ଓ ସେମାନଙ୍କୁ ଫଳ, କ୍ଷୀର ଓ ମହୁ ଦିଆଯାଏ । ଏପରିକି ଆଜକାଲି 'କାଏରୋ'ରେ ମଧ୍ୟ ପ୍ରତ୍ୟେକ ଲୋକ ବିଶ୍ୱାସ କରନ୍ତି ଯେ ତାଙ୍କର ପ୍ରତ୍ୟେକଙ୍କ ଘରକୁ ଏହି ସାପରୂପରେ ଥିବା ଦେବତାମାନେ ରକ୍ଷା କରିଛନ୍ତି । 'କାଲିକଟ୍' ଠାରେ ଥିବା ଗୋଟିଏ ସର୍ପ ମନ୍ଦିରରେ କେତେକ ଜୀଅନ୍ତା ନାଗସାପ ଅଛନ୍ତି ଯେଉଁମାନଙ୍କୁ ପୁରୋହିତ ଓ ପୂଜକମାନେ ଖାଇବାକୁ ଦିଅନ୍ତି । ମହୀଶୂର ଏବଂ ମାନ୍ଦ୍ରାଜ ନିକଟବର୍ତ୍ତୀ ଭାଇସନ୍‌ପାଡ଼ି (Vaisanpadi) ଠାରେ ପ୍ରତି ରବିବାର ଦିନ ସେହି ମନ୍ଦିର ହତାରେ ଥିବା ସାପମାନଙ୍କୁ ଦର୍ଶନ କରିବା

ଆଶାରେ ବହୁଯାତ୍ରୀ ସମବେତ ହୁଅନ୍ତି । ମଧ୍ୟପ୍ରଦେଶର ଭଣ୍ଡକ (Bhandak) ମଣିପୁର, ସମ୍ବଲପୁର ଏବଂ ରାଜମହେନ୍ଦ୍ରୀରେ ପ୍ରଭୃତି ସାଧାରଣ ଉତ୍ସବ ସମୟରେ ସର୍ପମାନେ ମନ୍ଦିରରେ ଦେଖାଯାନ୍ତି । ପ୍ରାୟ ଏକ ମାଇଲ ବ୍ୟାସାର୍ଦ୍ଧ ମଧ୍ୟରେ ତ୍ରାଭଙ୍କୋରରେ ସର୍ପ ଦଂଶନ ନିଷ୍ଫଳ ହୋଇଥାଏ । ଅତି ପ୍ରାଚୀନ ମନ୍ଦିର ବିଳାସପୁରରେ ଥିବା ମୂର୍ତ୍ତି ହେଉଛି ଗୋଟିଏ ନାଗସର୍ପ ।

ଜୁଲୁମାନେ ଓ ମାଡାଗାସ୍କାରର ଲୋକମାନେ ବିଶ୍ୱାସ କରନ୍ତି ଯେ ସାପମାନେ ପୂର୍ବପୁରୁଷଙ୍କ ଦେହାତ୍ମ ଆତ୍ମାର ବିଶ୍ରାମସ୍ଥଳୀ । ଏହି ଦୃଷ୍ଟିରୁ ଏମାନଙ୍କୁ ଏଠାରେ ନାନାପ୍ରକାର ବସ୍ତୁ ଅର୍ପଣ କରାଯାଏ । ମାଲଏସିଆରେ ଥିବା ସର୍ପମନ୍ଦିରରେ ଜୀଅନ୍ତା ବିଷଧର କଳା ଏବଂ ହଳଦିଆ ବର୍ଣ୍ଣ ଓ ଲାଲ ଜିହ୍ୱାଯୁକ୍ତ ବଡ଼ ବଡ଼ ସାପ ଗଛ-ଡାଳ ମାନଙ୍କରେ ଥାଆନ୍ତି । ପ୍ରାର୍ଥନା ଟେବୁଲଠାରୁ ଆରମ୍ଭ କରି ଅଗଣା ଫାଟକ ପର୍ଯ୍ୟନ୍ତ ସର୍ବତ୍ର ଏମାନେ ଦେଖାଯାଆନ୍ତି । ଲୋକଙ୍କର ବିଶ୍ୱାସ ଯେ ଯେଉଁଠାରେ ଦେବତାଙ୍କୁ ଆହ୍ୱାନ କରାଯାଏ ସେଠାରେ ସର୍ପମାନେ ଆପେ ଆପେ ବାହାରି ଆସି ସେହି ଦେବତାଙ୍କ ନିକଟରେ ପହଞ୍ଚନ୍ତି । ସେମାନଙ୍କୁ ପୂଜା କରାଯାଏ ନାହିଁ; କିନ୍ତୁ ସେମାନଙ୍କୁ ଭକ୍ତି ଓ ସମ୍ମାନ ଦେଖାଯାଏ । ରାତିରେ ସେମାନେ ବେଶି ଶକ୍ତିଶାଳୀ; ତେଣୁ ସେମାନଙ୍କୁ ରାତିରେ କୁକୁଡ଼ାଅଣ୍ଡା ଓ ଅନ୍ୟାନ୍ୟ ଭଲ ଜିନିଷ ପୂଜକ-ମାନେ ଦେଇ ଆସନ୍ତି ।

[ ସୁନୀତା ଆପ୍ତେଙ୍କ ଲିଖିତ ଇଂରେଜୀ ଲେଖାର ( Femina, 15th August 75 ) ର ମର୍ମାନୁବାଦ ]



# ଗହ୍ମାପର୍ବ

ଗହ୍ମା କୃଷି ସହାୟକ ଗୋ-ଦେବତା ପୂଜାମୂଳକ ପର୍ବ । ଓଡ଼ିଶାରେ ବାର ମାସରେ ତେର ପର୍ବ ପାଳିତ ହେଉଥିବାର ପ୍ରସିଦ୍ଧି ରହିଥିଲେ ହେଁ ଅନ୍ୟାନ୍ୟ ବହୁ ଗୌଣ ପର୍ବପର୍ବାଣି ଜନଜୀବନକୁ ପ୍ରଭାବିତ କରିଆସୁଛି । ଗହ୍ମାପର୍ବ ସେହିପରି ଗୋଟିଏ ବହୁ ସ୍ମୃତି-ବହୁଳ ଲୋକପ୍ରିୟ ପର୍ବ । ଗୋ-ମହିଷାଦି ପୂଜନ ବିଧି ଏଥିରେ ମୁଖ୍ୟ । ହିନ୍ଦୁଶାସ୍ତ୍ରରେ ଯେଉଁ ସପ୍ତମାତୃକା ନାମ ଦେଖାଯାଏ ତନ୍ମଧ୍ୟରେ ଗୋ-ମାତା ଅନ୍ୟତମ ।—

ଆଦୌ ମାତା, ଗୁରୁ-ପତ୍ନୀ, ବ୍ରାହ୍ମଣୀ ରାଜପତ୍ନିକା
ଧେନୁର୍ଧାତ୍ରୀ ତଥା ପୃଥ୍ୱୀ ସପ୍ତୈତେ ମାତରଃ ସ୍ମୃତାଃ’’

ଅର୍ଥାତ୍ ଜନ୍ମଦାତ୍ରୀ ମା, ଗୁରୁପତ୍ନୀ, ବ୍ରାହ୍ମଣୀ, ରାଜପତ୍ନୀ, ଗୋ-ମାତା, ଧାତ୍ରୀ ଏବଂ ପୃଥିବୀ ଏହି ସାତ ଜଣ ହିନ୍ଦୁର ମାତା ରୂପେ କଳ୍ପିତା । ସେହି ଗୋ-ମାତା ସମ୍ବନ୍ଧୀୟ ଆଲୋଚନା ପୂର୍ବକ ଏହି ପର୍ବ ସହିତ ଜଡ଼ିତ ଥିବା ବଳଭଦ୍ର ଜନ୍ମ ଓ ସାର୍ବଜନୀନ ରକ୍ଷୀ ବନ୍ଧନ ଉତ୍ସବ ସମ୍ପର୍କୀୟ କ୍ଷୁଦ୍ର ଆଲୋଚନା ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

ଗୋ-ଜାତି ଭାରତୀୟ ଜୀବନର ପ୍ରାଣକେନ୍ଦ୍ର । ପ୍ରାଚୀନ ବେଦ ଉପନିଷଦରେ ମଧ୍ୟ ଗୋ-ଜାତିର ମହତ୍ତ୍ୱ ଶତମୁଖରେ କୀର୍ତ୍ତିତ । ପ୍ରତ୍ୟେକ ଶୁଭକାର୍ଯ୍ୟ ଓ ସାମାଜିକ ଅନୁଷ୍ଠାନ ବିଧିରେ ଉଚ୍ଚାରିତ ହେଉଥିବା ‘‘ଶାନ୍ତି’’ ମନ୍ତ୍ରରେ ମଧ୍ୟ ଗୋ-ଜାତିର ମଙ୍ଗଳ ବାର୍ତ୍ତା ଘୋଷିତ । ଯଥା—

‘‘ସ୍ୱସ୍ତି ପ୍ରଜାଭ୍ୟଃ ପରିପାଳୟନ୍ତୁ
ନ୍ୟାୟ୍ୟେନ ମାର୍ଗେଣ ମହୀଂ ମହୀଶାଃ
ଗୋ ବ୍ରାହ୍ମଣେଭ୍ୟଃ ଶୁଭମସ୍ତୁ ନିତ୍ୟଂ
ଲୋକାଃ ସମସ୍ତାଃ ସୁଖିନୋ ଭବନ୍ତୁ ।’’

ଏଠାରେ ରାଜ୍ୟର ସୁଶାସନ ନ୍ୟାୟ ଓ ଗୋ-ବ୍ରାହ୍ମଣଙ୍କର ମଙ୍ଗଳ ସହ ଜନସାଧାରଣଙ୍କର ସୁଖମୟ ଜୀବନରେ ଶାନ୍ତିର ପରିକଳ୍ପନା କରାଯାଇଛି । ଋକ୍ ବେଦରେ ମଧ୍ୟ ଗୋ-ଧନ ସହ ହିନ୍ଦୁ ସଂସ୍କୃତି କପରି ଏକସୂତ୍ରରେ ଗ୍ରଥିତ ଓ ଗୋ-ଦୁଗ୍ଧର କପରି ଅପାର ଶକ୍ତି ରହିଛି ତାହା ନିମ୍ନୋଦ୍ଧୃତରୁ ଜଣାଯାଏ "ଓଁ ମଧୁବାତା ଋତାୟତେ, ମଧୁ କ୍ଷରନ୍ତି ସିନ୍ଧବଃ × × × × ମାଧ୍ୱୀର୍ଗାବୋ ଭବନ୍ତୁନଃ"— ଅର୍ଥାତ୍ ମଧୁର ବାୟୁ ପ୍ରବାହିତ ହେଉ, ସମୁଦ୍ରମାନେ ମଧୁର ଜଳ ଦିଅନ୍ତୁ ଓ ଆମକୁ ଗାଈମାନେ ମଧୁର ଦୁଗ୍ଧ ଦିଅନ୍ତୁ । ରାମାୟଣ ଓ ମହାଭାରତ ଯୁଗରେ ମଧ୍ୟ ଗୋ-ପାଳନ ନିଷ୍ଠାର ସହ ଅନୁଷ୍ଠିତ ହୋଇ ଗୋ-ବଂଶ ବୃଦ୍ଧି ସହ ଗୋ-ଧନର ରକ୍ଷଣାବେକ୍ଷଣ ବିଗପ୍ରତି ତତ୍କାଳୀନ ଆର୍ଯ୍ୟ ପରିବାର ଏକ ସ୍ୱତନ୍ତ୍ର ସ୍ଥାନ ଦେଉଥିଲେ । ପୁରାଣରେ ଅଭୀଷ୍ଟ ଫଳପ୍ରଦା ସମୁଦ୍ର ମନ୍ଥନ ଜାତ କାମଧେନୁର ବିସ୍ମୟକର ବହୁମୁଖୀ ଚମତ୍କାରିତା ସର୍ବଜନବିଦିତ । ଏକ ଗାଭୀକୁ କେନ୍ଦ୍ରକରି ଗଢ଼ି-ଉଠିଥିବା ବଶିଷ୍ଠ ବିଶ୍ୱାମିତ୍ର କନ୍ଦଳ ପୁରାଣ ପୃଷ୍ଠାରେ ଲିପିବଦ୍ଧ । ମହର୍ଷି ବଶିଷ୍ଠଙ୍କ ବାଣୀ ଏ ସମ୍ପର୍କରେ ଉଲ୍ଲେଖଯୋଗ୍ୟ । "ସମସ୍ତ ଦେବଦେବୀ ଆରାଧନା, ସମସ୍ତ ଗ୍ରହ ନକ୍ଷତ୍ର ପୂଜା ଓ ସମସ୍ତ ତୀର୍ଥାଦି ପର୍ଯ୍ୟଟନରେ ଯେଉଁ ଫଳ ହୁଏ ଏକମାତ୍ର ଗୋ-ସେବାରେ ତତୋଽଧିକ ଫଳ ଲଭ-ହୁଏ । ଯେଉଁ ଗୃହ ଗାଭୀଶୂନ୍ୟ, ଯେଉଁଠାରେ ଗୋ-ସେବା ନାହିଁ ସେଠାରେ ସମସ୍ତ ଐଶ୍ୱର୍ଯ୍ୟ ନିଷ୍ଫଳ ଏବଂ ସମସ୍ତ ପୁଣ୍ୟ ବିଫଳ ।

ଗୋ-ମାତା ମୋର ମୁଁ ତାହାର
ନାହିଁ ଉଭୟ ପରାପର
ଗୋ-ହିତେ ଜଗତ କଲ୍ୟାଣ
ଗୋ-ଜାତି ମାନବର ପ୍ରାଣ

(ମହାପୁରୁଷ ପରିଚୟ ଓ ବାଣୀ ନିମାଇଁ ଚରଣ ଦାସ)

ପୁରାଣରେ ଏହି ଅଭୀଷ୍ଟ ପ୍ରଦାୟିନୀ ବହୁ କାମଧେନୁଙ୍କ ନାମ ଶୁଣାଯାଏ । ଜମଦଗ୍ନିଙ୍କ କାମଧେନୁର ନାମ 'ନନ୍ଦା', ଅଙ୍ଗିରାଙ୍କର 'ସୁନନ୍ଦା', ଭରଦ୍ୱାଜଙ୍କ 'ସୁରଭୀ', କଶ୍ୟପଙ୍କର 'ସୁଶୀଳା' ଓ ବଶିଷ୍ଠଙ୍କର 'ନନ୍ଦିନୀ' ବା ଶବଳା । ଏହି ଗଳ୍ପ ପୃଷ୍ଠିମା ବାସ୍ତବିକ ଗୋ-ମା

(ଗୋ-ମାତା) ପୂର୍ଣ୍ଣିମା । ହୋଲ, ଗୋ 'ଅଷ୍ଟମୀ' ଓ ଚନ୍ଦ୍ରା ପୂର୍ଣ୍ଣମୀରେ ମଧ୍ଯ ହିନ୍ଦୁ ଏହି ପୂର୍ବ ସଂସ୍କୃତି ଅନୁସରଣରେ ଗୋ-ମାତାର ପୂଜା କରି ଆସୁଛୁ । ଦ୍ୱାପରଯୁଗର କୃଷ୍ଣ ଗୋପାଳ ଗୃହରେ ଲାଳିତପାଳିତ ହୋଇ ଗୋବିନ୍ଦ ନାମ ଧାରଣ କରିବା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି 'ଗୋବିନ୍ଦ' ନାମ ( ଗୋ + ବିଦ୍ = ଯେ ଗୋ ବିଷୟରେ ଅଭିଜ୍ଞ କିମ୍ବା ବିନ୍ଦତି = ଲାଭ କରିବା ଯେ ଗୋ ସମ୍ପଦ ଲାଭ କରିଥିଲେ) ମୂଳରେ ହିଁ କୃଷ୍ଣଙ୍କ ଜନ୍ମ ଗୋବିନ୍ଦ ଗୋକୁଳ ସୁନ୍ଦର ଆଖ୍ୟା ଧାରଣ ଯୁକ୍ତିଯୁକ୍ତ ମନେହୁଏ । ଗୋପନଗର ବା ଗୋପପୁର ଗୋପାଙ୍ଗନା ଗୋପ ବାଳକ ଏସବୁ ମୂଳରେ ମୂଳତଃ 'ଗୋ' ପ୍ରାଧାନ୍ୟ ସୂଚିତ । ସେ ପୁଣି ଗୋବର୍ଦ୍ଧନ ଗିରି ଟେକା' ଦୀନ ଇ ଦାସଙ୍କ ଗୋପୀଭାଷା ଉକ୍ତି—

'ଇନ୍ଦ୍ର ହାରିଣ ଶରଣ ପଶିଲ<br>
ଗୋପେ 'ଗୋବିନ୍ଦ' ନାମ ଦେଇଗଲା'

ମୂଳରେ ଇନ୍ଦ୍ରଙ୍କର ପରାଜୟ ପଛ କୃଷ୍ଣଙ୍କୁ ଗୋବିନ୍ଦ (cow expert) ରୂପେ ସ୍ୱୀକୃତ ପ୍ରଦାନ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ଲେଖକ ପଦ୍ମଚରଣ ପଟ୍ଟନାୟକ ଯଥାର୍ଥରେ ଲେଖିଛନ୍ତି ।— ଶ୍ରୀକୃଷ୍ଣ ପ୍ରଥମେ ଗୋ-ମାହାତ୍ମ୍ୟ ଲୋକଙ୍କୁ ବୁଝାଇଥିଲେ । ତୁଳସୀର ପରମ ଉପକାରିତା ତାଙ୍କରି ଦ୍ୱାରା ପ୍ରଚାରିତ ହୋଇଥିଲା । ଜାନ୍ତବ ରାଜ୍ୟର ପ୍ରତୀକ ସ୍ୱରୂପ ଗୋରୁକୁ ଓ ଉଦ୍ଭିଦ ରାଜ୍ୟର ତୁଳସୀକୁ ଶ୍ରୀକୃଷ୍ଣ ବାଛିଥିଲେ । ମନୁଷ୍ୟ ସହିତ ସେମାନଙ୍କର ଯୋଗସୂତ୍ର (leison) ସ୍ଥାପନ କରିବାକୁ"···
( ହିନ୍ଦୁ ଆଗ୍ରହରେ ବଞ୍ଚିର )

ଓଡ଼ିଶାର ଗୋଟିଏ ଆଞ୍ଚଳିକ ପ୍ରବାଦ ଅଛି—ଷଣ୍ଢ ମହାଦେବଙ୍କର, ଗାଈ ସହଦେବଙ୍କର, ବଳଦ ଖାକୁଡ଼ା କାହାର ନୁହେଁ । ଶିବ ପ୍ରିୟ ବାହନ ବୃଷଭ । ସହଦେବ ଗୋପାଳକ ଓ ରକ୍ଷକ । ଏହି ସମ୍ବନ୍ଧରେ ଓଡ଼ିଶାର ଆଦିକବି ସାରଳାଦାସଙ୍କ ରଚିତ ମହାଭାରତ ବିରାଟ ପର୍ବର ସ୍ମୃତି ମନରେ ଆସେ । ପଞ୍ଚପାଣ୍ଡବଙ୍କର ଗୁପ୍ତ ବେଶରେ ବିରାଟ ନଗରୀକୁ ଆଗମନ ବଡ଼ କୌତୂହଳ ଉଦ୍ଦୀପକ । ଯୁଧିଷ୍ଠିର ସଭାପଣ୍ଡା, ଭୀମ ସୂପକାର, ଅର୍ଜୁନ ତ୍ରୈଲୋକ୍ୟମୋହିନୀ ବୃହନ୍ନଳା, ନକୁଳ ଅଶ୍ୱପାଳକ ଓ ଶେଷରେ ସହଦେବ ତନ୍ତ୍ରୀପାଳ ନାମଧେୟ

ଗୋପାଳ ରୂପେ ପ୍ରବେଶ କରିଛନ୍ତି । ସତେ ଯେପରି ସହଦେବ ଗୋବର୍ଦ୍ଧନଙ୍କର ଦ୍ୱିତୀୟ ଅବତାର ସାରଳାଦାସଙ୍କ ଲେଖାରେ ଗୋପାଳ ସହଦେବଙ୍କ ରୂପ ଅତ୍ୟନ୍ତ ଉପଭୋଗ୍ୟ ।

କାଛଟି ବସନ ବିନା ନ ଜାଣନ୍ତି କିଛି
ଗୋ-ରସ ଖାଆନ୍ତି ସର ଭୁଞ୍ଜନ୍ତି ସେ ବାଛି ।
ଲବଣ ଅଧାମ ପୁଣି ସୁମଧୁର ଛେନା
ଉବୁରିଲେ ଏହାଙ୍କଠୁ ଅନ୍ୟ ଖାଏ ସିନା !
ବୁଲିବନ୍ତି ଲଉଡ଼ି ସେ ପଗୁରଣ ଭଙ୍ଗେ
ନ ଚିନ୍ତି ଖେମଟା ନାଟ କ୍ରୀଡ଼ା ସଙ୍ଗେ

( ବିରାଟ ପର୍ବ )

ସେ ଗୋପାଳ ସହଦେବ ପୁଣି ସମସ୍ତ ପ୍ରକାର ଗୋ-ବ୍ୟାଧିଚିକିତ୍ସିଙ୍କ । ଅସାଧ୍ୟ ଗୋରୁଙ୍କୁ ଅକ୍ଳେଶରେ ସାଧ୍ୟ କରିବାରେ ତାଙ୍କର ନିପୁଣତା ରହିଛି । ଗୋ-ପାଳନରେ ସେ ଯେପରି ଦକ୍ଷ ଗୋ-ବର୍ଦ୍ଧନରେ ସେହିପରି ଅଦ୍ୱିତୀୟ । ଗୋରୁଙ୍କୁ ଧରୁଥିବା ଶତବ୍ୟାଧି ସମ୍ବନ୍ଧରେ ସେ ପୂର୍ଣ୍ଣ ଅବହିତ ।

ଗୁଳାରୋଗ, ଖୁରରୋଗ, ଶାବେଳୀ, ମଣ୍ଡୁକୀ
ମଜ୍ଜନାଗଳାର, ଶୋଥ, ଧୋକଟ, ଖିରଣି
ଭୋଗ, ତାଳୁକା ଛୁନାଳୀ ଗାତାଳକ ଖୋର
କାଙ୍କୋଳା ଗ୍ରନ୍ଥିକ ଉର୍ଦ୍ଧ୍ୱବାହୁ ପରଜର

× × ×

ଏହିରୂପେ ଗୋ-ଧନକୁ ଅଛି ଶତେ ବ୍ୟାଧି
ମୋର ଆଜ୍ଞାରେ ସେମାନେ ନ ପାରନ୍ତି ଭେଦି ।

ବିରାଟ ପର୍ବରେ ବର୍ଣ୍ଣିତ ପୃଥୁନା ଗାଈ ଉପାଖ୍ୟାନ ଏ ସମ୍ପର୍କରେ ଅନୁସନ୍ଧେୟ । ଜଗନ୍ନାଥଙ୍କ 'ଭାଗବତ' ରେ ମଧ୍ୟ ଗୋ-ଉନ୍ନୟନର ମାହାତ୍ମ୍ୟ ବର୍ଣ୍ଣନା ସଙ୍ଗେ ସଙ୍ଗେ ଗୋ-ଖାଦ୍ୟ ଘାସର ଉତ୍କର୍ଷତା ପ୍ରତିପାଦିତ ହୋଇଛି ।

"ହତ ହୋଇଲା ତୃଣମୟ । ବାଟର ନ ମିଳଇ ଥୟ
ଗାଈ ଏ ସ୍ତନ ଭର ହୋଇ । କର୍ଦ୍ଦମେ ନ ପାରଇ ଯାଇ"

ରାଧାନାଥ ଯୁଗର ପ୍ରକୃତି କବି ଗଙ୍ଗାଧର ମେହେର ମଧ୍ୟ ତାଙ୍କର କବିତା-ମାଳାରେ 'ଗୋ-ବିଳାପ' ଓ 'କୃଷକ ସଙ୍ଗୀତ' ରେ ଗୋ-ରକ୍ଷଣ ଶୀର୍ଷକ ଦୁଇଟି ଦୀର୍ଘ କବିତା ଲେଖି ଗୋ-ରକ୍ଷଣ ଗୋ-ବର୍ଦ୍ଧନର ଉପାୟମାନ ଅତି ସରଳ ତରଳ ପଦାବଳୀ ମାଧ୍ୟମରେ ଉଲ୍ଲେଖ କରି ଗୋ-ମାହାତ୍ମ୍ୟ କୀର୍ତ୍ତନ କରିଅଛନ୍ତି । ( ପରବର୍ତ୍ତୀ ପ୍ରବନ୍ଧ ଦ୍ରଷ୍ଟବ୍ୟ )

ସତ୍ୟବାଦୀ ଯୁଗର ଶ୍ରେଷ୍ଠ କବି ଗୋପବନ୍ଧୁଙ୍କ 'ଗୋ-ମାହାତ୍ମ୍ୟ' ପୁସ୍ତିକା ଆଧୁନିକ ପ୍ରତି ହିନ୍ଦୁ ଘରଣୀୟର ପ୍ରାତଃସ୍ମରଣୀୟ ପୁରାଣ । ତହିଁ ପ୍ରଣ୍ଣିମା ତିଥିରେ ଗୋ-ପାଳନ ତଥା ଗୋ-ସେବା କରଣ ଯେ କେତେ ମହାମାୟ ତାହା ତାଙ୍କର ନମ୍ର ଉଚ୍ଚାରଣରୁ ବେଶ ସ୍ପଷ୍ଟ । କବି ଲେଖିଛନ୍ତି ।

"ବୁଝି ଗୋ-ଜାତି ଉପକାର । ପାଳିବ ତାଙ୍କୁ ନିରନ୍ତର"

× × × × ×

ଗୋ-ସେବା କର ଘରେ ଘରେ । ଗୋ-ହିତ ବିଚାର ମନରେ ।

ଓଡ଼ିଶାର ସୁପରିଚିତ ନବାକ୍ଷରୀ ବୃତ୍ତରେ ଗୋପବନ୍ଧୁଙ୍କ ଗୋ-ମାହାତ୍ମ୍ୟ ବର୍ଣ୍ଣନାରେ ଗୋ-ଜାତିର ଅର୍ଥନୈତିକ ସ୍ଥିତି ଗୁରୁ ଶିଷ୍ୟ ପ୍ରଶ୍ନୋତ୍ତର ଛଳରେ ଅତି ରସୋତ୍ତୀର୍ଣ୍ଣ ଶୈଳୀରେ ଲିଖିତ ।

"ଯାହାର ଶୃଙ୍ଗୁ ପାଦଯାଏ । ଅଙ୍ଗେ ବସନ୍ତି ଦେବତାଏ
ଗୋରୁର ପ୍ରତି ଲୋମ କୂପେ । ଦେବେ ବସନ୍ତି ନାନା ରୂପେ"
ବହୁ ତପସ୍ୟା ଫଳେ ଗାଈ । ଅଛନ୍ତି ଏ ପ୍ରଭାବ ଲଭି ।

ଏହା ଠିକ୍ ପୂର୍ବ ବର୍ଣ୍ଣିତ ଗଙ୍ଗାଧର ମେହେରଙ୍କ 'ଗୋ-ବିଳାପ'ର ଭାବସାମ୍ୟ ମାତ୍ର—

"ପୃଷ୍ଠେ ବ୍ରହ୍ମା ଗଳେ ବିଷ୍ଣୁ ମୁଖେ ରୁଦ୍ର ସ୍ଥିତଃ
ଆର୍ଯ୍ୟଋଷି ମୁଖେ ଏହା ହୁଅଇ କଥିତ"

(ଗୋ-ବିଳାପ-ଗଙ୍ଗାଧର)

ଏହି ଗୋ-ଜାତିର ବାଧକ ଥିଲା 'ଗହ୍ଲା' ନାମକ ଏକ କୁଗ୍ରହ, "ଭଗବାନ ବାଳ ଦେବ ତାକୁ ସଂହାର କରି ତାହାର ପୃଥ୍ୱୀମୟ ପିଣ୍ଡ ବା ବେଦୀ ଉପରେ ସ୍ୱୟଂ ବିଜୟ ଘୋଷଣାସୂଚକ ଆବିର୍ଭାବ ଉତ୍ସବ

କରଥିଲେ । ଏହି ଅଭିମତକୁ ନେଇ ଓଡ଼ିଶାର ଗ୍ରାମ ଶାସନମାନଙ୍କରେ ମୃତ୍ତିକାମୟ ବେଦୀ ନିର୍ମାଣ କରାଯାଇ ସେଠାରେ ବଳୀବର୍ଦ୍ଦ ଦେବତାଙ୍କୁ ପୂଜା କରାଯାଇଥାଏ" । ( ଶ୍ରୀ ମନ୍ଦର-ସମାଚାର ) ଏହି ବଳୀବର୍ଦ୍ଦ ଦେବତାଙ୍କୁ ବେଦୀରେ ଓ ଗାଈ ବଳଦ ମହିଷ ପ୍ରଭୃତି ଗୋଙ୍କୁ ହିନ୍ଦୁ ଘରେ ଘରେ କୃଷିକାରକ ଦେବତା ହଳ ଲଙ୍ଗଳ ବଳଭଦ୍ରଙ୍କ ପ୍ରତିନିଧି ରୂପେ ପୂଜା କରି ଆସୁଛି । ଭାରତ କୃଷିପ୍ରଧାନ ଦେଶ । ପୁଣି କୃଷିର ପ୍ରଧାନ ସହାୟକ ବଳୀବର୍ଦ୍ଦ ବା ବଳଦ । ଏଣୁ କୃଷି ସହ ନିତ୍ୟ ସମ୍ବନ୍ଧଯୁକ୍ତ ବଳଦ ଦେବତା ବା କୃଷି ଦେବତାର ପର୍ବ 'ରୂପେ ଗହ୍ମା ପର୍ବ ବନ୍ଦିତ । ଏଣୁ ଏହା ଗୋ-ମା ପୂର୍ଣ୍ଣିମା ବା 'ଗୋ-ମା' ପର୍ବ । ଭାଷାକୋଷରେ 'ଗୋ ଶବ୍ଦର ଯେଉଁ ୩୩ଟି ଅର୍ଥ ଦିଆଯାଇଛି ତନ୍ମଧ୍ୟରୁ ୫ଟି ଅର୍ଥ କେବଳ ଧେନୁ, ବଳଦ, ବୃଷ, ପଶୁ ସମ୍ପର୍କୀୟ ପୂର୍ବବର୍ଣ୍ଣିତ ଗୋବିନ୍ଦ (Cow-expert)ଙ୍କ ଅଗ୍ରଜ ବଳଭଦ୍ରଙ୍କ ଜନ୍ମ ମଧ୍ୟ ଏହି ଶ୍ରାବଣ ପୂର୍ଣ୍ଣିମା । ରାମକୃଷ୍ଣ ଉଭୟେ ଯେପରି ଏହି ଗୋ-ରକ୍ଷଣ ଓ ଗୋ-ସମ୍ବର୍ଦ୍ଧନାର ପଥପ୍ରଦର୍ଶକ । ବଳଭଦ୍ର ବଡ଼ ଠାକୁର ପୁରୁଷୋତ୍ତମ କ୍ଷେତ୍ରର ଇଷ୍ଟ ତାଙ୍କର ଜନ୍ମତିଥି ପରେ ଶ୍ରୀକୃଷ୍ଣ ଜନ୍ମୋତ୍ସବ । ଏଣୁ ଯେଉଁ ବଳଦେବ ପ୍ରତ୍ୟକ୍ଷରେ ଅନନ୍ତ ନାଗ ବା ଆଦି ଶେଷ ଏହି ଗହ୍ମା ପୂର୍ଣ୍ଣିମା ହିଁ ତାଙ୍କର ଜନ୍ମ-ଦିବସ । ଏଣୁ ଗୋ-ଜାତିର 'ଅହ୍ମା' ବା ଜୀବନଚର୍ଯ୍ୟା ବୋଲି 'ଗହ୍ମା' କେତେକଙ୍କ ଦ୍ୱାରା ନାମିତ । ପୁଣି ଅମରକୋଷରେ ବଳଭଦ୍ରଙ୍କର ଯେଉଁ ବିଭିନ୍ନ ୧୭ଟି ନାମ ଅଛି ତନ୍ମଧ୍ୟରୁ ୪ଟି ନାମ ତାଙ୍କର କୃଷି ସହ ସଂଯୁକ୍ତ । ଏଣୁ ଏହି 'ଗହ୍ମା' ନାମକ କୃଷି ବା ଗୋ-ଅନୁଷ୍ଠାନର ସଂସ୍କାର ଉତ୍ସବରେ ହଳ ମୂଷଳ-ହସ୍ତ ବଳଭଦ୍ରଙ୍କର ଜନ୍ମୋତ୍ସବ ପାଳନ କରିବା ସଙ୍ଗେ ସଙ୍ଗେ ହିନ୍ଦୁ ନରନାରୀ ଗାଁ ଗହଳରେ ଏ ଦିନ ନାନାଦି ସୁସ୍ୱାଦୁ ପିଠାପଣା ପ୍ରସ୍ତୁତ କରି ବଳଦଙ୍କୁ ଗାଧୋଇ, ତା ଉପରେ ହଳଦୀ ଲଗାଇ, ହଳଦୀ ପାଣିରେ ପାଦ ଧୋଇ ତାର ସତ୍କାର କରନ୍ତି । କାରଣ ସେ ଗୃହୀର ପୋଷଣ-ହାରୀ ପୁଅ । ଘରେ ଘରେ ଆନନ୍ଦର କଲରୋଳ । ଘରଦ୍ୱାର ବାରି ଅଗଣା ସବୁ ଲିପାପୋଛା ମୋଟ ହଳଦୀରେ ଘର ଦ୍ୱାର ଝଲସେ । ୧୫ ଦିନ ଆଗରୁ ସାଇତା ବଛା ବଛା ମୋଟା ସଢ଼େଇଯୁକ୍ତ ପାକଳ ନଡ଼ିଆ ସବୁ ଗହ୍ମା ପର୍ବରେ ଲଢ଼େଇପାଇଁ ବାହାରି ଆସେ । ଗାଁ ଦାଣ୍ଡ ଉଛୁଳେ । ନଡ଼ିଆ ଲଢ଼େଇ ହୁଏ । ଏ ପ୍ରଥା ପୁଣି 'ଦେଶକେ ଫାଙ୍କ୍ ନଈକେ ବାଙ୍କ'

ପର । ସକାଳ ପ୍ରହରରୁ ବ୍ରାହ୍ମଣ ଘଇନା ଦଳଘାମଖା ପଇତା ଆଣି ମନ୍ତ୍ର ଉଚ୍ଚାରଣ କରି ପିନ୍ଧାଇ ଦଅନ୍ତି । ଏ ଦିନଟି ପାଇଁ ସମସ୍ତେ ଜଣେ ଜଣେ ଉପବୀତଧାରୀ ବ୍ରାହ୍ମଣ ହୁଅନ୍ତି । ଜଗନ୍ନାଥ ଧାମରେ 'ଝୁଲଣ ଯାତ୍ରା' ଉତ୍ସବମୁଖର ହୋଇଉଠେ । ମଦନ ସୁନ୍ଦର ଶ୍ରୀ ଦେବୀଙ୍କ ସହ ପ୍ରାବୃଟ୍ ଦୋଳଉତ୍ସବ । ଝୁଲଣରେ ରାସ ରଚନା କରନ୍ତି ।

ଗହ୍ମା ପର୍ବର ଅନ୍ୟଏକ ଆକର୍ଷଣ ରାକ୍ଷୀ ବନ୍ଧନ । ଗୋ-ମହିଷାଦି "ପୂଜା ଓ ଉତ୍ଥାନଂ ବଳଦେବସ୍ୟ" ଛଡ଼ା ରାକ୍ଷୀବନ୍ଧନରେ ମଧ୍ୟ ଉକ୍ତ ପର୍ବର ବିଶେଷତ୍ୱ ନିହିତ । ପାଞ୍ଜିମତେ ମଧ୍ୟ ଏହା ସମସ୍ତଙ୍କ ପାଇଁ ଶୁଭ । 'ଚତୋଽପରାହ୍ନ' ସମୟେ ରକ୍ଷା ପଟ୍ଟଳୀକା ଶୁଭଂ'ରୁ ଜଣାପଡ଼େ ଅପରାହ୍ନ ସମୟରେ ରକ୍ଷା ପଟ୍ଟାଳିକା ଶୁଭ । ଅନ୍ୟ ଶାସ୍ତ୍ରରେ ଲେଖାଅଛି- ଏ ଦିନ ମତିମାନ୍ ମାନବ ଶୁଦ୍ଧଭାବରେ ସ୍ନାନକରି ପିତୃସ୍ମରଣ କରିବ ।

ଗୃହଦେଶକୁ ଗୋ-ମୟ ଦ୍ୱାରା ପରିଶୀତ କରିବା ପରେ ନାନା ରଙ୍ଗର ତନ୍ତୁ ବା ଫୁଲହାର ନିଜ ଦେହରେ ତାହା ବନ୍ଧନ କରିବ । ଯଥା :—

ବିଚିତ୍ର ତନ୍ତୁ ଗ୍ରଥିତାଂ ସ୍ଥାପୟେଦ୍ ଭାଜନୋ ପରି
କାର୍ଯ୍ୟ ଗୃହସ୍ୟ ରକ୍ଷା ଗୋ-ମୟୀ ଗ୍ରଥିତ ସବୁତ୍ତମଣ୍ଡ ତୈଃ

ରାକ୍ଷୀ ବନ୍ଧନର ମର୍ମିକ ଅର୍ଥ ରକ୍ଷା ବନ୍ଧନ । ଏହା ପରେ ପରେ ଆସୁଥିବା ରକ୍ଷାପଞ୍ଚମୀ ସହ ଏହାର ମଧ୍ୟ ସମ୍ପର୍କ ଅଛି । କାରଣ ଏହି ରାକ୍ଷୀ ବନ୍ଧନ ବା ଗହ୍ମାପର୍ବର ଗହ୍ମା ବେଦିକାର ମୃତ୍ତିକା ରକ୍ଷାପଞ୍ଚମୀ ତିଥିରେ ଦ୍ୱାରଦେଶରେ ଲେପିତ ହୋଇ ରକ୍ଷାକରଣ ମନ୍ତ୍ର ବୋଲାଯାଏ, ଯଥା" "ଘଣ୍ଟାକର୍ଣ୍ଣ ମହାବୀର ସର୍ବ ବ୍ୟାଧି ନିବାରଣଂ ଇତ୍ୟାଦି ( ଯେ କୌଣସି ପାଞ୍ଜିରେ 'ରକ୍ଷା ପଞ୍ଚମୀ' ମନ୍ତ୍ର ଦ୍ରଷ୍ଟବ୍ୟ । ଏଣୁ କୃଷି ରକ୍ଷା ସହିତ ପରିବାର ରକ୍ଷା ଏପରିକି ସକଳ ପ୍ରକାର ରକ୍ଷା ବିଧାନ ସ୍ୱରୂପ ସେହି ବଳଭଦ୍ର ମଧ୍ୟ ଏଠାରେ ପୂଜନୀୟ । ରାକ୍ଷୀ ବନ୍ଧନ ସହ ଆଉ ଏକ ପୌରାଣିକ ସ୍ମୃତି ମନେପଡ଼େ । 'ବଳୀ' ପରି ମହାଦାନୀଙ୍କୁ ଯେଉଁ ପ୍ରଭୁ ରକ୍ଷା କରିଥିଲେ ସେ ମୋତେ ମାରିଲେ ମଧ୍ୟ ମୁଁ ରକ୍ଷା ହେବି ଅର୍ଥାତ୍ ମଙ୍ଗଳମୟଙ୍କର ମାରିବା ଅର୍ଥ ମଧ୍ୟ ରକ୍ଷା କରିବା" ଏହି ଦିନ ବାମନଙ୍କୁ

ବଳିରାଜାଙ୍କର ତ୍ରିପାଦ ଭୂମି ଦାନ ଓ ପାତାଳ ଗମନ ସ୍ମୃତି ସହ ସମ୍ପର୍କ ରହିଛି । ଏଣୁ ଏହାର ପୁନଃ ସ୍ମରଣ ନିମନ୍ତେ ବ୍ରାହ୍ମଣ ରକ୍ଷାଡୋରିକ ଏହି ତିଥିରେ ସମସ୍ତଙ୍କ ହସ୍ତରେ ଲଗାଇ ଦୃଢ଼ ମନୋବଳ ସହ ଗଭୀର ଧର୍ମ ଭାବନା ତଥା ଈଶ୍ୱର ବିଶ୍ୱାସ ଜାଗ୍ରତ କରନ୍ତି । ଏହି ରାକ୍ଷୀ ଗ୍ରହଣ ବେଳେ ଭଗବାନ ତ୍ରିବିକ୍ରମଙ୍କର ନାମ ଚିନ୍ତନ ଆବଶ୍ୟକ ବୋଲି ଲେଖା ଅଛି । (ରାକ୍ଷୀବନ୍ଧନ ପର୍ଯ୍ୟାୟ ଦ୍ରଷ୍ଟବ୍ୟ )

ଶ୍ରୀ ମନ୍ଦର ସମାଗ୍ରରେ ଉଲ୍ଲେଖ ଥିବା 'ନୀତିରତ୍ନାକର'ରେ ମଧ୍ୟ ଲେଖାଅଛି—ଯେତେବେଳେ ବର୍ଷାଋତୁ ପ୍ରାରମ୍ଭ ହୁଏ ସେତେବେଳେ ରାଜାମାନେ ପୃଥିବୀକୁ ରକ୍ଷା କରିବାର ସଂକଳ୍ପ ଗ୍ରହଣ କରନ୍ତି ଓ ମନୁଷ୍ୟ-ମାନେ ଶରୀର ଓ ଗୃହାଦିକୁ ରକ୍ଷା କରିବା ନିମନ୍ତେ ଅଭିମନ୍ତ୍ରିତ ପୁଷ୍ପିକା ତନ୍ତୁ ଧାରଣ କରନ୍ତି ତେବେ ବର୍ଷେ ପର୍ଯ୍ୟନ୍ତ ପୂର୍ବପୋବାଦ ସହ ସୁଖ ପ୍ରାପ୍ତି ହୋଇଥାଏ । ଗହ୍ମାପର୍ବ ସହିତ ନିଗମାନନ୍ଦଙ୍କ ଆବିର୍ଭାବ ଉତ୍ସବ ଓ ଉତ୍କଳରେ ପ୍ରକୃତି କବି ଗଙ୍ଗାଧରଙ୍କ ଜନ୍ମଜୟନ୍ତୀ ସ୍ମୃତି ଜଡ଼ିତ ।

ବହୁ ସ୍ମୃତିଧାରକ ଗହ୍ମାପର୍ବ ଏହିପରି ଆସୁଥାଉ ଏବଂ ଭାରତୀୟମାନେ ଏହିପରି ଗୋ-ମାତାର ସେବା କରି-କୃଷି ଦେବତା ବଳୀବର୍ଦ୍ଧ ଓ ବଳଭଦ୍ରଙ୍କ ଆଶୀର୍ବାଦରେ ସବୁଜ ବିପ୍ଳବ ଜରିଆରେ ଦେଶକୁ ଶସ୍ୟଶାଳିନୀ କରି ନିଜ ନିଜ ଦେହ, ମନ ଓ ଆତ୍ମାର ରକ୍ଷା-କବଚ ଧାରଣ ପୂର୍ବକ ରାକ୍ଷୀ ବନ୍ଧନ ମଧ୍ୟରେ ମୈତ୍ରୀ ବନ୍ଧନରେ ଆବଦ୍ଧ ହୋଇ ଥାଆନ୍ତୁ ।



# ରକ୍ଷା ବନ୍ଧନ

ବିଜୟାଦଶମୀ, ଦୀପାବଳୀ ଓ ଦୋଲ ପରି 'ରକ୍ଷା ବନ୍ଧନ' ବା ରାକ୍ଷୀ ପୂର୍ଣ୍ଣିମା' ଏକ ସର୍ବଭାରତୀୟ ପର୍ବ । ବିଜୟାଦଶମୀ ବା ଦଶହରା ମୁଖ୍ୟତଃ କ୍ଷତ୍ରିୟମାନଙ୍କର କାରଣ ଏହି ପର୍ବରେ ସେମାନଙ୍କର ଅସ୍ତ୍ର-ଶସ୍ତ୍ର ସବୁ ପୂଜିତ ହୁଏ । ଗାଁ ଗାଁରେ ଧ୍ୱଜା ବସେ । କ୍ଷତ୍ରିୟବଂଶଜମାନେ ନାନାବିଧ କ୍ରୀଡ଼ାରତ ହୁଅନ୍ତି । ଦୀପାବଳୀରେ ଲକ୍ଷ୍ମୀପୂଜନ ଓ ଧନପ୍ରାପ୍ତି ଆଶା ରହିଥିବାରୁ ଏହା ବୈଶ୍ୟ ଅର୍ଥାତ୍ ବ୍ୟବସାୟୀ ଜାତିର ପର୍ବ । ଦୋଲରେ ନାନା ଅସଂଯତ ରଙ୍ଗଖେଳ, ଗୋପାଳଙ୍କ ନୃତ୍ୟ, ଆମୋଦ-ପ୍ରମୋଦରୁ ଏହା ଶୂଦ୍ର ପର୍ବ ବୋଲି କେତେକ ମତବ୍ୟକ୍ତ କରନ୍ତି । ସେହିପରି 'ରକ୍ଷା ବନ୍ଧନ' ବା 'ରାକ୍ଷୀ ବନ୍ଧନ' ବ୍ରାହ୍ମଣମାନଙ୍କର ପ୍ରଧାନ ପର୍ବ । ଆଜିକାଲି ଏହାର ଲୋକପ୍ରିୟତା ଏତେ ବଢ଼ିପାଇଛି ଯେ ଏହା ସତେ ଯେପରି ସମାଜର ସବୁସ୍ତରର ନାଗରିକଙ୍କ ପାଇଁ ଉଦ୍ଦିଷ୍ଟ । ଏହାର ବ୍ୟାପକତା ହିଁ ଏହାର ପ୍ରମାଣ । ସମାଜର ବୃତ୍ତି ନିମନ୍ତେ ଅଭିମନ୍ତ୍ରିତ ସୂତ୍ର ସମସ୍ତଙ୍କ ହସ୍ତରେ ବନ୍ଧନ କରି ସମସ୍ତଙ୍କର ମଙ୍ଗଳ କାମନା କରିବା ଓ 'ପଇତା' ଦେଇ ସମସ୍ତଙ୍କୁ ଗୋଟିଏ ଗୋଟିଏ ନୂଆ ବ୍ରାହ୍ମଣରେ ପରିଣତ କରିବା ମୂଳରେ ଯେଉଁ ପୌରାଣିକ ପୃଷ୍ଠଭୂମି ସହ ବୈଜ୍ଞାନିକ ଦୃଷ୍ଟିକୋଣ ରହିଛି ତାହାହିଁ ଏଠାରେ ଆଲୋଚ୍ୟ । ପୂର୍ବ ପ୍ରବନ୍ଧ 'ଗହ୍ମାପୂର୍ଣ୍ଣିମା'ରେ ଗହ୍ମାପର୍ବ ଓ ବଳଦେବ ପୂଜନ ସମ୍ପର୍କରେ ଆଲୋଚନା କରାଯାଇଅଛି ।

ଶ୍ରାବଣ ଶୁକ୍ଳ ପୂର୍ଣ୍ଣିମା ରକ୍ଷା ବନ୍ଧନ ଓ ଉପାକର୍ମ ନିମନ୍ତେ ପ୍ରକୃଷ୍ଟ ଦିବସ । ଏହା ଏକ ସାର୍ବଜନୀନ ଦିବସ କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ସବୁ ବର୍ଣ୍ଣର ଲୋକେ ଏ ଦିବସଟିରେ ଶକ୍ତ୍ୟାନୁଯାୟୀ ବ୍ରାହ୍ମଣଙ୍କୁ ସମ୍ମାନ ଦେଖାଇ ବ୍ରାହ୍ମଣଙ୍କର ଆଶୀର୍ବାଦ ଗ୍ରହଣ କରନ୍ତି । ଶାସ୍ତ୍ରରେ ଅଛି —

"ବ୍ରାହ୍ମଣୈଃ କ୍ଷତ୍ରିୟୈର୍ବୈଶ୍ୟୈଃ ଶୂଦ୍ରୈରନ୍ୟୈଶ୍ଚ ମାନବୈଃ
କର୍ତ୍ତବ୍ୟ ରକ୍ଷିତାଚାରେ ଦ୍ୱିଜାନ୍ ସମ୍ପୂଜ୍ୟ ଶକ୍ତିତଃ"

( ନିର୍ଣ୍ଣୟ ସିନ୍ଧୁ )

**ବିଧି** : ଗୃହକୁ ଗୋମୟରେ ଲିପି ହଳଦୀଚୂନାରେ ଓ ମୃତ୍ତିକାରେ ଚିତା କରି ଘରେ କଳସୀ ବସାଇ ଶୁଦ୍ଧପୂତ ହୋଇ ନବ-ଆସନରେ ବସି ପୁରୋହିତଙ୍କ ଦ୍ୱାରା ନିମ୍ନ ମନ୍ତ୍ର ବୋଲି ରକ୍ଷା ବନ୍ଧନ କରିବ ।

"ଯେନ ବଦ୍ଧୋ ବଲୀରାଜା ଦାନବେନ୍ଦ୍ରୋ ମହାବଳଃ
ତେନ ତ୍ୱାଂ ପ୍ରତିବଧ୍ନାମି ରକ୍ଷେ ମା ଚଳ ମା ଚଳ ।"

ପୂର୍ବେ ଇନ୍ଦ୍ରଙ୍କୁ ବୃହସ୍ପତି ଓ ଇନ୍ଦ୍ରାଣୀ ଦୁହେଁ ରାକ୍ଷୀ ବାନ୍ଧିଥିବାରୁ ଏହାର ନାମ ରାକ୍ଷୀ ବନ୍ଧନ ବୋଲି କେତେକ କହନ୍ତି । ସୌଭାଗ୍ୟବତୀ ସ୍ତ୍ରୀମାନଙ୍କ ଦ୍ୱାରା ରକ୍ଷା ବନ୍ଧନ କାର୍ଯ୍ୟ ହେବା ଉଚିତ୍ । ସ୍ତ୍ରୀ ନିଜ ସ୍ୱାମୀ ହାତରେ ରାକ୍ଷୀ ବାନ୍ଧିଲେ ତ ତାକୁ ଦକ୍ଷିଣା ଦିଆଯାଏ ନାହିଁ । ଏଣୁ ଅନ୍ୟ ସ୍ତ୍ରୀ ଭଗିନୀ ସ୍ୱଭାବରେ ଅନ୍ୟ ପୁରୁଷ ହାତରେ ଏହାକୁ ବାନ୍ଧିବାର ବିଧି ଏବେ ସମାଜରେ ପ୍ରଚଳିତ । ଏ ବିଧି ପୁଣି ଦେଶକେ ପାଙ୍କ ଓ ନଈକେ ବାଙ୍କ ନୀତି ପରି । ଏହା ମୂଳରେ ଏକ ସୁସ୍ଥ ବାତାବରଣ ଥିବାର ଜଣାଯାଏ । ରାକ୍ଷୀ ବନ୍ଧନ ଦ୍ୱାରା ସ୍ତ୍ରୀ ପୁରୁଷ ମଧ୍ୟରେ ଭାଇ ଭଉଣୀ ସମ୍ପର୍କ ସ୍ଥାପିତ ହୁଏ । ହିନ୍ଦୀ ନାଟ୍ୟକାର ହରେକୃଷ୍ଣ ପ୍ରେମୀଙ୍କ ରକ୍ଷାବନ୍ଧନ ନାଟକରୁ ଜଣାଯାଏ ଚିତୋର ରାଣୀ 'କର୍ମାବତୀ' ଆକବରଙ୍କ ପିତା ହୁମାୟୁନଙ୍କ ନିକଟକୁ 'ରାକ୍ଷୀ' ପଠାଇ ତାହାଙ୍କୁ ଭାଇ କରିଥିଲେ ଓ ହୁମାୟୁନ ତାହାଙ୍କୁ ଏକ ଯୁଦ୍ଧଜନିତ ବିପଦରୁ ରକ୍ଷାକରି ଭଗିନୀ ପ୍ରତି ଭାଇର ଦାୟିତ୍ୱ ସମ୍ପାଦନ କରିଥିଲେ ।

**କଥାବସ୍ତୁ** : ଭାରତୀୟ ସକଳ ପର୍ବର ମୂଳ ପୁରାଣ ପୃଷ୍ଠାରେ ପ୍ରାଚୀନ ଜ୍ୟୋତିଷଗ୍ରନ୍ଥରେ ନିହିତ । ଏଠାରେ ରାକ୍ଷୀ ବନ୍ଧନ ମୂଳରେ ଥିବା ପୌରାଣିକ କଥାଟିର ଅବତାରଣା ସଂକ୍ଷେପରେ କରାଯାଉଅଛି । ଇନ୍ଦ୍ରାଣୀ ଇନ୍ଦ୍ରଙ୍କ ଆୟୁ ଓ ସୌଭାଗ୍ୟବର୍ଦ୍ଧନ ନିମନ୍ତେ ଏ ଉତ୍ସବର ଆୟୋଜନ କରିଥିଲେ ।

ପୂର୍ବେ ଦେବତା ଅସୁର ଯୁଦ୍ଧରେ ଅସୁରମାନେ ବିଜୟୀ ହୋଇ ଦେବତାମାନଙ୍କୁ ଅଳଂକାରଶୂନ୍ୟ କରିଦେଲେ । ଦେବତାମାନେ ମ୍ଳାନବୀର୍ଯ୍ୟ ହେଲେ । ଅମରାବତୀରେ ଇନ୍ଦ୍ର ପ୍ରାଣରକ୍ଷା ନିମନ୍ତେ

ଚେଷ୍ଟା କଲେ । ଏଣେ ଅସୁର ପକ୍ଷ ପ୍ରବଳ ହେଲେ ଓ ଦୈତ୍ୟରାଜ ଆଜ୍ଞା ଦେଲେ, "ଦେବତାମାନେ ମୋତେ ପୂଜା କରନ୍ତୁ ଓ ଯଜ୍ଞ ବନ୍ଦ କରନ୍ତୁ ।" ଅସୁରରାଜ ନିଜେ ଯଜ୍ଞ କଲେ, ମାତ୍ର ସେଥିରେ ସ୍ୱାହାକାର, ସ୍ୱଧାକାର ଓ ବଷଟ୍‌କାର ନ ଥିଲା । ଯଜ୍ଞରେ କୌଣସି ଦେବତା ନ ଥିଲେ କି ଉତ୍ସବ ନ ଥିଲା । ଇନ୍ଦ୍ର ଭୟାତୁର ହୋଇ ବୃହସ୍ପତିଙ୍କୁ କହିଲେ, "ଦେବଗୁରୁ, ମୁଁ ଭୟରେ ବ୍ୟାକୁଳ ଓ ବିବ୍ରତ । ତଥାପି ଆଜିଥରେ ପ୍ରାଣାନ୍ତକ ଯୁଦ୍ଧ କରିବାକୁ ଚାହୁଁଛି । ଯାହା ହେବାର ଥିବ ହେଉ । ବୃହସ୍ପତି କହିଲେ, "ହେ ସୁରପତି ! ବର୍ତ୍ତମାନ ପରାକ୍ରମ ଦେଖାଇବାର ସମୟ ନୁହେଁ । ତୁମେ କୋପ ଛାଡ଼ । କାହିଁକି ନା ।"

"ଦେଶକାଳ ବିହୀନାନି କାର୍ଯ୍ୟାଣି ବିପରୀତବତ୍
କ୍ରିୟମାଣାନି ନଶ୍ୟନ୍ତି ସୋଽନର୍ଥଃ ସୁମହାନ୍‌ଭବେତ୍ ।"

ଅର୍ଥାତ୍ ଦେଶକାଳ ବିନା ଯେଉଁ କାର୍ଯ୍ୟ କରାଯାଏ, ତାହା ବିପରୀତ ଫଳ ଦିଏ । ମାତ୍ର ଇନ୍ଦ୍ର କହିଲେ, 'ନା, ମୁଁ ଯୁଦ୍ଧ କରିବି' ଇନ୍ଦ୍ରଙ୍କର ଏପରି ଉତ୍ସାହ ଦେଖି ବୃହସ୍ପତି କହିଲେ, "ଆଚ୍ଛା, ତା ହେଲେ ଶୁଣ, ଆଜି ଚତୁର୍ଦ୍ଦଶୀ ଦିନ । ସକାଳ ହେଲେ ସବୁ ଠିକ୍ ହୋଇଯିବ । ମୁଁ ରକ୍ଷାର ବିଧାନ କରିବି, ଏହାଦ୍ୱାରା ମଙ୍ଗଳ ହେବ ।"

ପୂର୍ଣ୍ଣିମାର ପ୍ରାତଃକାଳ ସମାଗତ ହେଲା । ରକ୍ଷାର ବିଧାନ ହେଲା । ପୂର୍ବକଥିତ ମନ୍ତ୍ର (ଯେନ ବଦ୍ଧୋ...ମାଚଳ ମାଚଳ) ଦ୍ୱାରା ବୃହସ୍ପତି ଶ୍ରାବଣ ପୂର୍ଣ୍ଣିମା ଦିନରେ ରକ୍ଷା ବନ୍ଧନ କଲେ । ଇନ୍ଦ୍ରାଣୀଙ୍କ ସହ 'ବଳ' ଓ 'ବୃତ୍ର ଅସୁରଙ୍କୁ ମାରିବା ପାଇଁ ଇନ୍ଦ୍ର ଏହି ବ୍ରତ ପାଳନ କରିଥିଲେ । ଏହାପରେ ସକାଳେ ଇନ୍ଦ୍ରାଣୀ ମଙ୍ଗଳାଚ୍ଚାର କରି ଇନ୍ଦ୍ରଙ୍କ ଡାହାଣ ହାତରେ ରକ୍ଷାର ପୋଟଳି ବାନ୍ଧିଦେଲେ । ଇନ୍ଦ୍ର ତତ୍ପରେ ବିଜୟୀ ହେଲେ ।

**ବୈଜ୍ଞାନିକ ପୃଷ୍ଠଭୂମି :** ଘରକୁ ଗୋବରରେ ଲିପିବା ମୂଳରେ ମଧ୍ୟ ଏକ ସୁଗମ ବୈଜ୍ଞାନିକ କାରଣ ରହିଛି । ଗୋବର କୀଟାଣୁନାଶକ । ଗ୍ରାମବହୁଳ ଭାରତରେ ଗୋବରର ଅଭାବ ନାହିଁ ।

ପୁଣି ଭାରତରେ ପୂର୍ବେ 'ପ୍ଲେଗ୍' ରୋଗର ପ୍ରାଦୁର୍ଭାବ ଅଧିକ ଥିଲା । ଏଣୁ ଡାକ୍ତରମାନେ ଗୋମୟ ଲେପନ ଉପରେ ଗୁରୁତ୍ୱ ଦେଉଥିଲେ କାରଣ ଏହା କୀଟାଣୁନାଶକ (Antisceptic) ।

ମୁକୁଳ ଓ ହଳଦୀଚୂର୍ଣ୍ଣ ସୌନ୍ଦର୍ଯ୍ୟବର୍ଦ୍ଧକ ଓ ଏ ବ କୀଟାଣୁ-ନାଶକ । ହଳଦୀ ତୀବ୍ର ଗନ୍ଧବିଶିଷ୍ଟ ଓ କଟୁ; ଏଣୁ ଜୀବାଣୁ ନଷ୍ଟକାରୀ । ଜଳପୂର୍ଣ୍ଣ କଳସୀ ଏକ ଶୁଭସ୍ମାରକ; ଉର୍ବରତା ତଥା ମାଙ୍ଗଳିକତାର ସଙ୍କେତ । ଭାରତୀୟ ଜନତାଙ୍କ ବିଶ୍ୱାସ ଜଳପୂର୍ଣ୍ଣ କଳସୀ ବରୁଣ ଦେବତାଙ୍କ ପ୍ରତୀକ ଓ ଏହି ବରୁଣ ଦେବତା ବେଦାନୁଯାୟୀ ବନ୍ଧନ ନାଶକ । 'ଭାରତୀୟ ବ୍ରତୋତ୍ସବ'ର ଲେଖକ ଲେଖିଛନ୍ତି—

"ଅତଃ ମୃତ୍ୟୁ ପାଶସେ ଛୁଟନେ ତଥା ପାନ ତା ସେ ମୁକ୍ତ ହୋନେ କେ ଲିୟେ ରକ୍ଷା ବନ୍ଧନ ମେଁ ବରୁଣ ରୂପ ଆଦିତ୍ୟକେ ପ୍ରତୀକ ଜଳପୂର୍ଣ୍ଣ କଳସ କୀ ପୂଜା କୀ ଜାତୀ ହୈ ।"

ରକ୍ଷା ସୂତ୍ର ବନ୍ଧନ ମୂଳରେ ମଧ୍ୟ ଏକ ଗମ୍ଭୀର ମନନ ରହିଛି । 'ସୂତ୍ର' ବା 'ତନ୍ତୁ'ର କାର୍ଯ୍ୟ ଅବିଚ୍ଛିନ୍ନ ରଖିବା । "ଗୋଟିଏ ସୂତାରେ ବନ୍ଧା ହୋଇଛି" ଏହା ସ୍ପଷ୍ଟ । ଯେ ଉତ୍ପନ୍ନ କରେ ସେ ସୂତ୍ର ଓ ଯେ ବିସ୍ତୃତ କରେ ସେ ତନ୍ତୁ । ଏଣୁ ଏହା ମଧ୍ୟ ଏକ ସାମାଜିକ ବନ୍ଧନ ବା ଭ୍ରାତୃପ୍ରେମ ସୃଷ୍ଟିର ସହାୟକ । ମୋଟ ଉପରେ ଆୟୁ ଓ ଆରୋଗ୍ୟର ଅବିଚ୍ଛିନ୍ନତା ଆରୋପ ଏହାର ଲକ୍ଷ୍ୟ । ସମାଜରେ ଭ୍ରାତୃ-ଭଗିନୀ ସମ୍ବନ୍ଧ ଦୃଢ଼ୀକରଣ ମୂଳରେ ଭାରତୀୟ ଆର୍ଯ୍ୟର ଆଉ ଏକ ଯୁଗାନ୍ତକାରୀ ତଥା ସୁଚିନ୍ତିତ ପଦକ୍ଷେପ ।



# ଗହ୍ମାପର୍ବ, ଗଙ୍ଗାଧର ଓ "ଗୋ-ବିଳାପ"

ସବୁ ବର୍ଷ ପରି ସେ ବର୍ଷ ମଧ୍ୟ ଶ୍ରାବଣୀ ପୂର୍ଣ୍ଣିମା ବିଦ୍ୟୁତ୍-ନୟନ ବର୍ଷା ଜରଖର ଅଳସ ଆଖି ଆଗରେ ଉଦାସ ଗୋଧୂଳି ଉଡ଼ାଇ ଚାଲି ଯାଉଥିଲା । ଜଳଦ ଡମ୍ବରୁ ବିଳାସୀ କଦମ୍ବର ବିଦାୟ ଓ ବରଷ-ଜରଖର ଧବଳ ଜଟ ସଦୃଶ ଶରତ କାଶତଣ୍ଡୀର ଶୁଭପଦ ସଞ୍ଚାର ପ୍ରକୃତି ରାଜ୍ୟରେ ଏକ ବିଦାୟ ମିଳନର ଅପୂର୍ବ ଆଲେଖ୍ୟ ସୃଷ୍ଟି କରିଥିଲା । ୧୮୭୨ ମସିହାରେ ଶ୍ରାବଣୀ ପୂର୍ଣ୍ଣିମା ଏହିପରି ଏକ ବିରହ ମିଳନର ମୂକସାକ୍ଷୀ ଥିଲା । ଓଡ଼ିଶାର ଗାଁ ଗାଁରେ ପିଠାପଣାର ଧୂମଧାମ ଗହ୍ମାଉଆ । ବଡ଼ଠାକୁର ବଳଦେବ ଆଜି ଗୋ-ଜାତିର ବାଧକ 'ଗହ୍ମା'କୁ ଦଳନ କରିଛନ୍ତି । ତାଙ୍କର ଜନ୍ମଦିବସ ଆଜି ଘରେ ଘରେ ଆନନ୍ଦର କଲରୋଳ । ଶ୍ରାବଣର ଶେଷ ମୁଣ୍ଡ ଏ । କିଆକେତକୀର ସଜ ମହକରେ ପଲ୍ଲୀ ସୁରଭିତ । ଗାଁ ତୋଟା ମାଳରେ ଭରି ସବୁଜିମା । ଗାଁ ଦାଣ୍ଡରେ କିଶୋରମାନଙ୍କର କେଳି ଚପଳ କଣ୍ଠଧ୍ୱନି । ଚିତୋଉ ଅମାବାସ୍ୟା ଦିନୁ ସାଇତା ବହଳ ନଡ଼ିଆର ଆଜି ଦାଣ୍ଡରେ ଆତ୍ମପ୍ରକାଶ । ଗାଁ ଦାଣ୍ଡରେ ଦେଖଣାହାରି ଗୁଣ୍ଡ । ପିଲାଙ୍କ ହାତରେ ନଡ଼ିଆ । ସେ ନଡ଼ିଆ ଏକାଥରକେ ଫାଟୁନାହିଁ । ବେଳେବେଳେ ମଝିରେ ପଡ଼ି ଡ଼ୁ.... . । ଆକାଶରେ ବଉଦର ଘନଘଟା । ବର୍ଷଣମୁଖର ମେଘମାଳା ଗାଁ ମଥାନ ଉପରେ କଳାହାଣ୍ଡିଆ-ଗୁନ୍ଦୁଆ ମେଲିଛନ୍ତି । ଇନ୍ଦ୍ର ରାଜାଙ୍କର ଦମ୍ଫୋଳି ବାଜା ମଝିରେ ମଝିରେ ବାଜି ଉଠୁଛି । ସୁନାରଙ୍ଗିଆ ବିଜୁଳିନାଗୀର ହଲଦିଆ ପଣତକାନି ବେଳେବେଳେ ଦିଶିଯାଉଛି । ପ୍ରାବୃଟର ଏହିପରି ଗୁରୁ ଗର୍ଜ୍ଜନ, ବିଦ୍ୟୁତ୍‌ର ସ୍ଫୁରଣ ଓ ଆକାଶର କମ୍ପନ ସତ୍ତ୍ୱେ ସେ ଦିନର ସେହି ରାକା ରଜନୀରେ ଚୈତନ୍ୟ ସେବକଙ୍କ ଭୁଲିଆ ପରିବାରରେ ଓଡ଼ିଆ ସାହିତ୍ୟର ଭାବ-ପ୍ରକୃତି ଚିତ୍ରକର ପ୍ରତିଭାବାନ୍ କବି ଉଙ୍ଗଜୀବ ଗଙ୍ଗାଧର ଭୂମିଷ୍ଠ ହୋଇଥିଲେ ।

ଦୀର୍ଘ ୧୦୯ ବର୍ଷ ପରେ ଆଜ ବି ସେହି ଗହ୍ମା ପୂନେଇ ଆସିଛି । ଗହ୍ମା ପର୍ବର ସାଧାରଣତଃ କେତୋଟି ସ୍ମୃତି ସ୍ମରଣୀୟ । ପ୍ରଥମତଃ ଆଜି ବଳଭଦ୍ର ଜନ୍ମ (ଉତ୍ଥାନ ବଳଭଦ୍ରସ୍ୟ), ଦ୍ୱିତୀୟତଃ ଗୋ-ମହିଷାଦି ପୂଜନ ଓ ଏହାପରେ ତୃତୀୟତଃ ରକ୍ଷ ଚନ୍ଦ୍ରିକା ବନ୍ଧନ ବା ରାକ୍ଷୀ ବନ୍ଧନ । ଆଜି ପୁଣି କେତେକଙ୍କ ମତରେ ବଳୀରାଜା ବାମନଙ୍କୁ ତ୍ରିପାଦ ଭୂମିଦାନ ଓ ପାତାଳ ଗମନ ସ୍ମୃତି ଦିବସ ପାଳନ । ଏହାଛଡ଼ା ନିଗମାନନ୍ଦ ସ୍ୱାମୀଙ୍କ ଆବିର୍ଭାବୋତ୍ସବ ଓ ପ୍ରକୃତି କବି ଗଙ୍ଗାଧରଙ୍କ ଜନ୍ମ ।

ଗହ୍ମାପର୍ବ ଏ, ବାସ୍ତବିକ 'ଗୋ-ମା' [ ଗୋ ମାତା ] ପର୍ବ । ହିନ୍ଦୁ ସଂସ୍କୃତିର ପ୍ରାଣକେନ୍ଦ୍ର, ଆର୍ଯ୍ୟଜୀବନର ମୂଳପିଣ୍ଡ ଗୋ-ମାତାର ଆଜି ପୂଜା ଦିବସ । ଋକ୍ ବେଦର ସନାତନ ଆର୍ଯ୍ୟଋଷି କଣ୍ଠରେ ମଧ୍ୟ ସେଇ ଗୋ-ମାତାର ମଙ୍ଗଳକାମନା ଫୁଟି ଉଠିଥିଲା ।

ଓଁ ମଧୁ ବାତା ଋତାୟତେ,
ମଧୁ କ୍ଷରନ୍ତି ସିନ୍ଧବଃ
ମାଧ୍ୱୀର୍ନ ସନ୍ତୋଷଧୀଃ,
ମଧୁନକ୍ତ ମୁତୋଷସୋ ।
ମଧୁମତ୍ ପାର୍ଥିବଂରଜଃ
ମଧୁଦ୍ୟୌରସ୍ତୁ ନଃ ପିତା
ମଧୁମା ନୋ ବନସ୍ପତିଃ
ମଧୁମାନସ୍ତୁ ସୂର୍ଯ୍ୟଃ
"( ମାଧ୍ୱୀ ର୍ଗାବୋ ଭବନ୍ତୁ ନଃ" )

ଅର୍ଥାତ୍ ବାୟୁ ବର୍ଷା କରନ୍ତୁ, ନଦୀମାନେ ବା ସମୁଦ୍ରମାନେ ମଧୁର ଜଳବାହୀ ହୁଅନ୍ତୁ, ସମସ୍ତ ଔଷଧ ଉପଯୁକ୍ତ ହୁଅନ୍ତୁ × × ସମସ୍ତ ଗାଈ ମଧୁପରି ଦୁଗ୍ଧ ଦିଅନ୍ତୁ ।

କାଳିଦାସଙ୍କ ଅମରକୃତି 'ରଘୁବଂଶ'ର ଏହିପରି ଗୋଟିଏ 'ଗାଈ'ର ଅସମ୍ମାନ ଜନିତ ଦୁର୍ଘଟଣା ଫଳରେ ରଘୁବଂଶ ପୁତ୍ରାର୍ଥୀ ରାଜା ଦିଲ୍ଲୀପଙ୍କୁ ରାଣୀ ସୁଦକ୍ଷିଣାଙ୍କ ସହିତ କେତେ କଷ୍ଟ ସହିବାକୁ ନ ପଡ଼ିଛି । ରାଜା ଦିଲ୍ଲୀପ ଇନ୍ଦ୍ରଙ୍କଠାରୁ ବିଦାୟ ନେଇ ଆସିବାବେଳେ କଳ୍ପବୃକ୍ଷ

ତଳେ ଶାପିତା ସୁରଭୀ ପ୍ରତି ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କରି ପାରି ନ ଥିଲେ । ଅବଶ୍ୟ ସେ ଅଭିଶାପ [ସୁରଭୀ ଦତ୍ତ] ରାଜା କି ସାରଥି କେହି ଶୁଣିପାରି ନ ଥିଲେ, କାରଣ ଆକାଶଗଙ୍ଗା ସ୍ରୋତରେ ଉନ୍ମତ୍ତ ଦିଗଗଜ-ମାନଙ୍କର ଜଳକ୍ରୀଡ଼ା ଜନିତ ଶବ୍ଦ ସେ ଅଭିଶାପ ରାଜାଙ୍କର ଶ୍ରୁତିପଥା-ରୂଢ଼ ହେବାରେ ବାଧକ ଥିଲା ତଥାପି ପୂଜ୍ୟପୂଜା ବ୍ୟତିକ୍ରମ ଅଳଙ୍ଘନୀୟ । ଏଣୁ ଧ୍ୟାନମଗ୍ନ ଋଷି ବଶିଷ୍ଠ ଜାଣିପାରି ରାଜାଙ୍କୁ ସୁରଭୀ କନ୍ୟା 'ନନ୍ଦିନୀ'ଙ୍କୁ ନିଷ୍ଠାର ସହ ସତ୍କାର କରିବାକୁ କହି ଉପଦେଶ ଦେଇ କହିଥିଲେ ଯେ –

'ପ୍ରସ୍ଥିତାୟାଂ ପ୍ରତିଷ୍ଠେଥାଃ
ସ୍ଥିତାୟାଂ ସ୍ଥିତିମାଚରେଃ
ନିଷଣ୍ଣାୟାଂ ନିଷୀଦାଥାଃ
ପୀତାମ୍ଭସି ପିବେରପଃ'

(ରଘୁବଂଶ-୧ମ ସର୍ଗ)

ଅର୍ଥାତ୍ ସେ (ନନ୍ଦିନୀ) ଚାଲିଲେ ତୁମେ (ରାଜା) ଚାଲିବ । ସେ ଠିଆ ହେଲେ ତୁମେ ଠିଆ ହେବ, ସେ ବସିଲେ ତୁମେ ବସିବ ଏବଂ ସେ ପାଣି ପିଇଲେ ତୁମେ ପିଇବ ।

ଶାରଳାଦାସଙ୍କ ବିରାଟ ପର୍ବରେ ରାଜା ବିରାଟ ଓ ଗାଭୀ 'ପୃଥୁନା' ଉପାଖ୍ୟାନ ଏକ ଚମତ୍କାର ଆଲେଖ୍ୟ । ଛଦ୍ମବେଶୀ ସହଦେବ ତନ୍ତ୍ରୀପାଳ ଗୋପାଳ ବେଶରେ 'ବିରାଟ'ଙ୍କ ପାଖେ ଅଜ୍ଞାତବାସ କରି ବିରାଟ ରାଜାଙ୍କୁ 'ପୃଥୁନା' ଗାଭୀ କବଳରୁ ରକ୍ଷା କରିଛନ୍ତି । ସହଦେବଙ୍କ ସ୍ତୁତିରେ ଶେଷରେ ପୃଥୁନା ସନ୍ତୁଷ୍ଟ ହୋଇ 'ବିରାଟ'ଙ୍କୁ ଚାରି ସ୍ତନର 'ଶିର'ରୁ ଗୋଟିଏ ଦେବାକୁ ଇଚ୍ଛୁକା ହୋଇ ଅନ୍ୟ ତିନିଟିର ଅନ୍ୟମାନଙ୍କୁ ସମର୍ପଣ କରିବାକୁ ଆଦେଶ ଦେଇଛନ୍ତି—

ପୃଥୁନା ବୋଇଲେ ମୋର
ତିରେ କ୍ଷୀର ନେବୁ
ତିରେକ କ୍ଷୀର ନେଇଣ
ଆକାଶେ ଛାଡ଼ିବୁ

ଆରକେ ଚର ଗୁଡ଼ବୁ
ନେଇ ପାତାଳକୁ
ଚରେ ସମର୍ପିବୁ ନେଇ
ମୋ ଲକ୍ଷେ ବତ୍ସାଙ୍କୁ
ଏକା ଚରେକ ପାଇବୁ
ଦୁହିଁ ଯେତେ କ୍ଷୀର
ତୁ ଦୁହିଁଲେ ତୃପ୍ତି ହେବ
ନଦିଷ୍ଟ ମହେଶ୍ୱର ।।"

(ବିରାଟ ପର୍ବ)

ଏଣୁ ଆର୍ଯ୍ୟ ସଂସ୍କୃତିରେ ଆମର କାବ୍ୟ ପୁରାଣାଦିରେ ଗୋ-ମହିଷାଦି ପ୍ରାଣୀମାନଙ୍କର ଏକ ଦୃଢ଼ ଆସନ ସଂରକ୍ଷିତ । ଆଜି ସେହି 'ଗହ୍ମାପର୍ବ'ରେ ଗୋ-ସମ୍ବର୍ଦ୍ଧନା ଉତ୍ସବ ଚତୁର୍ଦ୍ଦିଗରେ ଅନୁଷ୍ଠିତ ହେବାକୁ ଯାଉଥିବା ବେଳେ ଏ ପୁଣ୍ୟ ଦିବସରେ ଜନ୍ମିଥିବା ସ୍ୱଭାବକବି ଗଙ୍ଗାଧରଙ୍କ ରଚିତ 'ଗୋ-ବିଳାପ' କବିତାଟି ମଧ୍ୟ ପାଠକ ସମ୍ମୁଖକୁ ଆସେ ।

ଉଙ୍ଗଜାବ ଗଙ୍ଗାଧର କି ଅନ୍ତଃ ପ୍ରକୃତି, କି ବହିଃ ପ୍ରକୃତି ଉଭୟର ଯଥାଯଥ ଚିତ୍ରାଙ୍କନରେ ସେ ସିଦ୍ଧହସ୍ତ । ପ୍ରକୃତି ଗ୍ରନ୍ଥ ଅଧ୍ୟୟନ କୁଶଳ ମେହେରଙ୍କ ଲେଖନୀରେ ମୂକ ପ୍ରକୃତି ବାଗ୍ମୀ ହୋଇ ଉଠିଛି । ଭଙ୍ଗୀପୂର୍ଣ୍ଣ ଛନ୍ଦମାଧୁର୍ଯ୍ୟ ଓ ସାଙ୍ଗୀତିକତା ସହ ଭାଷାନାଥୀୟ ଗାମ୍ଭୀର୍ଯ୍ୟ ଓ ପ୍ରାଞ୍ଜଳତା ସବୁସହ ତାଙ୍କ କାବ୍ୟ କବିତାରେ ବିକଶିତ ଥିଲେ, ହେଲେ ତାଙ୍କ କାବ୍ୟ ମୁକୁରରେ କେବଳ ଦୁଷ୍ମନ୍ତ, ବାଣୀ ପରି 'ଗଙ୍ଗାଧର'ଙ୍କର 'ଗୋ-ବିଳାପ' କବିତାଟି ସେହିପରି ନିଷ୍ଠାର ସହ ପାଠକଲେ ପାଠକ ମନରେ ଏକ ଗଭୀର ରେଖାପାତ ହୁଏ । ଏହି ଦୀର୍ଘ କବିତାଟି ଏକ ଗୋ-ମାତାର ଆତ୍ମ-ନିବେଦନ ଶୈଳୀରେ ଲିଖିତ ।

ଭାରତରେ ବର୍ତ୍ତମାନ ରୋଗ ବ୍ୟାପୁଛି । ଘିଅ, ମୁଗ, ଗୁଡ଼ଳର ଦାମ୍ ପୂର୍ବାପେକ୍ଷା ୧୦।୧୨ ଗୁଣ ବଢ଼ିଲାଣି । ଭଲ ସ୍ଥାନରେ ଏବେ

ହେଲ ମିଳୁଛି । ଘିଅରେ ଚର୍ବି ଓ ଗୋ-ରସରେ ଜଳ ମିଶିଲଣି । ବଳଦ ଦୁର୍ମୂଲ୍ୟ । ଚଷା ଚାଷ କରି ପାରୁନାହିଁ । ଏହାର କାରଣ ଦେବାକୁ ଯାଇ କବି ଲେଖିଛନ୍ତି—

"କହନ୍ତି ଗୋ-ମାତା ଶୋକ
ଗଦଗଦ୍-ବଚନେ
ବିକଳ ହୃଦୟେ ଅଶ୍ରୁ ପୂରିତ
ଲୋଚନେ

× × ×

ସହସ୍ର ସହସ୍ର ଗୋରୁ
ନ ଖାଇ ଯତନ
ଏଣେତେଣେ କରୁଛନ୍ତି
ପ୍ରାଣ ବିସର୍ଜନ
ସ୍ୱରଣ ଭୂମିର ବିନା
ହଜାର ହଜାର
ନିତି ଚାଲିଯାଉଛନ୍ତି ଶମନ ବଜାର ।"

କୃଷିକାର୍ଯ୍ୟ ଭାରତୀୟ କ୍ରମେ କ୍ରମେ ଶିଳ୍ପଗାମୀ ହେଉଛନ୍ତି । ଏହା ସୁଖକର ହେଲେ ମଧ୍ୟ କଳକାରଖାନା ଶ୍ରମିକଙ୍କୁ ଅନ୍ନବସ୍ତ୍ର ଦେଇ-ପାରେ, ମାତ୍ର ଦୁଗ୍ଧ ? କବିଙ୍କ ଭାଷାରେ—

"ଦିନୁ ଦିନୁ ଭାରତରେ
ବଢୁଅଛି କଳ
ତହୁଁ ପାଇ ପାର ଅନ୍ନ
ବସନ ସକଳ
କିନ୍ତୁ ମନେ କେବେ ଏହା
ନ କରିବ ବୁଧ
କଳରୁ କୌଣସି କାଳେ
ପାଇବ ମୋ ଦୁଧ ?"

ଗଙ୍ଗାଧରଙ୍କ ଏ କବିତା ରଚନା ବେଳେ ଭାରତରେ ମହାମହିମ ବ୍ରିଟିଶ ରାଜତ୍ୱ । ଏଣୁ କବି ତାଙ୍କର ସ୍ୱଭାବସୁଲଭ ନମ୍ରତାର ସହିତ ବ୍ରିଟିଶ ରାଜପ୍ରତିନିଧିଙ୍କୁ ଗୋ-ବଧ ବନ୍ଦ କରିବା ନିମନ୍ତେ କବିତା ଜରିଆରେ ବହୁବାର ନିବେଦନ କରିବା ସଙ୍ଗେ ସଙ୍ଗେ ହିନ୍ଦୁ ମୁସଲମାନ୍‌ଙ୍କୁ ନାନା ଶାସ୍ତ୍ରବାଣୀ ଉଦ୍ଧାର କରି ଗୋ-ମାତା ପ୍ରତି ଯତ୍ନଶୀଳ ହେବାକୁ ବିନମ୍ର ନିବେଦନ ଜଣାଇଛନ୍ତି । ବିଶେଷତଃ ଭାରତରେ ତତ୍କାଳୀନ ଗୋ-ଚର୍ମ ବ୍ୟବସାୟୀ କବିଙ୍କ ଲେଖନୀରେ ସମାଲୋଚନାର ପ୍ରଧାନ ଶରବ୍ୟ ହୋଇଛନ୍ତି । କବି 'କୋରାନ'ରୁ ଏକ ଦୃଷ୍ଟାନ୍ତ ଦେବା ପରେ ଭାରତ ଇତିହାସର ଅତୀତ ପୃଷ୍ଠାରୁ ଦୟାଶୀଳ 'ସବକ୍ତଗିନ'ଙ୍କ 'ପଶୁଦୟା' ତଥ୍ୟ ଅତି ଜୀବନ୍ତ ଭାବେ ବର୍ଣ୍ଣିଛନ୍ତି । ମାତୃହରା ଏକ ମୃଗଶିଶୁ ପ୍ରତି ସବକ୍ତଗିନଙ୍କ ଦୟାହିଁ ତାଙ୍କୁ ଶେଷରେ ଦିଲ୍ଲୀ ସିଂହାସନ ଆରୂଢ଼ କରିପାରିଥିଲା । ଏହାପରେ କବି ଭାରତରେ ଗୋ-ପାଳନର ଏକ ସଂକ୍ଷିପ୍ତ ତଥ୍ୟ ଦେଇ ଆର୍ଯ୍ୟଋଷିଙ୍କଠାରୁ ଆରମ୍ଭ କରି 'ଗୋବିନ୍ଦ' କୃଷ୍ଣଚନ୍ଦ୍ରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଗୋଜାତି ପ୍ରତି କିପରି ସହାନୁଭୂତି ଓ ଅନୁକମ୍ପା ଥିଲା ନିମ୍ନଭାବେ ବର୍ଣ୍ଣନା କରିଅଛନ୍ତି···

"ସୃଷ୍ଟେ ବ୍ରହ୍ମା ଗଲେ
ବିଷ୍ଣୁ ମୁଖେ ରୁଦ୍ର ସ୍ଥିତ
ଆର୍ଯ୍ୟ ଋଷି ମୁଖେ
ଏହା ଶୁଣଇ କଥିତ ।
ଦେବତାଏ କରୁଥିଲେ
ସୁରଭି ପାଳନ
ବଶିଷ୍ଠଙ୍କ ଧେନୁ କଥା
କରିଛ ଶ୍ରବଣ ।
ନିଜେ କୃଷ୍ଣଚନ୍ଦ୍ର
କରୁଥିଲେ ଗୋ-ପାଳନ
ତାଙ୍କଠାରୁ ବଡ଼ ତୁମ୍ଭେ
ହେଲ କେଉଁ ଜନ ?"

ଏହା ପରେ କବିଙ୍କ ଲେଖନୀ ହିନ୍ଦୁମାନଙ୍କ ପ୍ରତି ଅଧିକ ମୁଖର ହୋଇ ଉଠିଛି, 'ଗୋ ଜାତି'ର ଅବହେଳା ଦେଶପ୍ରାଣ ଗଙ୍ଗାଧରଙ୍କ ପ୍ରାଣକୁ ବ୍ୟଥାତୁର କରିଛି । କବିଙ୍କର ନବ୍ୟସଭ୍ୟ ବାବୁଙ୍କ ପ୍ରତି ଆକ୍ଷେପୋକ୍ତି ଅତ୍ୟନ୍ତ ବ୍ୟଙ୍ଗପୂର୍ଣ୍ଣ—

"କୁକୁରକୁ କୋଳେ ଧରି
ଦିଅନ୍ତି ଚୁମ୍ବନ
କଂସାଇକୁ ଦିଅନ୍ତି
ମୋ ବାଛୁରି ଜୀବନ
ନ ହେଲ କି ତୁମ୍ଭେ
ମାଂସ ଖିଆରୁ ଅଧିକ
ଧିକ ହିନ୍ଦୁ କୁଳାଙ୍ଗାର
ପ୍ରାଣ ତୁମ୍ଭ ଧିକ ।"

କବି ଇଉରୋପ, ଆମେରିକା ମହାଦେଶର ଉନ୍ନତ ଗାଭୀମାନଙ୍କ ସହିତ ଭାରତୀୟ ଅବହେଳିତ ଗୋ-ଜାତିକୁ ତୁଳନା କରି କହନ୍ତି ଏମାନେ ସର୍ବଦା ପ୍ରହାର ଖାଇ ନିର୍ଜୀବ ହୋଇ ସଢ଼ୁଛନ୍ତି, ତାହାର ଏକ ଚିତ୍ର ପ୍ରଦାନ କରିଅଛନ୍ତି । ଶେଷରେ ଗୋ-ମାତା ତୁଣ୍ଡରେ କବିଙ୍କର ନିମ୍ନ ଉକ୍ତି ଯେପରି ବାସ୍ତବ, ସେହିପରି ପ୍ରତି ଭାରତୀୟର ପ୍ରଣିଧାନ-ଯୋଗ୍ୟ । ଗୋ-ଧନର ପତନରେ ହିଁ ମାନବର ଅଧୋଗତି । ଏଣୁ ଉପଯୁକ୍ତ ଗୋଶାଳା ସ୍ଥାପନ ପୂର୍ବକ ଗୋଚର ଭୂମିର ରକ୍ଷଣାବେକ୍ଷଣ ଓ ଗୋ ପୂଜନବିଧି ଅନ୍ତତଃ ନିର୍ଦ୍ଦିଷ୍ଟ ପର୍ବ ଉତ୍ସବରେ ନିଷ୍ଠାର ସହିତ ପାଳିତ ହେଉ ।

ବେଗେ କର ସ୍ଥାନେ ସ୍ଥାନେ
ଗୋ ଶାଳା ସ୍ଥାପନ
ଗୋ ପୂଜିବା ପର୍ବେ କର
ଗୋତ୍ରଙ୍କୁ ପୂଜନ

ପ୍ରଶସ୍ତ ପଡ଼ିଆ ଘୁଞ୍ଚଇଦିଅ
ଗ୍ରାମେ ଗ୍ରାମେ
ତୃଣ ଚରି ଗୋରୁମାନେ
ରହିବେ ଆରାମେ ।

ଗଙ୍ଗାଧରଙ୍କ ପୂର୍ବୋକ୍ତ ଅନୁଯାୟୀ ଆଜ ସେହି ଗୋ-ପୂଜବା ପର୍ବ 'ଗହ୍ମା' ଆସିଛି । ଆଜିର ଏ ଅନ୍ତଶିଳା 'ଚମତ୍କାରି' ଯୁଗରେ ଆସନ୍ତୁ ଆମେ ସମସ୍ତେ ସେଇ ଗୋ-ମହିଷାଦି ପ୍ରାଣୀଙ୍କୁ ଯଥାଯୋଗ୍ୟ ପାଳନ ଓ ପୂଜନ କରିବାର ଶପଥ ନେଇ 'ସବୁଜ ବିପ୍ଳବ'କୁ ତ୍ୱରାନ୍ୱିତ କରିବା ।

[ ପ୍ରଜାତନ୍ତ୍ର ୭-୮-୭୧ରେ ପ୍ରକାଶିତ ]



ସନ୍ଦର୍ଭ : ଜନ୍ମାଷ୍ଟମୀ

# କୃଷ୍ଣଜନ୍ମର ପୌରାଣିକ ପୃଷ୍ଠଭୂମି

ସୁରପତି-ଇନ୍ଦ୍ର ବିଶ୍ୱକର୍ମାଙ୍କୁ କହୁଛନ୍ତି, "ହେ ବିଶ୍ୱକର୍ମା ! ଶୀଘ୍ର ମଧୁବନ କଟକକୁ ଗମନ କର । ଗୋପନଗ୍ରାମକୁ ନବରଙ୍ଗରେ ସଜାଅ । ବସୁଦେବ-ଦେବକୀ ବନ୍ଦୀଘରଠାରୁ ନନ୍ଦଘର ଯାଏ ଆକାଶରେ ଚାନ୍ଦୁଆ ସଜକର । ହେ କୁବେର ! କୃଷ୍ଣଙ୍କୁ ନେଇ ବସୁଦେବ ଗଲାବେଳେ ତୁମେ ତାଙ୍କ ଉପରେ ସୁବର୍ଣ୍ଣ ଚମ୍ପା ବର୍ଷଣ କର । ଅଷ୍ଟବସୁମାନେ ପ୍ରଭୁଙ୍କ ଶିରରେ ଦଣ୍ଡଛତ୍ର ଧରନ୍ତୁ । ହେ ମେଘମାନେ, ଚତୁର୍ଦ୍ଦିଗ ଅନ୍ଧାର କର । ପବନ ! ତୁମେ ଅଜଣା ମଳୟରେ ଚଉଦିଗ ସୁରଭିତ କର । ଚିତ୍ରସେନ; ତୁମେ ଜୟନ୍ତୀମାଳା ଧରି ଶୂନ୍ୟସ୍ତରେ ରହ । କୃଷ୍ଣଜନ୍ମ ମାତ୍ରେ ତାଙ୍କ ଗଳାରେ ଏହାକୁ ଅଭିନନ୍ଦନ ମାଳାରୂପେ ଲମ୍ବାଇ ଦେବତାଙ୍କ ଆସ୍ଥାନ ପ୍ରତିନିଧିତ୍ତ୍ୱ କର । ବସୁଦେବଙ୍କୁ ପଥ ବୁଝାଇ କହିବ । ହେ ନିଦ୍ରାବତୀ ! ପଞ୍ଚାଶ ସହସ୍ର ପହରୀଙ୍କ ଆଖିକୁ ଢାଳି ପକାଅ । ଜଳଚର, ସ୍ଥଳଚର ସମସ୍ତେ ତୁମରି ମାୟାଧୀନ ହୁଅନ୍ତୁ । ବସୁଦେବ ବନ୍ଦୀଶାଳାରୁ ନନ୍ଦଘର ଏବଂ ପୁଣି ସେଠାରୁ ପୂର୍ବସ୍ଥାନରେ ପହଞ୍ଚିବା ପର୍ଯ୍ୟନ୍ତ ସମସ୍ତେ ନିଦ୍ରାରେ ଅଚେତ ହୁଅନ୍ତୁ । ଦେବକୀ, ଯଶୋବନ୍ତୀ କେହି ନ ଜାଣନ୍ତୁ; ମାତ୍ର ତିନିଜଣଙ୍କୁ ଛାଡ଼ି ସମସ୍ତେ ସୁପ୍ତ ହୁଅନ୍ତୁ । ସେ ତିନିଜଣ ହେଉଛନ୍ତି ବସୁଦେବ, ଉଗ୍ରସେନ ଓ ଗାର୍ଗ୍ୟ ମହାମୁନି । "ସ୍ୱର୍ଗରେ ଆଜ ଚହଲ, ମର୍ତ୍ତ୍ୟରେ ଆଜ ଅଜଣା ପୁଲକ, ମହୀଭାରା ଆଜ ଉଶ୍ୱାସ ହେବ, କୃଷ୍ଣ ଜନ୍ମିବେ, କଂସ ନାଶିବେ, ଗୋପୀଗଣ ପ୍ରେମରେ ଭାସିବେ ।

ଦ୍ୱାପର ଯୁଗର ଶେଷ ଓ କଳିଯୁଗର ଆରମ୍ଭବେଳେ ଶ୍ରୀକୃଷ୍ଣଙ୍କ ଜନ୍ମ । ଯେତେବେଳେ କି ପୃଥିବୀମାତା ଆସୁରିକ ପ୍ରଭାବରେ ଜର୍ଜରିତ;

ପୁଣି ପ୍ରାଣୀମାନଙ୍କର କୁମାର୍ଗ ଗମନ, ଅଭକ୍ଷ ଭକ୍ଷଣ ଓ ନାନାବି କୁଳାଚ୍ଚାର ବିରୋଧୀ କାର୍ଯ୍ୟକ୍ରମରେ ସେ ସନ୍ତପ୍ତା । ପୁଣି କଂସ ବାଣାସୁର ନାରକା, ଶମ୍ବର, ବଜ୍ରନାଭ, ରୁକ୍ମ, ଗୋଣିଙ୍ଗ, କାଳଗମନ, ନର୍ଘାତ, ବ୍ୟୋମ, ଶିଶୁପାଳ, ଦନ୍ତବକ୍ର, ଜରାସନ୍ଧ ପ୍ରଭୃତି ଦୁର୍ଦ୍ଧର୍ଷମାନଙ୍କ ଅସୁରଙ୍କ ଉତ୍ପାତରେ ସେ ଉତ୍ପୀଡ଼ିତା । ସେହି ପୃଥିବୀମାତାର କାତରପ୍ରାର୍ଥନା ଓ ବେଦବର ବ୍ରହ୍ମାଦି ଦେବତାଙ୍କ ସବିନୟ ଅନୁରୋଧରେ କୃଷ୍ଣ ଅଂଶ ଦୁଇଯୁଗର ସନ୍ଧିକ୍ଷଣରେ ପୃଥିବୀକୁ ମାନବଯୋନିରେ ଜନ୍ମିବାକୁ ଆସୁଛନ୍ତି । କଂସକୁ ମାରିବେ, ଗୋପୀମାନଙ୍କୁ ତାରିବେ, ନନ୍ଦ ଯଶୋଦାଙ୍କ ପୂର୍ବଋଣ ସାରିବେ ଓ ବସୁଦେବ-ଦେବକୀଙ୍କର ପୂର୍ବ ଦୁଃଖ ହାରିବେ ।

ସେ କଂସ କିଏ ? ଓଡ଼ିଆ ପୁରାଣ ପୃଷ୍ଠାରେ ଏହାର ପୌରାଣିକୀ ତତ୍ତ୍ୱ ବଡ଼ ଚମତ୍କାର । ଇନ୍ଦ୍ରଙ୍କ ସଭାରେ ନୃତ୍ୟବିଳାସିନୀ ଅପରୂପା ଉର୍ବଶୀ ଛଟକ ନେତ୍ରରେ ଶିକାର ହେଉଛନ୍ତି ସେ ଦିନ ନିଜେ ସୃଷ୍ଟିକର୍ତ୍ତା ବ୍ରହ୍ମା । ଏହା ପୁଣି ତାଙ୍କ ନିଜ ଜାମାତା କନ୍ଦର୍ପଙ୍କ ଦୋଷରୁ କାରଣ ସ୍ୱର୍ଗର ନୃତ୍ୟରେ ଏ ଅସୁର ମଧ୍ୟରେ କନ୍ଦର୍ପଙ୍କ ଆଗମନ ପ୍ରତି କାହାରଦୃଷ୍ଟି ନଥିଲା । କେହି ତାଙ୍କୁ ଆସନ ଗ୍ରହଣ କରିବାକୁ ମଧ୍ୟ କହିଲେ ନାହିଁ । ଏଣୁ କନ୍ଦର୍ପ ନିଜକୁ ଅସମ୍ମାନିତ ବୋଧକରି ଶେଷକୁ ନିଜ ଶ୍ୱଶୁର ବ୍ରହ୍ମାଙ୍କ ଉପରକୁ ପଞ୍ଚଶର ପ୍ରହାର କଲେ । ମଦନ ମଦ ଜର୍ଜର ବେଦପତି ଅଗତ୍ୟା ଉର୍ବଶୀସହ ହିବାରିତ ଉଲଗ୍ନ ହୋଇ ନୃତ୍ୟକଲେ । ଶେଷରେ କନ୍ଦର୍ପ ଏହା ମୂଳରେ ଥିବାର ଜାଣି ତାଙ୍କୁ ଅଭିଶାପ ଦେଇ କହିଲେ, ତୋର ଏହି ଅସୁର ପ୍ରବୃତ୍ତି ହେତୁ ମର୍ତ୍ତ୍ୟରେ ତିନଥର ଦୈତ୍ୟ ରୂପେ ଜନ୍ମିବୁ ।

"ଆଦ୍ୟରେ ମହିଷାସୁର ରୂପ ପ୍ରକାଶିବୁ
ଦୁର୍ଗାଙ୍କ ହସ୍ତେ ଲେଉଟି ଜନମ ତୁ ନେବୁ ।
କାଳନେମି ନାମେ ତୋର ହେବ ଜନ୍ମ ଗୋଟି
ସେ ଜନ୍ମେ ତୋତେ ମାରିବେ ତୋହର ପୁହେଟି
ତୃତୀୟେ କଂସ ହୋଇଣ ଦ୍ୱାପରେ ଜନ୍ମିବୁ
ଅନେକ ଉପଦ୍ରବେ ତୁ ଲୋକଙ୍କୁ ନାଶିବୁ

ମଞ୍ଚା ଉପରେ ଉଠିଲେ କୃଷ୍ଣ ଯାଇ ବେଗେ
ସ୍ପର୍ଶିଲ କ୍ଷଣି ପଶିବ ପ୍ରାଣ କୃଷ୍ଣ ଅଙ୍ଗେ
ପଡ଼ିବା କ୍ଷଣି କୃଷ୍ଣ ଅଙ୍ଗରେ ମିଶିବୁ
ମୁଁ ତୁମ୍ଭର ପୁତ୍ର ହେବ ବୋଲିଣ ବୋଲିବୁ ।"
(ନୃସିଂହ ପୁରାଣ, ପ୍ରଥମ ରତ୍ନାକର)

ସେହି ଅଭିଶପ୍ତ 'କନ୍ଦର୍ପ' ଆଜି କଂସ ରୂପରେ ଓ ସେ ପୁଣି ମଲ୍ଲବେଳକୁ ପ୍ରଭୁଙ୍କ ପୁତ୍ର ହେବାକୁ ମନ ବଳାଇବାରୁ କୃଷ୍ଣ ତାଙ୍କୁ ରୁକ୍ମିଣୀ ଗର୍ଭରେ 'ପ୍ରଦ୍ୟୁମ୍ନ' ଓ 'ମୀନକେତନ' ନାମ ଦେଇ ଜନ୍ମ କରାଇବେ । ରଙ୍ଗସଭା ତଳେ ସେ ମରିବ । ଏଣୁ ପ୍ରଭୁଙ୍କର ଏହି ରଙ୍ଗାବତାର । ସେଇ କନ୍ଦର୍ପ-ରୂପୀ କଂସ ସ୍ପର୍ଶିଛି କେତେବେଳେ ପ୍ରଭୁ ଜନ୍ମିବେ । ତାର ତିନି ଅଭିଶପ୍ତ ଜନ୍ମ ସରିବ, ସ୍ୱର୍ଗକୁ ବାହୁଡ଼ିବ, ଶମ୍ବରକୁ, ରତିକନ୍ୟାକୁ ବିବାହ ହେବ । ଏଣୁ ପ୍ରଭୁଙ୍କର ଏ ରଙ୍ଗାବତାର । ଏଣୁ ପ୍ରଭୁ କୃଷ୍ଣଚନ୍ଦ୍ର ଆଜି ସେଇ ଅସୁର-କୁଳ-କେତୁ କଂସର ନିଧନ ନିମନ୍ତେ ତତ୍ପର । କଂସର ଦୌରାତ୍ମ୍ୟ ତେଣୁ ବଢ଼ୁଛି । ପ୍ରଭୁ ଜନ୍ମୁ ନାହାନ୍ତି କାହିଁକି ? କାରଣ ତା'ର ଦୌରାତ୍ମ୍ୟର ଆଧିକ୍ୟ ହିଁ ଭବଗ୍ରାହୀ ପ୍ରଭୁଭକ୍ତ ଚିନ୍ତାମଣିଙ୍କର ଆଶୁ ନରଜନ୍ମ ଧାରଣ । ଶେଷରେ ଧରଣୀରୂପା ଗୋମାତା ବିଭୁଷା ସହି ନ ପାରି କ୍ଷୀରାବ୍ଧି— ଶାୟୀଙ୍କୁ ଦେବତାଙ୍କ ଗହଣରେ ନିବେଦନ କରିଛି । ପୁରାଣରେ ଉଲ୍ଲେଖ ଅଛି—

"ଗୌର୍ଭୂତ୍ୱାଶ୍ରୁମୁଖୀ ଖିନ୍ନା କ୍ରନ୍ଦତି କରୁଣଂ ବିଭୋଃ
ଉପସ୍ଥିତାନ୍ତିକେ ତସ୍ମୈ ବ୍ୟସନଂ ସମବୋଚତଃ"
(ଭାଗବତ)

ଅଶ୍ରୁମୁଖୀ ଧରଣୀରୂପା ଗୋମାତାଙ୍କ ବୈକଲ୍ୟରେ ଦୁଃଖିତ ହୋଇ ପ୍ରଭୁ କହିଛନ୍ତି—"ଦୁଃଖ କର ନାହିଁ । ଯଥାସମୟରେ ମୁଁ ବସୁଦେବ ଯାଦବ ଘରେ ଜନ୍ମ ହେବି" ।

"ବସୁଦେବ ଗୃହେ ସାକ୍ଷାତ୍ ଭଗବାନ୍ ପୁରୁଷୋ ପରଃ
ଜନିଷ୍ୟତେ ତତ୍ ପ୍ରୀୟାର୍ଥଂ ସମ୍ଭବନ୍ତୁ ସୁର ସ୍ତ୍ରିୟଃ"

ବିଷ୍ଣୁ ବସୁଦେବ ଘରେ ଜନ୍ମିବାକୁ କାହିଁକି କହିଲେ ? ସେ ବସୁଦେବ ପୁଣି କିଏ ? ତାହାର ପୌରାଣିକ ପୃଷ୍ଠଭୂମି ମଧ୍ୟ ଓଡ଼ିଆ ଭାଗବତ ପୃଷ୍ଠାରେ ଲିପିବଦ୍ଧ । ପୂର୍ବେ 'ପୃଶ୍ନି' ଓ ସୁତପା ପତି ପତ୍ନୀ ଉଭୟେ ଶହେ ବରଷ ଦୃଢ଼ ଚିତ୍ତରେ ତପସ୍ୟା କରି ନାରାୟଣଙ୍କୁ ପୁତ୍ର ରୂପେ ପାଇବାକୁ ମନ ବଳାଇଥିଲେ । ଏଣୁ ନାରାୟଣ ତାଙ୍କ ମନସ୍କାମନା ପୂର୍ଣ୍ଣ କରିଥିଲେ ବୋଲି ବନ୍ଦୀଶାଳାରେ ନବଜାତ କୃଷ୍ଣ ବାତ୍ସଲ୍ୟ ପାଗଳୀ ଦେବକୀଙ୍କୁ ବୁଝାଉଛନ୍ତି:—

"ପ୍ରଥମେ ହୋଇଲି ମୁଁ ଜାତ ।
ନାମ ମୋ ପୃଶ୍ନି ଗର୍ଭଖ୍ୟାତ
ଦ୍ୱିତୀୟେ କଶ୍ୟପ ଅଦିତି ।
ରୂପରେ ତୁମ୍ଭ ଦୁହେଁ ପତି
ମୁଁ ପୁଣି ତୁମ୍ଭ ଗର୍ଭେ ଜାତ ।
ଉପେନ୍ଦ୍ର ବାମନ ବିଖ୍ୟାତ
ମୋହର ନାମ ଭବଗ୍ରାହ୍ୟ ।
ଜନ୍ମିଲି ପୁଣି ଦେହ ବହି"

(ଭାଗବତ-ଦଶମସ୍କନ୍ଧ)

ଏଣୁ ପୂର୍ବଜନ୍ମର ପୃଶ୍ନି ଓ ସୁତପା ପରେ ପରେ କଶ୍ୟପ-ଅଦିତି, ସତ୍ୟଯୁଗରେ ଯମଦଗ୍ନି-ରେଣୁକା ତ୍ରେତୟା ଯୁଗରେ ଦଶରଥ-କୌଶଲ୍ୟା ଓ ଏ ଜନ୍ମରେ ବସୁଦେବ-ଦେବକୀ ରୂପେ ଜନ୍ମିଛନ୍ତି । ଯୁଗେ ଯୁଗେ ଏମାନେ ନାରାୟଣଙ୍କର । ପିତାମାତା ଦେବକୀ ଜନ୍ମଦାତ୍ରୀ ସତ ହେଲେ ଯଶୋଦା ପାଳପୁତ୍ରୀ ଓ କାବ୍ୟପୁରାଣରେ ଦେବକୀ-ବସୁଦେବଙ୍କ ଆକୁଳତା ଅପେକ୍ଷା ନନ୍ଦ-ଯଶୋଦାଙ୍କର କୃଷ୍ଣ ଚିନ୍ତା ବିଦଗ୍ଧ ପ୍ରାଣର ସରସ ବର୍ଣ୍ଣନା ଦେଖାଯାଏ । ସେ ନନ୍ଦ-ଯଶୋଦା ପୁଣି ସେହି ତ୍ରେତୟା ଯୁଗର ରାମଭକ୍ତ ।

ସୀତାହରଣ ରାମ ଅନୁଜ ଲକ୍ଷ୍ମଣଙ୍କ କ୍ଷୁଧାରେ ଆତୁର ହୋଇ ବନକୁ ଫଳସଂଗ୍ରହ ନିମନ୍ତେ ପଠାନ୍ତେ ଲକ୍ଷ୍ମଣ ଇତସ୍ତତଃ ଭ୍ରମଣ କରି ଶେଷରେ ଏକ 'ଗୋପାଳଟି'କୁ ଭେଟି କ୍ଷୀରପ୍ରାର୍ଥୀ ହେଲେ । ଗୋପାଳ

'ପ୍ରଭାକର' କ୍ଷୀର ଦାନ କରି ରାମଲକ୍ଷ୍ମଣଙ୍କ ଜୀବନ ରକ୍ଷା କରିଥିବାରୁ ତ୍ରେତୟାଯୁଗର ରାମ ସନ୍ତୁଷ୍ଟ ଚିତ୍ତରେ ତାହାର ଋଣ ଶୁଝି ନ ପାରି ତାଙ୍କୁ କହିଥିଲେ—

" ଏ ଜନମେ ଉପକାର ଶୁଝି ନ ପାରେ ତ'
ଦ୍ୱାପରେ ରଙ୍ଗାବତାର ହୋଇବି ମୁହିଁ ତ
ଏ ଛନ୍ତି ପତ୍ନୀ ହୋଇବେ ଆମ୍ଭ ପିତାମାତା
କାହ୍ନୁ ସଙ୍କର୍ଷଣ ନାମ ଆମ୍ଭର ଜାଣିଥା ।
ନନ୍ଦ ଯଶୋଦା ରୂପେ ଏ ଦୋହେ ହେଲେ ଜାତ
ମଥୁରାରେ ଜନ୍ମ ଗୋପେ ଯାଇ ବଢ଼ିବୁ ତ "

(ହରିବଂଶ-୩ ପୃ ୪୭)

ଏଣୁ କୃଷ୍ଣ ଜନ୍ମକୁ କଂସ, ବସୁଦେବ ଉତ୍କଣ୍ଠାରେ ରହିଁ ରହିଲ ପରି ପୂର୍ବଜନ୍ମର 'ପ୍ରଭାକର' ମଧ୍ୟ ଏ ଜନ୍ମରେ ନନ୍ଦମହାକୁଡ଼ ରୂପେ ଜନ୍ମ ହୋଇ ସେହି କଳାକାହ୍ନୁଙ୍କୁ ରହିଁ ବସିଛି ।

କେବଳ ଯେ କୃଷ୍ଣ କଂସ ହନ୍ତା ହେବେ, ତା ନୁହେଁ ସେ ଗୋପାଙ୍ଗନାଙ୍କର ମଧ୍ୟ ବିରହ-ହନ୍ତା, ସେମାନଙ୍କ ହୃଦୟବଲ୍ଲଭ ଓ ପ୍ରାଣାଧିକ । ଗୋପୀ ନ ଥାଇ କୃଷ୍ଣ ନାହିଁ ଏବଂ ଜନ୍ମର ମୂଳ ହେଉଛି ସେ ଗୋପୀ ରମଣ ।

" ମୁଁ ଜାତ ବସୁଦେବ ଘରେ ।
ବଢ଼ିବି ଯଶୋଦାର କୋଳେ ।
ଷୋଳ ସହସ୍ର ଗୋପନାରୀ
ରମିବି ବୃନ୍ଦାବନେ ହେରି "

( ଭାଗବତ-ଦଶମସ୍କନ୍ଧ )

ସେ ଗୋପୀମାନଙ୍କର ସେହିପରି ପୌରାଣିକ ପୃଷ୍ଠଭୂମି ରହିଛି । ଗୋମଣ୍ଡ ଗିରିବାସୀ ଋଷିମାନେ କଠୋର ତପସ୍ୟାରେ ଈଶାନ (ମହାଦେବ)ଙ୍କୁ ମନାଇ 'ମୁକ୍ତି' ପ୍ରାର୍ଥନା କଲେ । ମାତ୍ର ଈଶାନ ଦେବ କହିଲେ 'ଧର୍ମ, ଅର୍ଥ, କାମ' ମୁଁ ଦେଇପାରେ ମାତ୍ର 'ମୁକ୍ତି' 'ମୋର' ଦେବା ମୋଠାରେ ନାହିଁ, ତୁମ୍ଭେ ନାରାୟଣଙ୍କୁ ପ୍ରାର୍ଥନା କର ।

" ବାଳଗୋପାଳ ସ୍ୱରୂପ ଧରି ବନମାଳୀ
କୁଞ୍ଜବନେ କରିବେ ସେ ନାନାରଙ୍ଗେ କେଳି
ତୁମ୍ଭେମାନେ ଜନ୍ମିଥିବ ଗୋପିକା ସ୍ୱରୂପେ
ନାରାୟଣ ଅଙ୍ଗସଙ୍ଗ ହେବ ପୂର୍ବ ତପେ,
ତୁମଙ୍କୁ ଯେସନେ କ୍ରୀଡ଼ା କରିବେ ଶ୍ରୀପତି
ସେ କାଳରେ ପାଇବ ସର୍ବେ ସାଯୁଜ୍ୟ ମୁକତି"

(ହରିବଂଶ ୧ମ – ପୃ ୧୪୮)

ପୂର୍ବର ସେହି କୃଷ୍ଣ ଅଙ୍ଗଲିପ୍‌ସୁ ଋଷିମାନେ ଗୋପୀ ଜନ୍ମଲାଭ କରି ପୁଣି ରହିଁ ବସିଛନ୍ତି । କେତେବେଳେ କୃଷ୍ଣ ଜନ୍ମିବେ । ସବୁ ଗୋପୀଙ୍କ ଭିତରେ ପୁଣି ବୃଷଭାନୁ ଜେମା 'ରାଧା' ବେଶୀ ରସିକା ଓ ପ୍ରେମାଧିକା । ସେ ପୁଣି ନାରାୟଣଙ୍କ ପ୍ରିୟତମା ଲକ୍ଷ୍ମୀ । ନାରାୟଣ ପୁଣି ତାଙ୍କୁ ଆଗରୁ ପଠାଇଛନ୍ତି । 'ଲକ୍ଷ୍ମୀ' କମଳ-ଶଯ୍ୟା-ଶାୟିନୀ ହୋଇଥିବା ସମୟରେ ଶିଶୁ ଅବସ୍ଥାରେ ଅପୁତ୍ରକ ରାଜା ମୃଗୟା-ବିହାରୀ 'ବୃଷଭାନୁଙ୍କ' ଦୃଷ୍ଟି ଆକର୍ଷଣ କରି ଗୋପକୁ ଆସିଲେଣି । ଏଠାରେ ମଧ୍ୟ ସେହି ଲୀଳାମୟୀଙ୍କ ପୂର୍ବ ଇଙ୍ଗିତ ସେ ପୁଣି ରହିଁଛନ୍ତି । କୃଷ୍ଣଚନ୍ଦ୍ର କେଉଁଦିନ ଗୋପକୁ ଆସିବେ; କାରଣ ନାରାୟଣ ଛଡ଼ା 'ଲକ୍ଷ୍ମୀ'ଙ୍କର ଗତି ନାହିଁ । ମୁଖକୁ ସେ 'କ୍ଷୀର ବା ନୀର' ନେଇ ନାହାନ୍ତି । ରତ୍ନଖଟର ବିଚିତ୍ର ଶଯ୍ୟାରେ ଆଜ ଲକ୍ଷ୍ମୀରୂପୀ ରାଧାଙ୍କର ନିଦ୍ରା ନାହିଁ । ଗୋପରେ କୃଷ୍ଣ ଜନ୍ମିବେ । ସେ କାନରେ ଶୁଣିଲେ କ୍ଷୀର ନୀର ପାନ କରିବେ । ଏଣୁ ପ୍ରାଣାଧିକା ରାଧା ମଧ୍ୟ କୃଷ୍ଣଙ୍କ ଅପେକ୍ଷାରେ ଅଛନ୍ତି ।

'ରାଧା'ଙ୍କର ବିବାହିତ ସ୍ୱାମୀ 'ଚନ୍ଦ୍ରସେଣା' ସେହିପରି ତ୍ରେତୟା ଯୁଗର 'ହନୁମାନ'ର ରୂପାନ୍ତର । ଅଶୋକବନସ୍ଥ ସୀତାଙ୍କ ପ୍ରଥମ ସୌନ୍ଦର୍ଯ୍ୟ ଦର୍ଶନରେ ରାମଭକ୍ତ ହନୁମାନର ଅନ୍ତର୍ଦ୍ଦେଶରେ ସାମାନ୍ୟ କାମପିପାସା ଜାଗି ଉଠିଲା । ଅନ୍ତର୍ଯ୍ୟାମୀ 'ରାମ' ତାହାପରେ ଜାଣି ପାରିଲେ, ହନୁମାନ ପ୍ରମାଦ ଗଣିଲା ଓ 'ପ୍ରଭୁଙ୍କ ଠାରେ ଦ୍ରୋହ କଲି' ବୋଲି ମନେ ମନେ ଧିକ୍‌କାରିଲା । ଭବଗ୍ରାହୀ ରାମଚନ୍ଦ୍ର କହିଥିଲେ ଦ୍ୱାପର ଯୁଗରେ—

"ସୁଦର୍ଶନ ଗୋପାଳର ତୁ ହୋଇବୁ କୁମର
ସବୁ ଗଉଡ଼ ଉପରେ ହେବୁ ତୁ ମହର
× × ×
ରାଧିକାର ଅଙ୍ଗ ଭୁଜ କେବେ ନ ଛୁଇଁବୁ
ଜଗିଲାର ପରକାରେ ତାଙ୍କୁ ଜଗିଥିବୁ ।"

ଏଣୁ ଚନ୍ଦ୍ରସେଣା ଆଜ କେଉଁ ନୁହେଁ, ନଜେ ନାରସ୍ବଣ ଭକ୍ତ ହନୁମାନ । ସେ' ତ ଗୃହିଁଛୁ ।

କୃଷ୍ଣଙ୍କର ରଙ୍ଗରସ ସ୍ଥଳ ଯମୁନାକୂଳ, କେଳ କଦମ୍ବମୂଳ ଓ ସେ ରହନ୍ତୁ 'ଗୋପାଳ ମେଳ' ହାତରେ ତାଙ୍କର ସେ ବରହ ବଂଶୀ, ଗୋପୀମାନଙ୍କ ନାମ ଧର ଧର ଡାକେ, ସେ ବଂଶୀର ଅନ୍ୟନାମ ମୋହନବଂଶୀ । ତାର ସପ୍ତରନ୍ଧ୍ରରେ ସପ୍ତଦେବଦେବୀ ବରଜମାନ । ସେ ବଂଶୀର ପ୍ରଥମ ରନ୍ଧ୍ରରେ ସରସ୍ବତୀ, ଦ୍ୱିତୀୟରେ ରତ, ତୃତୀୟରେ ଉମା, ଚତୁର୍ଥରେ ବସ୍ତ୍ର ବାମା (ଲକ୍ଷ୍ମୀ), ପଞ୍ଚମରେ ଜଟଛାରୀ, ଷଷ୍ଠରେ ସାବତ୍ରୀ ଓ ସପ୍ତମ ରନ୍ଧ୍ରରେ କାମଦେବ; ଏଣୁ ସ୍ତମ୍ଭନ, ମୋହନ ଉଚ୍ଚାଟନରେ ଏ ଦକ୍ଷ ।

"ମୋହିନୀମାନେ ବସିଲେ ଯହୁଁ ରନ୍ଧ୍ରେ ଆସି
ତେଣୁ ନାମ ବୋଲାଇଲା ମୋହନ ବଇଁଶୀ"
( ନୃସିଂହପୁରାଣ )

ପୂର୍ବେ ଯଜ୍ଞରୁ ଯେଉଁ ଅଦ୍ଭୁତ ବାଉଁଶର ଉତ୍ପତ୍ତି ହୋଇଥିଲା, ସେଥିରୁ ଯେଉଁ ପିନାକ ସାରଙ୍ଗ ଓ ଗାଣ୍ଡିବ ପ୍ରଭୃତ ଧନୁର ଜନ୍ମ ସେହି ବାଉଁଶ ପ୍ରସୁତ ବ୍ରହ୍ମା- ନର୍ମିତ ବଂଶୀ ସେହିଦନୁ ସେ ସାଇତ ରଖିଛନ୍ତି । ଦ୍ୱାପର ଯୁଗରେ କୃଷ୍ଣ ତାକୁ କାମରେ ଲଗାଇବେ । କୃଷ୍ଣ ଆଜ ଜନ୍ମ ନ ହୁଅନ୍ତେ କପର ?

ଗୋପରେ ଅଜ ଆନନ୍ଦର କଳରୋଳ । ଗନ୍ଧବହ ଅଜ ଉଚ୍ଛଳା, ଗଗନ ପବନ ସୁରଭିତ । ଗ୍ରାମପାଟଣା ପୁରଦେଶ ସର୍ବତ୍ର ମଙ୍ଗଳ ଗୀତନାଦର ମଧୁମୂର୍ଚ୍ଛନା, ନଦୀରେ କଲ୍ଲୋଳ ଜାଗିଛୁ ।

ବୃକ୍ଷଡ଼ାଳରେ ପକ୍ଷୀଙ୍କ କଣ୍ଠରେ ଅଜଣା ଗୀତ ମାଧୁରୀ । ପୁଷ୍ପବନରେ ବନଲତା, ମଙ୍ଗଳ ବେଦ ଧ୍ୱନିରେ ବିପ୍ରକୁଳ ସମସ୍ତେ ଯେପରି ଉନ୍ମନା । ଆଜ —

'ଆନନ୍ଦ ହେଉଅଛି ମହୀ
କୃଷ୍ଣ ଜନ୍ମିବେ ଦେହବହି'

(ଭାଗବତ)

କୃଷ୍ଣଙ୍କ ଅଷ୍ଟସଖା, କଂସର ଅଷ୍ଟମଲ୍ଲ, ରାଧାଙ୍କ ଅଷ୍ଟସଖୀ ସମସ୍ତେ ଆଜ ଉତ୍‌ଫୁଲ୍ଲ । କାରଣ ପୂର୍ବଜନ୍ମର କଥା ସବୁ ଆଜ ଯେପରି ସେଇ କୃଷ୍ଣଜନ୍ମରେ ହିଁ ପୂର୍ଣ୍ଣତା ପ୍ରାପ୍ତ ହେବ । ଏହିପରି ପୌରାଣିକ ତଥ୍ୟ ସବୁର ସାର୍ଥକ ରୂପାୟନ ପାଇଁ ପୂର୍ବରୁ ବଳରାମ ରୂପୀ ରୁଦ୍ର ଶ୍ରାବଣୀ ପୂର୍ଣ୍ଣିମାରେ ଜନ୍ମ ନେଇ ସାରଲେଣି । ସେ ବି ଅପେକ୍ଷାରେ ଅଛନ୍ତି । ଦେବତାଗଣ ଗୋପାଳ ବେଶରେ ପୂର୍ବରୁ ଆସି ସାରଲେଣି । ନିଜେ ବ୍ରହ୍ମା ଗୋମାତା ସୁରଭିର ଅଭିଶାପରେ ଗୋଗୋଷ୍ଠ ମଧ୍ୟରେ ନିଜର ରୂପ ବିସ୍ତାର କଲେଣି । ବିଷ୍ଣୁ ଆଜ ରହିବେ କାହିଁକି ? ସେ ନିଜେ ତ' ପୁଣି ଶ୍ୱେତ ଓ କୃଷ୍ଣବେଶ ଦୁଇଟି ବ୍ରହ୍ମାଙ୍କୁ ପୂର୍ବରୁ ଦେଇ ତାକୁ ଦେବକୀ ଗର୍ଭରେ ସ୍ଥାପନ କରିବାକୁ କହିଥିଲେ । ସେହି 'ଶ୍ୱେତକେଶ' ଓ 'ବଳୀ' ବା 'ସଙ୍କର୍ଷଣ' ରୂପେ ଜାତ ହେଲେଣି । ସମସ୍ତେ ବର୍ତ୍ତମାନ ପ୍ରସ୍ତୁତ । ସେ ଆଉ କାହିଁକି ? ସେ ବି' ଲୋଡ଼ୁଛନ୍ତି ସେଇ ଆତ୍ମପ୍ରକାଶ ।

ପ୍ରାବୃଟ କାଳର ସେହି ଘନଘୋର ରଜନୀର ଭାଦ୍ରମାସ କୃଷ୍ଣପକ୍ଷ ଅଷ୍ଟମୀ । ନିଶାର୍ଦ୍ଧଭାଗ ଓ ରୋହିଣୀ ନକ୍ଷତ୍ର ସଂଯୁକ୍ତ ବୃଷରାଶିରେ ହରି ଜନ୍ମିଲେ ।

ସେହି ପବିତ୍ର ଯାମିନୀ ବର୍ଷକ ପରେ ଉପଗତ ହୁଏ । ହରି ଜନ୍ମାଷ୍ଟମୀ ତିଥି । ସତେ ଯେପରି ଭାରତର ସମସ୍ତଙ୍କ ଘରେ ରାତିରେ ପୁଅଟିଏ ଜନ୍ମେ । ଯେଉଁ କୃଷ୍ଣଙ୍କ ଇଚ୍ଛାରେ ସାଗର ସ୍ଥଳଭାଗରେ, ସ୍ଥଳ ଜଳଭାଗରେ, ଧୂଳିରାଶି ଶୈଳରେ, ଶୈଳ ଧୂଳିକଣାରେ, ତୃଣ ବଜ୍ରରେ ଓ ବଜ୍ର ତୃଣରେ, ବହ୍ନି ଶୀତଳତାରେ ଓ ହିମ ଦାହ୍ୟ ବସ୍ତୁରେ

ପରିଣତ ହୁଏ । ନିମ୍ନ ଶ୍ଳୋକ ମାଧ୍ୟମରେ ସେହି ଲୀଳାମୟ ଓ ସକଳ ମନୋରଥ ପୂର୍ତ୍ତିକାରୀ କୃଷ୍ଣଙ୍କ ଚରଣରେ ଭକ୍ତି ଅର୍ଘ୍ୟ ଜଣାଇ ଏ ପ୍ରବନ୍ଧର ଉପସଂହାର କରୁଛି ।

"ଅମ୍ଭୋଧିଃ ସ୍ଥଳତାଂ ସ୍ଥଳଂ ଜଳଧିତାଂ
ଧୂଳି ଲବଃ ଶୈଳତାଂ
ଶୈଳୋମୃତ୍କଣତାମ୍, ତୃଣଂ କୁଳିଶତାଂ,
ବଜ୍ରଂ ତୃଣ କ୍ଷୀଣତାଂ
ବହ୍ନିଃ ଶୀତଳତାଂ, ହିମଂ ଦହନତା-
ମାୟାତି ଯସ୍ୟେଚ୍ଛୟା
ଲୀଳା ଦୁର୍ଲ୍ଲଳିତାଦ୍ଭୁତ ବ୍ୟସନିନେ
କୃଷ୍ଣାୟ ତସ୍ମୈ ନମଃ ।"

[ ମରୁତୀର୍ଥ—ଜାନୁୟାରୀ—୧୯୭୨-ପୌରାଣିକ ବିଭାଗରେ ପ୍ରକାଶିତ ]



# କୃଷ୍ଣ ଉବାଚ

"ମାତ ଦେବକୀ ! ଏତେ କଣ ବୁଝାଇ କହିଲ ତଥାପି ମୋତେ ବିଶ୍ୱାସ କରୁ ନାହିଁ । ଦେଖନ୍ତୁ, ବର୍ତ୍ତମାନ ଦ୍ୱାପରଯୁଗ ସରି ସରି ଯାଉଛି । କଳିଯୁଗ ଆଗତ ପ୍ରାୟ । ଚତୁର୍ଦ୍ଦିଗରେ ଆସୁରିକ ପ୍ରଭାବ । ଧର୍ମର ଗ୍ଳାନି, ଦୈତ୍ୟଭାବ, ଅନ୍ୟାୟ, ଅଧର୍ମ, ଶୋଷଣ, ଅତ୍ୟାଚାରରେ ମୋର ପୁଣ୍ୟଭୂମି ଏହି ପୃଥିବୀ ଜର୍ଜରିତା, ସନ୍ତ୍ରସ୍ତା ଓ ଉତ୍ପୀଡ଼ିତା । ମୁଁ ଆଉ ସହିବି କେତେ ? ଦୁଷ୍ଟଦଳନ ଓ ଶିଷ୍ଟପାଳନ ତ ମୋର ଧର୍ମ । ଦାନବତାର ମାରଣ ଓ ମାନବତାର ତାରଣ ହିଁ ମୋର ଅବତାରର ପ୍ରାଣକେନ୍ଦ୍ର । ଏଣୁ ମୋତେ ତୁମରି ଗର୍ଭରେ ସ୍ଥାନ ଦିଅ ମା ଜନ୍ମଦାତ୍ରୀ ! ତୁମେ କଣ ଜାଣିନାହିଁ କଂସ ସେଦିନ କନକଭ୍ରାତା ସାଜି ତୁମକୁ ବସୁଦେବ ସହ ବି ାହ କରାଇ ରଥରେ ବସାଇ ଆଣିଲାବେଳେ ପଥରେ ସାମାନ୍ୟ ଦୈବବାଣୀରେ ଭୀତତ୍ରସ୍ତ ହୋଇ ତୁମ ଦୁହିଁଙ୍କୁ ଏ ବନ୍ଦୀ ଗୃହରେ ବନ୍ଦୀ ଓ ବନ୍ଦିନୀରୂପେ ରଖିଛି । ପରମ ଧାର୍ମିକ ଦୟାଶୀଳ ପିତା ଉଗ୍ରସେନଙ୍କୁ ଅନ୍ୟାୟୀ ଜରାସନ୍ଧର ଦୁଇକନ୍ୟା ସହ ବୈବାହିକ ବନ୍ଧନରେ ଆବଦ୍ଧ ହୋଇ ରାଜ୍ୟରୁ ବହିଷ୍କାର କରିଛି । ଏ ଦୌରାତ୍ମ୍ୟ କଣ ମୁଁ ସହିବି ? ଏ କଂସ ପ୍ରବୃତ୍ତିର ଲୋପ ହିଁ ମୋର ଧର୍ମ । ତୁମେ ଭାବୁଥିବ ସେ ମୋର ମାମୁଁ; ମାତ୍ର ସେ ଉଗ୍ରସେନ ବୀର୍ଯ୍ୟ ଜାତ ନୁହେଁ । ସେ ଇନ୍ଦୁମତୀ ଗର୍ଭଜାତ ବା ଦୁଷ୍ଟଦାନବ ଦ୍ରୁମିଳ ବୀର୍ଯ୍ୟସମ୍ଭୂତ । ଏଣୁ ତାଠାରେ ଉଗ୍ରସେନର ମାନବତା ପରିବର୍ତ୍ତେ ଦ୍ରୁମିଳ ରାକ୍ଷସର ଦାନବତା ଭରି ଯାଇଛି । ସେହି ଦାନବତାର ନିରାକରଣ ମୋର କାର୍ଯ୍ୟ ।

କଂସ ବା 'କାଳପୁରୁଷ'ର ହତ୍ୟା ହିଁ ମୋର ଏ ଅବତାରର ଲକ୍ଷ୍ୟ । କେବଳ ଗୋଟିଏ କଂସର ନିଧନରେ ଧରଣୀମାତାର ଗୁରୁଭାର ଲାଘବ ହେବ ନାହିଁ । ଚାଣୁରମାନ ଚାଣୁର ତୃଣାର ଅବତାର, ମୁଷ୍ଟିକ ଈର୍ଷାର, ବକାସୁର ଗର୍ବର, ବୃହନ୍ନଳା ପୀତ ହସ୍ତୀ ଉଦ୍ଧତ ସ୍ୱଭାବର ଅବତାର । ପୁରୁଷ ରୂପୀ କଂସର ଅଷ୍ଟମଲ୍ଲ ସହ ଯେତେ ମିତ୍ର ଅଛନ୍ତି ଏମାନେ ସମସ୍ତେ କାମ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟର ବହୁରୂପୀ

ଅବତାର । ଏମାନେ ସମସ୍ତେ କଂସ ବଂଶଦ୍ରୁମ ଅଂଶପ୍ରାପ୍ତି । ଏମାନଙ୍କ ନାମ ଶୁଣ ।

"ଧେନୁକାସୁର ତୃଣାବର୍ତ୍ତାସୁର । ମୁଷ୍ଟିକ, ଅଘା, ଷଣ୍ଢାସୁର
ଦ୍ୱିବିଦ ନାମେଣ ବାନର । ପ୍ରଲମ୍ବା, ବକା, ବତ୍ସାସୁର ।
ପୂତନା ନାମେଣ ରାକ୍ଷସୀ । ଆଗେ ମିଳିଲା ଖରକେଶୀ ।
କେତେ ମିଳିଲେ ଜରାସୁର । ବାଣ, ନାରକ କେତେଖର ।
ଏମନ୍ତେ କହିବଇଁ କେତେ । କଂସର ମିତ୍ର ଛନ୍ତି ଯେତେ ।

( ଭାଗବତ—ଦଶମସ୍କନ୍ଧ )

ଅଧର୍ମକୁ ନାଶକରି ଧର୍ମର ପ୍ରତିଷ୍ଠା ମୋର ଯୁଗେ ଯୁଗେ ଲକ୍ଷ୍ୟ । ଅଧର୍ମୀ କୌରବ ପକ୍ଷ ଦଳନ ସହ ଧାର୍ମିକ ପାଣ୍ଡବ ପକ୍ଷର ପାଳନ ମଧ୍ୟ ମୋର ଦଶଦଫା କାର୍ଯ୍ୟକ୍ରମରେ ଅନ୍ୟତମ । ଅନ୍ୟାୟ ବିରୁଦ୍ଧରେ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନକୁ ପ୍ରେରଣା ଦେଇ ତା ହସ୍ତରେ କୌରବରୂପୀ ଦୁଷ୍ଟଦଳନ କରିବି । ସମସ୍ତେ ଜାଣିବେ ଅର୍ଜ୍ଜୁନ ମୂଳ, ମାତ୍ର ଅର୍ଜ୍ଜୁନ ଜାଣିବ ଓ ଦୁନିଆ ଜାଣିବ ଦରିବ ଓ ଖ୍ରୀମପୁତ୍ର ବେଲଳ ସେନ ଜାଣିବ ପ୍ରକୃତ ମହାଭାରତ ଯୁଦ୍ଧର ମୂଳ ହର୍ତ୍ତାକର୍ତ୍ତା ଓ ଦଇବବିଧାତା କିଏ । ଶେଷରେ ସମସ୍ତେ ସ୍ୱୀକାର କରିବେ "କର କରାଉ ଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ ।" ମୋର ମୁଖନିଃସୃତବାଣୀ ଶ୍ରୀମଦ୍ ଭଗବତ୍ ଗୀତା ପୃଥିବୀରେ ସମଗ୍ର ଧର୍ମଶାସ୍ତ୍ର ମଧ୍ୟରେ ଶ୍ରେଷ୍ଠଗ୍ରନ୍ଥ ରୂପେ ଗୃହୀତ ହେବ । ନାନାବିଧ ଯୋଗତଥ୍ୟସମ୍ବଳିତ ବହୁ ବିଚିତ୍ର ଧର୍ମସୂତ୍ରପୂର୍ଣ୍ଣ ଏହି ଗ୍ରନ୍ଥ ଧାର୍ମିକ ଓ ଶାସ୍ତ୍ରପ୍ରେମୀମାନଙ୍କୁ ଉଦ୍‌ବୁଦ୍ଧ କରିବ । ଯୁଗେ ଯୁଗେ ମୋର ଯେଉଁ ପୂର୍ବ କଥିତ ଦଶଦଫା ଗଠନମୂଳକ କାର୍ଯ୍ୟକ୍ରମ ଓ ତାର ଇତିବୃତ୍ତି ହେ ମାତ ! ଟିକିଏ ଶ୍ରବଣ କର । ଭକ୍ତମାନେ କହିବାର ଶୁଣିଛୁ ।

"ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳ ମୁଦ୍‌ବିଭ୍ରତେ ।
ଦୈତ୍ୟାନ୍ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ
ପୌଲସ୍ତ୍ୟଂ ଜୟତେ, ହଳଂ କଳୟତେ କାରୁଣ୍ୟ ମାତନ୍ୱତେ
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତି କୃତେ କୃଷ୍ଣାୟ ତୁଭ୍ୟଂ ନମଃ ।"

ଏପରିକି ମୋର ନିଜ ଯଦୁବଂଶ ମଧ୍ୟ ଏଥିରୁ ବାଦ ଯିବ ନାହିଁ । ଯଦୁବଂଶର ଲୋକେ ମଧ୍ୟ ମଦମତ୍ତ ହେବେ । ଈର୍ଷା, ଦ୍ୱେଷ ଓ ଲୋଭର ବଶବର୍ତ୍ତୀ ହୋଇ ବିବାଦ କରିବେ, ମାନ୍ୟଗଣ୍ୟ ବ୍ୟକ୍ତିଙ୍କୁ ଅସମ୍ମାନ ପ୍ରଦର୍ଶନ କରିବେ, ଫଳରେ ମୋର ନିଜ ଯଦୁବଂଶ ମଧ୍ୟ ଧ୍ୱଂସପ୍ରାପ୍ତ ହେବ ।

ଏଣୁ ହେ ବୀରପ୍ରସବିନୀ ମାତା ! ତୋର ଗର୍ଭାଶ୍ରୟୀ ହେବାକୁ ଆଜ ଏ ପୁଣ୍ୟତିଥିରେ ତୋତେ ପ୍ରାର୍ଥନା କରୁଛି । ଶେଷଦେବ ବା 'ଅନନ୍ତ' ସେ ମଧ୍ୟ ବଳରାମ ରୂପେ ଜନ୍ମ ନେବେ । ଏ ଗୋକୁଳ ହେଉଛି ବୈକୁଣ୍ଠଧାମ । ତପସ୍ୱୀମାନେ ଗୋକୁଳର ବୃକ୍ଷରାଜି ଓ ଗୋପୀ ରୂପରେ ପ୍ରକଟିତ ହେଲେଣି । ବେଦର ସୂକ୍ତଗୁଡ଼ିକ ରୁକ୍ମଣୀ ଏବଂ ଭକ୍ତ ସ୍ୱରୂପିଣୀ ଗୋପୀମାନଙ୍କ ଉପରେ ପ୍ରକଟିତ ହେଲେଣି । "ମୁକ୍ତି ଦେବୀ ଯଶୋଦା ରୂପେ, ଚତୁର୍ବେଦ ବାସୁଦେବ ରୂପରେ ଏବଂ ମାତା ତୁମେ ବ୍ରହ୍ମବିଦ୍ୟାର ରୂପାନ୍ତର ହୋଇଛ । ଧର୍ମ ମୋର ମୟୂର ଚନ୍ଦ୍ରିକା, ମୋ ହସ୍ତଗତ 'ପଦ୍ମ' ହେବେ ବ୍ରହ୍ମା, ଋଷି କଶ୍ୟପ ହେବେ ଦହିମନ୍ଥା ଦଣ୍ଡ, ମାତା ଅଦିତି ହେଉଛନ୍ତି ଦଉଡ଼ି । ଯାହାଦ୍ୱାରା ଯଶୋଦା ମୋତେ ବାନ୍ଧିବେ । ଯୁଗେ ଯୁଗେ ମୁଁ ତୁମର ପୁଅ ! ଦଉଡ଼ିରେ ସେ ମୋତେ ବାନ୍ଧିବେ ନାହିଁ ଯେ ମୁଁ ମୋର ପୂର୍ବଜନ୍ମର ମାତୃ (ଅଦିତି) ଅଙ୍ଗ ସ୍ପର୍ଶ ସେହି ଦଉଡ଼ି ସହାୟତାରେ ପାଇବି । ସେହି ଅଦିତି ଗର୍ଭଜ ହୋଇ ପୁଣି ବଳିକୁ ଛଳି ଦେଇଥିଲି । ହେ ମାତ ଦେବକୀ ! ତୁମର ପୌରାଣିକ ପୃଷ୍ଠଭୂମି ମଧ୍ୟ ରହିଛି । ମାତ୍ର ସମୟ ଅଭାବରୁ ସଂକ୍ଷେପରେ କହୁଛି । ଯୁଗେ ଯୁଗେ ତୁମେ ମୋର ମାଆ, ମୁଁ ତୁମର ପୁଅ । ତୁମେ କହିପାର ମୁଁ ତ ଅଯୋନିସମ୍ଭୂତ, ପୁଣି କିପରି ମାନବ କୋଳରେ ଜନ୍ମ ହେବି କିନ୍ତୁ ମାତା ମନେରଖ ।

"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ"

ଏହାଛଡ଼ା ମୋତେ ପୂର୍ବଜନ୍ମର ଅଭିଶାପ ଅଛି ଯେ ଏହିପରି ବାରମ୍ବାର ମୁଁ ନର କଳେବର ଧାରଣ କରିବି । ସଂକ୍ଷେପରେ କହୁଛି ।

ସୃଷ୍ଟି ଆଦ୍ୟରେ ଯେତେବେଳେ ଆମ୍ଭେ ହରି, ହର, ବ୍ରହ୍ମା ଅନାଦି ଓ ଆଦିମାତାଙ୍କଠାରୁ ଜନ୍ମିଲୁ ସେତିକବେଳେ ଆଦିମାତାଙ୍କୁ ନିନ୍ଦା କରୁଥିଲି; ଏଣୁ ଆଦିମାତା ମୋତେ ଅଭିଶାପ ଦେଇଥିଲେ ।

"ତୁ ଯେ ଜ୍ଞାନବନ୍ତ ହୋଇ ପାପ ନ ଜାଣିଲୁ
ଯୋନିରୁ ଜନମି ତୁହି ଯୋନି ନିନ୍ଦା କଲୁ
ଯହୁଁ ଜାତ ହୁଅନ୍ତି ପ୍ରାଣୀ ଚରାଚର
ତାକୁ ନିନ୍ଦୁ ତହୁଁ ଜାତ ହୁଅ ଲକ୍ଷେବାର
ରଜ ବୀର୍ଯ୍ୟ କୁମ୍ଭୀପାକେ ଦଶମାସ ରହି
ଜନମ ହୁଅ ମାନବ ଦେହ ତୁହି ବହି ।"

( ହରିବଂଶ—୨ୟ ଖଣ୍ଡ-୧୬୭ ପୃ: )

ହେ ମାତ ! ତୁ ମନେ ଭାବୁଥିବୁ, ମୋର ତ ଷଡ଼ପୁତ୍ର ମଲେ, ଆଜି ଏ ପୁତ୍ର କଣ ରହିବ । କିନ୍ତୁ ମନେ ରଖିଥା ମା' ! ତୋର ଷଡ଼ପୁତ୍ର ତାଙ୍କର ପୂର୍ବଜନ୍ମ ଦୁଷ୍କୃତରୁ ମରିଛନ୍ତି । ମୋ ଉପରେ ଭରସା ରଖ, ଦେବଗଣ ଗହଣରେ ଆସିଥିବା ଅଶ୍ରୁମୁଖୀ ପୃଥିବୀ ମାତାରୂପୀ ଗୋ-ମାତାଙ୍କୁ ମୁଁ ପୂର୍ବରୁ ପ୍ରତିଶ୍ରୁତି ଦେଇ ସାରିଛି । ମୁଁ କ୍ଷୀରାବ୍ଧିଶାୟୀ ଥିବା ସମୟରେ ବ୍ରହ୍ମାଙ୍କୁ ପୂର୍ବରୁ ଶ୍ୱେତ ଓ କୃଷ୍ଣ ଦୁଇଟି କେଶ ଦେଇଥିଲି ତୁମ ଗର୍ଭରେ ସ୍ଥାପନ କରିବାକୁ । ଶ୍ୱେତ ରୋମରୁ ବଳରାମ ଜନ୍ମିବେ । ସେ ମୋ ଅପେକ୍ଷାରେ ଥିବେ । କଂସ ମାରଣ ମୋ ପକ୍ଷରେ କେଶତୁଲ୍ୟ । ତେତିଶକୋଟି ଦେବତାଙ୍କ ଆର୍ତ୍ତନାଦ, ଋଷି ମୁନି, ଗୋରୁ ବିପ୍ରଙ୍କ କରୁଣ ଚିତ୍କାର, ଜଳ, ସ୍ଥଳ ଆକାଶର କାରୁଣ୍ୟ, ପଶୁ ପକ୍ଷୀଙ୍କ ନୟନର ବୈକଲ୍ୟ, ହେ ମାତ ! ତୁମେ କଣ ଅନୁଭବ କରି ପାରୁନାହିଁ । ବର୍ତ୍ତମାନ କଳିଯୁଗ ଆଗତପ୍ରାୟ । ଦେଶ ତଥା ପୃଥିବୀ ଈର୍ଷା, ଲୋଭ, ଦ୍ୱେଷ, ବେଦଶାସ୍ତ୍ର ନିନ୍ଦା, ମଦାସୁର ଓ ମୋହରେ ଭାରାକ୍ରାନ୍ତ; ଏଣୁ ଏହି ଛଦ୍ମରୂପୀ ରାକ୍ଷସମାନଙ୍କର ଦୌରାତ୍ମ୍ୟରୁ ଧରିତ୍ରୀ-ମାତାଙ୍କୁ ରକ୍ଷା କରିବାପାଇଁ ହେ ମାତ ! ତୋର ଗର୍ଭରେ ମୋତେ ସ୍ଥାନ ଦିଅ । ଆଜ ପୁଣି ପୁଣ୍ୟତିଥି···ଧନୁ କୃଷ୍ଣ ନବମୀ ଗୁରୁବାର ଶୁଭ ଚନ୍ଦ୍ରଯୋଗ, "ଗୃରୁନାମେ କରଣ ଯେ ଶୁଭନାମେ ଯୋଗ, କନ୍ୟା

ଚନ୍ଦ୍ରର ଷାଠିଏ ଦଣ୍ଡଯାକ ଭୋଗ" ଭୋର ହୋଇଛୁ । ଧନୁ ସଂକ୍ରାନ୍ତିର ସାତଦିନ ଅନ୍ତର ହୋଇଛୁ । ଏଣୁ

"ନିର୍ଭୟେ ଗର୍ଭେ ଠାବ ଭୂ ମୋତେ ଦିଅସି
ଏତେ ବୋଲି ଗୋପୀନାଥ କହନ୍ତି ଆଶ୍ୱାସି ।"

ହେ ଜଗଜ୍ଜନନି ! ମୁଁ ଏବେ ତୋର ଗର୍ଭସ୍ଥ ହେବାକୁ ଯାଉଛୁ । ପୁଣି ଆତ୍ମପ୍ରକାଶ କରିବି । ଭାଦ୍ର ମାସ କୃଷ୍ଣ-ପକ୍ଷେଽଷ୍ଟମ୍ୟାଂ କଳୌ ଯୁଗେ ଅର୍ଦ୍ଧରାତ୍ରେ ଚ ରୋହିଣ୍ୟାଂ ଭବୌ ।

'ଭାଦ୍ରବମାସେ କୃଷ୍ଣ ପକ୍ଷେ । ସକଳ ଗ୍ରହ ଚନ୍ଦ୍ର ଉଚ୍ଚେ ॥
ଅଷ୍ଟମୀ ନିଶା ଅର୍ଦ୍ଧଭାଗେ । ରୋହିଣୀ ନକ୍ଷତ୍ର ସଂଯୋଗେ ॥
ବୃଷରାଶିରେ ନିଶାକର । ନକ୍ଷତ୍ର ଗ୍ରହେ ବଳୀୟାର ॥
ଗମ୍ଭୀର ଘୋର ମେଘ ଘୋଷ । ବର୍ଗ ଉତ୍ତମ ନବ ଅଂଶ ॥

(ଭାଗବତ—ଦଶମସ୍କନ୍ଧ)

× × ×

ପୂର୍ଣ୍ଣ ଆଠମାସ ପରେ କୃଷ୍ଣଚନ୍ଦ୍ର ଆବିର୍ଭାବ ହେଲେ । ଶ୍ରୀକୃଷ୍ଣଙ୍କ ଜନ୍ମୋତ୍ସବ ଜନ୍ମାଷ୍ଟମୀ ତିଥି ସବୁଠି ପାଳିତ ହେଲା । ଭାଦ୍ରମାସ କୃଷ୍ଣପକ୍ଷ ଅଷ୍ଟମୀ ରାତ୍ରି ଅର୍ଦ୍ଧରେ, ସେହିଦିନୁ ସେହି ଲୀଳାମୟ ପୁରୁଷ ସମସ୍ତଙ୍କ ଘରେ ପୁତ୍ର ରୂପେ ଜନ୍ମ ହୋଇ ଆସୁଅଛନ୍ତି ।



# 'ନମୋ ଗଣେଶ ! ବିଘ୍ନେଶ !

ସିନ୍ଦୂରାରୁଣ—ମସ୍ତକ, ତ୍ରିନୟନ, ସର୍ବବିଘ୍ନନାଶକ ନୈବେଦ୍ୟ-ଚନ୍ଦନାପ୍ରିୟସୂଚ, ଲମ୍ବୋଦର, ପାଶାଙ୍କୁଶଧର ହସ୍ତ, ଭକ୍ତାନୁଗ୍ରହ କାରକ, ଭୟହର, ବିଦ୍ୟାଦାତା ମହେଶାତ୍ମଜ, ଗଣନାଥ ଗଣେଶଙ୍କର ଆଜ ସେହି ପୂତ ଅର୍ଚ୍ଚନୋତ୍ସବ । ଭାରତର ଆବାଳବୃଦ୍ଧବନିତାଙ୍କ ପ୍ରାଣରେ ଭକ୍ତି, ଆନନ୍ଦ ଓ ନମସ୍କାର ତ୍ରିବେଣୀ ସ୍ରୋତ ସୃଷ୍ଟି କରିଛି । ସେହି 'ସୁରେଶ୍ୱରଂ, ନିଧୀଶ୍ୱରଂ ଗଣେଶ୍ୱରଂ, ମହେଶ୍ୱରଂ ତମାଶ୍ରୟେ ପରାତ୍ପରଂ ନିରନ୍ତରମ୍'ଙ୍କ ପାଦପଦ୍ମ ସ୍ମରଣ ପୂର୍ବକ ତାଙ୍କର ଗୌରବ ଗାନ କରି ବିନାୟକଙ୍କ ପୁରାଣ ବର୍ଣ୍ଣିତ ରହସ୍ୟମୟ, ଆଖ୍ୟାନ ସମ୍ବନ୍ଧରେ ଏକ ସ୍ଥୂଳ ଧାରଣା ପ୍ରଦାନ ଏ କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ।

ବିନାୟକ ବ୍ରତପୂଜାରୁ ଜଣାଯାଏ ଯେ ବିନାୟକଙ୍କୁ ଯେ କୌଣସି ମାସର ଶୁକ୍ଳ ଚତୁର୍ଥୀରେ ପୂଜା କରି ପାରିବ; ମାତ୍ର ଭାଦ୍ରବ ଶୁକ୍ଳ ଚତୁର୍ଥୀରେ ପୂଜାକଲେ ବିଶେଷ ଫଳ ହୁଏ । ଏହାଛଡ଼ା ଯେଉଁ ମାସରେ ନିଜର ଭକ୍ତି ହେବ ସେହି ମାସର ଶୁକ୍ଳ ଚତୁର୍ଥୀ ଦିନ ଏ ପୂଜା କରିବ ଏବଂ ସେହିଦିନ ଏହାର ଉଦ୍ୟାପନ କରିବ ।

"ଗଜବକ୍ତ୍ରଂ କ ଶୁକ୍ଳାୟାଂ ଚତୁର୍ଥ୍ୟାଂ ପୂଜୟେନ୍ନୃପ
ମାସି ଭାଦ୍ରପଦେ ପ୍ରାପ୍ତେ ଚତୁର୍ଥ୍ୟାଂଚ ବିଶେଷତଃ
ଯଦା ଶ୍ରେୟୋବୃଦ୍ଧ୍ୟତେ ଭକ୍ତିର୍ମାସି ପୂଜ୍ୟୋ ଗଣାଧିପଃ
ଏକ ମାସଂ ଦ୍ୱିମାସଂ ବା ଷଣ୍ମାସଂ ବତ୍ସରଂ ତଥା
ଅଥବା ଗଣନାଥସ୍ୟ ବ୍ରତଂ ଦ୍ୱାଦଶ ବାର୍ଷିକଂ ।"

ଗୋମତୀ ତୀରବାସୀ ଶୌନକାଦି ଋଷିମାନେ ଏକଦା ମୁନୀଶ୍ୱର ସୂତ ମହର୍ଷିଙ୍କୁ ପଚାରିଲେ, "ହେ ମହର୍ଷି । ନିର୍ବିଘ୍ନରେ କପରି

ଦାମ୍ପତ୍ୟ କଳହରେ ପୁତ୍ର ଓ ସୌଭାଗ୍ୟ ପ୍ରାପ୍ତିରେ, ବନ୍ଧୁ ଭେଦରେ, ଉଦାସୀନ ଲୋକଙ୍କୁ ସନ୍ତୁଷ୍ଟ କରିବାରେ, ବଦ୍ୟାରମ୍ଭରେ, ବିବାହରେ, ବାଣିଜ୍ୟରେ, କୃଷିକର୍ମରେ କେଉଁ ଦେବତାଙ୍କୁ ପୂଜିଲେ ବିଜୟ ଲାଭ ହୁଏ ?

"ନିର୍ବିଘ୍ନେନ ତୁ କାର୍ଯ୍ୟାଣି କଥଂ ସିଧ୍ୟନ୍ତି ସୁବ୍ରତ
ଅର୍ଥସିଦ୍ଧିଃ କଥଂ ନୃଣାଂ ପୁତ୍ର-ସୌଭାଗ୍ୟ-ସମ୍ପଦଃ
ଦାମ୍ପତ୍ୟୋଃ କଲହେ ଚୈବ ବନ୍ଧୁ ଭେଦେ ତଥା ନୃଣାଂ
ଉଦାସୀନେଷୁ ଲୋକେଷୁ କଥଂ ସୁମୁଖତା ଭବେତ୍
ବିଦ୍ୟାରମ୍ଭେ ବିବାହେ ଚ ବାଣିଜ୍ୟେ ଚ କୃଷୌ ତଥା
କାଂ ଦେବତାଂ ସମାରାଧ କାର୍ଯ୍ୟ ସିଦ୍ଧିସ୍ତୁ ଜାୟତେ"

(ସ୍କନ୍ଦ ପୁରାଣ)

ଏହାର ଯଥାର୍ଥ ଉତ୍ତର ଦେବାକୁ ଯାଇ ସୂତ ମହର୍ଷି ଯୁଧିଷ୍ଠିରଙ୍କୁ ଉପଦେଶ ଛଳରେ କହିଥିବା ଶ୍ରୀକୃଷ୍ଣଙ୍କ ଉକ୍ତିକୁ ଉଦ୍ଧାର କରି କହିଛନ୍ତି—"ପୂଜୟସ୍ୱ ଗଣାଧ୍ୟକ୍ଷ—ମୁମାମୃତ ସମ୍ଭବଂ"—ହରି ପାର୍ବତୀ ସମ୍ଭବ ଗଣନାୟକଙ୍କୁ ପୂଜା କର । ବ୍ରହ୍ମବୈବର୍ତ୍ତ ପୁରାଣରେ ଗଣେଶ ଖଣ୍ଡରେ ଗଣେଶଙ୍କ ଜନ୍ମ, ଏକଦନ୍ତ ବୃତ୍ତାନ୍ତ, ଗଜମସ୍ତକ ଧାରଣ, ବିଘ୍ନପ୍ରାପ୍ତି ଓ ପରଶୁରାମଙ୍କ ସହ ଯୁଦ୍ଧ ପ୍ରଭୃତି ବହୁ କୌତୂହଳପ୍ରଦ ଘଟଣାମାନ ଉଲ୍ଲେଖ କରାଯାଇଛି । ସତୀ ପାର୍ବତୀଙ୍କ ଗର୍ଭସମ୍ଭୂତ ଗଣନାଥ ନିଜେ ହୋଇଛନ୍ତି ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ନାରାୟଣ । ପାର୍ବତୀଙ୍କ ପବିତ୍ର "ପୁଣ୍ୟକ ବ୍ରତ"ରେ ନାରାୟଣଙ୍କ ଆସନ ଟଳି ଯାଇଛି । ସେ ଧରା ଦେଇଛନ୍ତି ମା' ପାର୍ବତୀଙ୍କ ପାଖରେ, ଏକ ବୃଦ୍ଧ ବ୍ରାହ୍ମଣ ଭିକାରୀ ବେଶରେ, ଠିକ୍ 'ପୁଣ୍ୟକ' ବ୍ରତର ଉଦ୍‌ଯାପନ ପରେ ପରେ । ଆସିବାର ଉଦ୍ଦେଶ୍ୟ ।

—"ନାନାବିଧ ମିଷ୍ଟଅନ୍ନ ଭୁଞ୍ଜିବାର ପାଇଁ
ତୁମ୍ଭର ପାଖକୁ ମୁହିଁ ଆସିଅଛି ଧାଇଁ
ତୁମ୍ଭର ସନ୍ତାନ ମୁହିଁ ଅଟେ ଗୋ ଜନନୀ,
ମୋତେ ତୋଷକର ନାନା ମିଷ୍ଟଅନ୍ନ ଘେନି'

( ବ୍ରହ୍ମବୈବର୍ତ୍ତ ପୁରାଣ )

ବୃଦ୍ଧ ବ୍ରାହ୍ମଣ ଖାଇବାକୁ ମାଗିଛନ୍ତି ।

'ପିଷ୍ଟକ ପରମ ଅନ୍ନ ସ୍ୱାଦୁ ଫଳମୂଳ,
ଲଡ଼ୁକ ପିଷ୍ଟକ ମିଷ୍ଟ ପଦାର୍ଥ ସକଳ ।
ଦଧି, ଦୁଗ୍ଧ, ଘୃତ, ପକ୍ୱ ସୁସ୍ୱାଦୁ ବ୍ୟଞ୍ଜନ,
ଆବର ତରଳ ଭକ୍ଷ୍ୟ ଦ୍ରବ୍ୟ ଫଳମାନ ।
ଏ ରୂପେ ଭୋଜନ ଆଗ ଦିଅ ମୋତେ ଆଣି,
ସେ ଅନ୍ତରେ ସୁବାସିତ ସୁନର୍ମଳ ପାଣି ।
କର୍ପୂର ଗୁବାକଯୁକ୍ତ ତାମ୍ବୂଳ ଅଣାଇ,
ଦେବ ପୁଣି ମୁଖ ଶୁଦ୍ଧି କରିବାର ପାଇଁ ।
ଯେଉଁ ଯେଉଁ ଦ୍ରବ୍ୟମାନ ଖାଇଲେ ମୋହର,
ସୁନ୍ଦର ପୃଥୁଳ ହୋଇ ଦିଶିବ ଉଦର' ।

(ବ୍ରହ୍ମବୈବର୍ତ୍ତ ପୁରାଣ ପୃଷ୍ଠା-୨୮)

ଏହା ମୂଳରେ ଗଣେଶଙ୍କ ଲମ୍ବା 'ଲମ୍ବୋଦରତ୍ୱ' ଓ 'ପୃଥୁଳୋଦରତ୍ୱ'ର କାରଣ ନିହିତ । ଗଣେଶଙ୍କ ଜନ୍ମ ପରେ ପରେ ସ୍ୱର୍ଗର ଦେବତାମାନେ ଜଣେ ଜଣେ ହୋଇ ଆସି ଗଣେଶଙ୍କୁ ବର ପ୍ରଦାନ କଲେ । ବ୍ରହ୍ମା କ ବର ଦେଲେ ଜାଣନ୍ତି ?—

"ବ୍ରହ୍ମା ବୋଇଲେ ତୋହର ଯଶରେ ଜଗତ
ପୂର୍ଣ୍ଣ ହୋଇବ ନିଶ୍ଚୟ ଜାଣ ଆରେ ସୁତ
ସବୁ ଦେବଙ୍କ ପ୍ରଥମେ ପୂଜା ତୁ ପାଇବୁ
ଅଗ୍ରପୂଜ୍ୟ ବୋଲି ସବୁଠାରେ ଖ୍ୟାତ ହେବୁ ।"

ସୃଷ୍ଟିର ସେହି ଆଦ୍ୟମକାଳରୁ ଗଣେଶ ଅଗ୍ରପୂଜ୍ୟ । ସର୍ବତ୍ର ତାଙ୍କର ନାମ ଆଦ୍ୟ କୀର୍ତ୍ତିତ । "ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା, ଭିନ୍ନାଭିନ୍ନଃ ନ କର୍ତ୍ତବ୍ୟଃ ପଞ୍ଚଦେବ ନମୋସ୍ତୁତେ ।" ମଧ୍ୟରେ ବି ତାଙ୍କର ଆସନ ପ୍ରଥମେ ସୁପ୍ରତିଷ୍ଠିତ । ଗଣେଶ ବିଘ୍ନ ବିନାଶକ ତାଙ୍କର ପବିତ୍ର ନାମ ସ୍ମରଣ ସହ ତାଙ୍କୁ ନିଷ୍ଠାସହ ପୂଜନ ଓ ବ୍ରତପାଳନ ବି ସର୍ବସିଦ୍ଧି ପ୍ରଦାୟକ । ପୁରାଣରେ ଏହାର ଭୂରି ଭୂରି ପ୍ରମାଣ ରହିଛି । ତ୍ରିପୁରାସୁରକୁ ମାରିବା ନିମନ୍ତେ ମହାଦେବ ଗଣନାଥଙ୍କୁ ପୂଜା କରିଥିଲେ ।

ଇନ୍ଦ୍ର ବୃତ୍ରାସୁରଙ୍କୁ ମାରିବା ପାଇଁ, ଅହଲ୍ୟା ନିଜ ସ୍ୱାମୀଙ୍କ ଅନ୍ୱେଷଣ କରିବା ସମୟରେ, ଦମୟନ୍ତୀ ନଳଙ୍କୁ, ରାମଚନ୍ଦ୍ର ରାବଣ ଅପହୃତା ସୀତାଙ୍କୁ ପାଇବା ନିମନ୍ତେ, ହନୁମାନ ସୀତାଙ୍କୁ ଭେଟିବା ନିମନ୍ତେ, ଭଗୀରଥ ଗଙ୍ଗାଙ୍କୁ ଆଣିବା ପାଇଁ, ଦେବତା ଓ ଅସୁରଗଣ ଅମୃତ ଲାଭ କରିବା ନିମନ୍ତେ, ଗରୁଡ଼ ଅମୃତ ପାଇବା ନିମନ୍ତେ ସିଦ୍ଧିଦାତା ଗଣନାୟକଙ୍କୁ ପୂଜା କରିଥିଲେ । ସ୍କନ୍ଦପୁରାଣରୁ ଜଣାଯାଏ—ଶ୍ରୀକୃଷ୍ଣ ନିଜେ ଯୁଧିଷ୍ଠିରଙ୍କୁ କହିଛନ୍ତି—

"ରୁକ୍ମିଣୀ ହର୍ତ୍ତୁକାମେନ ପୂଜିତୋଽସୌ ମୟା ପ୍ରଭୋ,
ତସ୍ୟ ପ୍ରସାଦା ବାଜେନ୍ଦ୍ର ରୁକ୍ମିଣୀଂ ପ୍ରାପ୍ତବାନହଂ ।"

ଅର୍ଥାତ୍ ମୁଁ ନିଜେ ରୁକ୍ମିଣୀ ଦେବୀଙ୍କୁ ହରି ଆଣିବା ସମୟରେ ଏହାଙ୍କୁ ପୂଜା କରି ରୁକ୍ମିଣୀଙ୍କୁ ପାଇଅଛି । କେବଳ ସେତିକି ନୁହେଁ, ଦୈତ୍ୟରାଜ ରୁକ୍ମିଣୀ ନନ୍ଦନଙ୍କୁ ହରିନେବା ସମୟରେ ମୁଁ ରୁକ୍ମିଣୀ ସହ ଏ ବ୍ରତ ପାଳନ କରିଥିଲି । କୁଷ୍ଠବ୍ୟାଧିଯୁକ୍ତ ଶାମ୍ବ ସେହି ରୋଗରୁ ରକ୍ଷା ପାଇବା ନିମନ୍ତେ ଏହି ବ୍ରତ ପାଳନ କରି ରୋଗମୁକ୍ତ ହୋଇଥିଲେ । ସ୍କନ୍ଦ ପୁରାଣର ନିମ୍ନ ଅଂଶଟି ଉଲ୍ଲେଖଯୋଗ୍ୟ ।

ତ୍ରିପୁରଂ ହନ୍ତୁଂ କାମେନ ପୂଜିତଃ ଶୂଳପାଣିନା
ଶକ୍ରେଣ ପୂଜିତଃ ପୂର୍ବଂ ତଥା ବୃତ୍ରବଧେଚ୍ଛୟା
ଅନ୍ୱେଷୟନ୍ତ୍ୟା ଭର୍ତ୍ତାରଂ ପୂଜିତ ସ୍ତାପ୍ୟହଲ୍ୟୟା
ନଳସ୍ୟାନ୍ୱେଷଣେ ପୂର୍ବଂ ଦମୟନ୍ତ୍ୟା ତର୍ଥାଚିତଃ
ରାମେଣ ପୂଜିତଃ ପୂର୍ବଂ ସୀତାମନ୍ୱିଚ୍ଛତା ତଥା
ଦ୍ରଷ୍ଟୁଂ ସୀତାଂ ମହାଭାଗା ବୀରେଣ ଚ ହନୁମତା
ତଦ୍ୱତ୍ ଭଗୀରଥେନୈବ ଗଙ୍ଗାମାନୟତା ପୁରା
ଅମୃତୋତ୍ପାଦନାର୍ଥାୟ ତଥା ଦେବାସୁରୈରପି

× × ×

ଜୟ କାମସ୍ତଥାଶୀଘ୍ରଂ ତ୍ୱାମାରାଧୟ ଶଙ୍କରଂ
ପ୍ରାପ୍ସ୍ୟସି ତ୍ୱଂ ସ୍ୱରାଜ୍ୟଂ ଚ ଜିତ୍ୱା ଶତ୍ରୂନ୍ ରଣାହବେ
ବିଦ୍ୟାକାମୋ ଲଭେଦ୍ୱିଦ୍ୟାଂ ଧନକାମୋ ଲଭେର୍ଦ୍ଧନଂ

ଜୟାର୍ଥ ଜୟକାମସ୍ତୁ ପୁତ୍ରାର୍ଥୀ ଲଭତେ ସୁତାନ୍
ପତିକାମା ଚ ଭର୍ତ୍ତାରଂ ସୌଭାଗ୍ୟଂ ତଥ ବିନ୍ଦତି
ପତ୍ନୀକାମୋ ଲଭେତ୍ ପତ୍ନୀଂ ସୁଭଗାଂ ଚ ଯଶସ୍ୱିନୀଂ
ବିଧବାପୂଜନଯୁକ୍ତାତୁ ବୈଧବ୍ୟଂ ନାପ୍ନୁୟାତ୍ କ୍ୱଚିତ୍"

ଅର୍ଥାତ୍ ହେ ଯୁଧିଷ୍ଠିର ! ତୁମେ ଜୟ କାମନାରେ ଏହାଙ୍କୁ ପୂଜାକରି ନିଶ୍ଚୟ ଜୟଲାଭ କରି ରାଜ୍ୟ ପାଇବ । ବିଦ୍ୟା ଲାଭ ନିମନ୍ତେ ବିଦ୍ୟାର୍ଥୀଗଣ, ଧନ କାମନାରେ ଧନକାମାର୍ଥୀଗଣ, ଜୟକାମୀ, ପୁତ୍ର ପ୍ରାପ୍ତି ଇଚ୍ଛୁକ ଲୋକ, ଉତ୍ତମ ପତି ଆଶାୟିନୀ ନାରୀ, ସୌଭାଗ୍ୟ ପ୍ରାପ୍ତି ଇଚ୍ଛୁକ ଦରିଦ୍ର, ଏହି ବ୍ରତ ପାଳନ କଲେ ମନୋରଥ ସିଦ୍ଧ ହୁଏ । ଏପରିକି ବିଧବାମାନେ ଏହି ବ୍ରତ ନିଷ୍ଠାର ସହ ପାଳନ କଲେ ଅନ୍ୟ ଜନ୍ମରେ ସେମାନେ ବୈଧବ୍ୟ ଦୁଃଖ ପାଆନ୍ତି ନାହିଁ । 'ନାମାଷ୍ଟକ ସ୍ତୋତ୍ର'ରୁ ଜଣାଯାଏ—ସିଦ୍ଧିଦାତା ଗଣନାଥଙ୍କର ଆଠଟି ନାମ ରହିଛି । ସେଗୁଡ଼ିକ ହେଲା—ଗଣେଶ, ହେରମ୍ବ ଏକଦନ୍ତ, ଶୂର୍ପକର୍ଣ୍ଣ, ଗୁହାଗ୍ରଜ ଲମ୍ବୋଦର, ବିଘ୍ନବିନାଶନ ଓ ଗଜବକ୍ତ୍ର । ଏହି ଆଠଟି ନାମ ଭକ୍ତି ଓ ଶ୍ରଦ୍ଧା ସହ ପଠନ ଓ ଶ୍ରବଣ କଲେ ସିଦ୍ଧି ମିଳେ । ଗଣନାଥଙ୍କର ପ୍ରଥମ ନାମ ଗଣେଶ (ଗ+ଣ+ଈଶ) 'ଗ' ଅକ୍ଷର ଅର୍ଥଜ୍ଞାନ 'ଣ'ର ଅର୍ଥ ଶୁଦ୍ଧ ନିର୍ବାଣ ଏଣୁ ଜ୍ଞାନ ଓ ନିର୍ବାଣର ଈଶ ଅର୍ଥାତ୍ ପ୍ରଭୁ ବା ଈଶ୍ୱର ହେଉଛନ୍ତି ଗଣେଶ । ଏଣୁ ଗଣେଶ ଜ୍ଞାନ ଓ ମୁକ୍ତିପ୍ରଦାୟକ । ବ୍ରହ୍ମ ବୈବର୍ତ୍ତ ପୁରାଣରେ ବିଶେଷ ବ୍ୟାଖ୍ୟାରୁ ଜଣାଯାଏ—ଗଣେଶଙ୍କର ଅପର ନାମ 'ଏକଦନ୍ତ' ଅବଶ୍ୟ ପରଶୁରାମଙ୍କ ସହ ଯୁଦ୍ଧରତ ଥିବା ବେଳେ ତାଙ୍କର ଗୋଟିଏ ଦନ୍ତ ଭଗ୍ନ ହୋଇଥିଲା । ମାତ୍ର ଏହାର ତାତ୍ତ୍ୱିକ ବ୍ୟାଖ୍ୟାରୁ ଜଣାଯାଏ ଯେ ଏକ ଅର୍ଥ–ପ୍ରଧାନ–ଓ ଦନ୍ତ ଅର୍ଥ ବଳ ଅର୍ଥାତ୍ ଗଣେଶ ହେଉଛନ୍ତି ପ୍ରଧାନ ବଳୀ ବା ବଳବାନ୍ । ସେହିପରି ହେରମ୍ବ ଅର୍ଥାତ୍ ସେ ହେଉଛନ୍ତି ହେ-ଦରିଦ୍ର; ରମ୍ବ-ପାଳକ ପାଳ୍ପଜନ ରକ୍ଷକ । ସେ ପୁଣି ସକଳ ପ୍ରକାର ବିଘ୍ନ ବିନାଶକ । ତାଙ୍କର କର୍ଣ୍ଣଦ୍ୱୟ ଶୂର୍ପାକାର ଓ ତାହା ସାହାଯ୍ୟରେ ସେ ବିଘ୍ନକୁ ଉଡ଼ାଇ ଦେଇ ବିନାଶନ କରନ୍ତି । ଗଣେଶ (ମାନସ ଜାତ ହେତୁ) ଗୁହଙ୍କ (କାର୍ତ୍ତିକେୟଙ୍କ) ଅଗ୍ରଜ (ବଡ଼ଭାଇ) ରୂପେ ପୁରାଣରେ ପରିଚିତ । ଏଣୁ ସେ ଗୁହାଗ୍ରଜ । ଗଣେଶଙ୍କର ଗଜ ମସ୍ତକ ସଂଯୋଗ

ପରେ ତାଙ୍କର ଯେତେବେଳେ ନାମ କରଣ ହୁଏ ନଳେ ଶଙ୍କ ଚକ୍ରଧାରୀ ନାରାୟଣ ତାଙ୍କୁ ପୂଜାକରି କହିଥିଲେ—

ଆବର ବୋଇଲେ ମୂର୍ତ୍ତି ସମସ୍ତଙ୍କ ଆଗେ
ତୁମ୍ଭଙ୍କୁ ଯେ ପୂଜା କରୁଅଛୁ ଅନୁରାଗେ
ସେ ସକାଶେ ଆହେ ବତ୍ସ ଅଗ୍ରପୂଜ୍ୟ ହୁଅ
ତିନି ଭୁବନରେ ଆଗ ପୂଜା ପାଉ ଥାଅ

( ବ୍ରହ୍ମ ବୈବର୍ତ୍ତ ପୁରାଣ )

ପଞ୍ଚ ଦେବତାଙ୍କ ମଧ୍ୟରେ ଗଣେଶ ହିଁ ଅଗ୍ରପୂଜ୍ୟ । ଗଣେଶଙ୍କୁ ପୂଜାକଲେ ବିଷ୍ଣୁ, ମହାଦେବ ସୂର୍ଯ୍ୟ, ଅଗ୍ନି, ବରୁଣ ଓ ଦୁର୍ଗା ସମସ୍ତେ ପୂଜା ପାଆନ୍ତି ଓ ସନ୍ତୁଷ୍ଟ ହୁଅନ୍ତି । ଆଉ ମଧ୍ୟ ଚଣ୍ଡିକା ଆଦି ମାତୃଗଣ ସନ୍ତୁଷ୍ଟ ହୁଅନ୍ତି । ଶାସ୍ତ୍ରରେ ଅଛି—

"ବୈଷ୍ଣବ୍ୟାଦ୍ୟାସୁ ପୀଠାସୁ ବ୍ରଦୌ ପୂଜ୍ୟୋଗଣାଧିପଃ
ତସ୍ମିନ୍ ସପୂଜିତେ ବିଷ୍ଣୁ ରୀଶୋଗ୍ନିସ୍ତଥା ହ୍ୟମା
ହବ୍ୟବାହମୁଖା ଦେବାଃ ପୂଜିତାଃ ସ୍ୟୁନ ସଂଶୟଃ
ଚଣ୍ଡିକାଦ୍ୟା ମାତୃଗଣା ପରିତୁଷ୍ଟା ଭବନ୍ତି ଚ" ।

ସେହି ସିଦ୍ଧିଦାୟକ ବିଘ୍ନେଶ ଗଜାନନଙ୍କର ପବିତ୍ର ପୂଜ୍ୟୋତ୍ସବ ଭାରତର ସର୍ବତ୍ର, ଏକ ନୂତନ ପୁଲକ ସୃଷ୍ଟି କରିଛି । ଧୂପ, ଦୀପ, ନୈବେଦ୍ୟସମ୍ଭାର ସହ ପୁରୋହିତଙ୍କର ମନ୍ତ୍ରୋଚାରଣରେ ଓ ଛାତ୍ର ଛାତ୍ରୀ; ଯୁବକ ଯୁବତୀଙ୍କ ଭକ୍ତି ଗଦଗଦ୍ କଣ୍ଠରେ ଗଣନାଥଙ୍କ ଶୁଭ ଆବାହନରେ ସର୍ବତ୍ର ମୁଖରିତ ହୋଇ ଆସୁଛି । ବରଷା ଜରଜର ଧବଳ, ଜଟା-କାଶ କୁସୁମ ତଟିନୀ ତଟରେ ତାଙ୍କର ଶୁଭାଗମନଙ୍କୁ ଅଭିନନ୍ଦନ ଜଣାଇଛି । ଆଜ ମାନବ ପ୍ରକୃତି ସତେ ଯେପରି ଏକୀଭୂତ ହୋଇ ଏକ କଣ୍ଠରେ, ସେହି ଏକଦନ୍ତଙ୍କୁ ସ୍ମରଣ କରି ଏକାଗ୍ରଚିତ୍ତରେ ଗାଉଛନ୍ତି—

"ନମୋ ଗଣେଶ ବିଘ୍ନେଶ ! ଗିରିଜାନନ୍ଦନ ପ୍ରଭୋ
ସର୍ବ ବିଘ୍ନ ବିନାଶାୟ ଗଣାଧିପତୟେ ନମଃ"



# ସାର୍ବଜନୀନ ଦେବତା 'ଗଣେଶ'

**କେ**ତେକ ଦେବତା ଅଛନ୍ତି ଯେଉଁମାନେ ଧନ, ଶିକ୍ଷା, ଶକ୍ତି ଏବଂ ସୌନ୍ଦର୍ଯ୍ୟର ଦେବତା ରୂପେ ପରିଚିତ । କେତେକ ଦେବତା ସୃଷ୍ଟି, କେତେକ ପାଳନ ଏବଂ କେହି ଧ୍ୱଂସ କରନ୍ତି । କେତେକ ଦେବତା ଅଛନ୍ତି ଯେଉଁମାନେ ଭିନ୍ନ ଭିନ୍ନ ବିଷୟର ଦାୟିତ୍ୱରେ ଅଛନ୍ତି । କେତେ ସ୍ତ୍ରୀମାନଙ୍କର ପୂଜା ଗ୍ରହଣ କରନ୍ତି ନାହିଁ କି ଶ୍ରେଷ୍ଠ ଜାତିର ଲୋକଙ୍କ ଦ୍ୱାରା ପୂଜିତ ହୁଅନ୍ତି ନାହିଁ । କେତେକଙ୍କ ପୂଜା ପାଇଁ ବହୁତ ନିୟମ ପାଳନ ଦରକାର ପଡ଼େ । କିନ୍ତୁ ଜଣେ ଦେବତା ଅଛନ୍ତି ଯେ କି ସବୁ ଦାୟିତ୍ୱ ବହନ କରନ୍ତି । ଯାହାଙ୍କ ଆଶୀର୍ବାଦ ବିନା ସବୁ ଅସମ୍ଭବ । ଯାହାଙ୍କୁ ପ୍ରତ୍ୟେକ ପୂଜାର ପ୍ରାରମ୍ଭରୁ ସ୍ମରଣ କରାଯାଏ, ଯେ ବୟସ, ଲିଙ୍ଗ, ସମ୍ମାନ, ଜାତିର ଗଣନା ନ କରି ଯେ କୌଣସି ଲୋକ ଦ୍ୱାରା ଯେ କୌଣସି ଉପାୟରେ କେବଳ ହୃଦୟର ନିଛକ ପ୍ରେମ ଦ୍ୱାରା ସେ ପୂଜିତ; ସେହି ଦେବତା ହେଉଛନ୍ତି ଗଣେଶ । ସେ ଧନୀର ପୂଜା ଗ୍ରହଣ କରନ୍ତି ନାହିଁ । ସେ ସବୁଠାରୁ ବେଶୀ ଖୁସି ହୁଅନ୍ତି ଯଦି ପୂଜକ ତାଙ୍କ ମୂର୍ତ୍ତି ସମ୍ମୁଖରେ ଗୋଟିଏ ନଡ଼ିଆ ଭାଙ୍ଗେ । ନଡ଼ିଆ ଭାଙ୍ଗିବା ଦ୍ୱାରା ଏହା ଧରାଯାଏ ଯେ ପୂଜକ ନିଜର 'ଅହଂ'ଭାବକୁ ନଡ଼ିଆ ଭାଙ୍ଗିବା ମାଧ୍ୟମରେ ଗଣେଶଙ୍କ ପାଖରେ ସମର୍ପଣ କରିଦିଏ । ଏହି ସମର୍ପଣକୁ ସେ ସବୁଠାରୁ ବେଶୀ ଗ୍ରହଣ କରନ୍ତି ଏବଂ ଏହି ଅହଂଭାବକୁ ଜଣେ ଭିକ୍ଷୁକ ମଧ୍ୟ ସମର୍ପଣ କରିପାରେ ।

ଅନ୍ୟ ଦେବତାମାନେ ଅତୁଳନୀୟ ସୌନ୍ଦର୍ଯ୍ୟର ଅଧିକାରୀ । କିନ୍ତୁ ଏହି ଦେବତାଙ୍କର ଗୋଟିଏ ହସ୍ତୀମସ୍ତକ ଏବଂ ପୃଥୁଳ ଦେହ ଥିବାର ଜଣାଯାଏ । ସ୍ୱର୍ଗୀୟ ସୁଷମା ତାଙ୍କ ପାଖରେ କ୍ୱଚିତ୍ ଦେଖାଯାଏ । ବହୁତ ଗୁଡ଼ିଏ ଘଟଣା ଏହା ସହିତ ସଂଯୁକ୍ତ, ସେମାନଙ୍କ ମଧ୍ୟରେ ମୁଖ୍ୟ ହେଲା ଯେ ରୂପ ମୁଖ୍ୟ ନୁହେଁ । ସେ ଈଶ୍ୱର ହେଉଛନ୍ତି ଅରୂପ । ସେ ରୂପର ବହୁତ ଉପରେ ଯେତେବେଳେ ଜଣେ ଦେବତା ସୁନ୍ଦର ମୁଖ ଏବଂ ଦେହ ବିଶିଷ୍ଟ ହୋଇଥାନ୍ତି ପୂଜକ, ପୂଜା ପରିବର୍ତ୍ତେ ଦେବତାଙ୍କ

ସୌନ୍ଦର୍ଯ୍ୟ ଦ୍ୱାରା ଆକୃଷ୍ଟ ହୋଇ ପୂଜାରେ ବନ୍ଧ କରାଏ । ମାତ୍ର ଗଣେଶଙ୍କ କ୍ଷେତ୍ରରେ ଏହା ହୋଇ ନଥାଏ । ଗଣେଶଙ୍କ କ୍ଷେତ୍ରରେ ପୂଜକର ଚକ୍ଷୁରେ ହିଁ ସୌନ୍ଦର୍ଯ୍ୟ ରହିଥାଏ ।

କାହାଣୀ-ରହିଛି ଯେ ପ୍ରତ୍ୟେକ ଦେବା ଦେବୀ ନିଜର ବାହନ ଠିକ୍ କଲେ । କାର୍ତ୍ତିକେୟ ପକ୍ଷୀମାନଙ୍କ ଭିତରେ ସବୁଠାରୁ ସୁନ୍ଦର ପକ୍ଷୀ ମୟୂରକୁ ନିଜର ବାହନ ରୂପେ ବାଛିଲେ । ଦୁର୍ଗା ପଶୁରାଜ 'ସିଂହ'କୁ, ନାରାୟଣ ପକ୍ଷୀରାଜ 'ଗରୁଡ଼'କୁ ଗ୍ରହଣ କଲେ । ଶେଷକୁ ସବୁ ଦେବତା ନିଜ ନିଜର ଇଚ୍ଛା ମୁତାବକ ବାହନ ବାଛିଲେ । ଗଣେଶ ଶାନ୍ତ ଭାବରେ ଠିଆ ହୋଇଥାନ୍ତି । ଯେତେବେଳେ ସବୁ ସରିଗଲା, କେବଳ ରହିଗଲା ବସ୍ତର 'ମୂଷା' । ଗଣେଶ କହିଲେ, "ମୁଁ ତାକୁ ମୋର ବାହନ କରି ନେବି" । ଅନ୍ୟ ଦେବତାମାନେ ଗୋଟିଏ ହାତୀ, ମୂଷା ଉପରେ ଚଢ଼ିଥିବାର ଦେଖି ହସରେ ଫାଟି ପଡ଼ିଲେ । ମାତ୍ର ଗଣେଶ, ମୂଷାକୁ ନିଜର ବାହନ ରୂପେ ଗ୍ରହଣ କଲେ । ଏହାର ମଧ୍ୟ ବହୁତ କାରଣ ରହିଛି । ପ୍ରଥମ ଅଟେ ଯେ ରୂପର କୌଣସି ଗୁରୁତ୍ୱ ନାହିଁ । ଦ୍ୱିତୀୟ ହେଲା, ବିଶ୍ୱାସରେ ମୂଷା ପରି ଏକ କ୍ଷୁଦ୍ର ପ୍ରାଣୀ ମଧ୍ୟ ହାତୀ ପରି ଏକ ବିରାଟ ଜନ୍ତୁକୁ ବହନ କରିପାରେ । ତୃତୀୟ ହେଲା, ମୂଷା ଅହଂଭାବ ବହନ କରେ ଏବଂ ଏହି ମୂଷା ଉପରେ ଚଢ଼ିବା ଦ୍ୱାରା ଅହଂଭାବକୁ ଦମନ କରିବା ବୁଝାଏ ।

କଥିତ ଅଛି ଯେ ଗଣେଶଙ୍କର ଜଣେ ପୂଜକ କପଟରେ ଗଣେଶଙ୍କୁ ବହୁ ବର୍ଷ ଧରି ହଇରାଣ କରିଥିଲା ଏବଂ ଏହା ଫଳରେ ତାର କପାଳରେ ଏକ ଶୁଣ୍ଢ ପାଇ 'ଭୁଷୁଣ୍ଡି' ନାମରେ ଖ୍ୟାତ ହୋଇଥିଲା । ଗଣେଶ ଚତୁର୍ଥୀ ଦିନ ଗଣେଶ ଏକ ବ୍ରାହ୍ମଣର ବେଶ ଧରି ଦ୍ୱାର ଦ୍ୱାର ବୁଲି ଭିକ୍ଷା କରନ୍ତି । ଭୁଷୁଣ୍ଡି ଯେତେବେଳେ ତାଙ୍କୁ ଦେଖିଲା ହଠାତ୍ ଚିହ୍ନି-ପାରି ତାଙ୍କ ଗୋଡ଼କୁ ଧରିପକାଇ ତାଙ୍କୁ ଯିବାକୁ ଦେଲା ନାହିଁ । ତେଣୁ ଗଣେଶ ଗୋଟିଏ ବଟବୃକ୍ଷ ମୂଳରେ ଏକ ସ୍ଥାନ ଉପରେ ବସି ରହିଲେ । ସ୍ୱର୍ଗରେ ତାଙ୍କୁ ନ ଦେଖି ଇନ୍ଦ୍ର ଖୋଜି ଖୋଜି ଭୁଷୁଣ୍ଡି ପାଖରେ ପହଞ୍ଚିଲେ । ତାଙ୍କୁ ଗଣେଶଙ୍କ ପାଦ ଛାଡ଼ି ଦେବାପାଇଁ ସ୍ୱର୍ଗର ସବୁ ସୁଖ ପ୍ରଦାନ କଲେ । ମାତ୍ର ସେ ଏହି ଦାନ ନେବା ପାଇଁ ଅସ୍ୱୀକାର କଲା

ତାପରେ ବ୍ରହ୍ମା ଆସି ତାକୁ ସତ୍ୟଲୋକର ଅଖଣ୍ଡ ଜୀବନ ପ୍ରଦାନ କଲେ । ଭୃଷୁଣ୍ଡି ଏହି ସୁଖ ଉପଭୋଗ କରୁଥାଏ, ମାତ୍ର ଯେପରି ତାର ଇଷ୍ଟ ଦେବତାଙ୍କ ପାଦକୁ ନ ଛାଡ଼େ ସେଥିପ୍ରତି ସେ ଯତ୍ନବାନ୍ ଥାଏ । ତାପରେ ଆସିଲେ ଗଣେଶଙ୍କ ପିତା ଶିବ । ସେ ନିଜର ପୁତ୍ର ଦୁଃଖରେ ଦୁଃଖିତ ହୋଇ ଭୃଷୁଣ୍ଡିକୁ ହତ୍ୟା କରିବା ପାଇଁ ଧମକ ଦେଲେ । ଭୃଷୁଣ୍ଡୀ କହିଲା ଯେ ସେ ମରିବାକୁ ରାଜି ମାତ୍ର ସେ ଗଣେଶଙ୍କ ପାଦଧରି ମୃତ୍ୟୁ ଲଭ କରିବେ । ଏହି ହନ୍ଦ୍ୱ ବେଳେ ଗଣେଶ କହିଲେ, "ଯେ ତାଙ୍କ ପାଦ ତଳେ ଶରଣ ନେଇଛି, ତାକୁ ହତ୍ୟା କରିବା ଉଚିତ୍ ନୁହେଁ ।" ବିଷ୍ଣୁ ତାପରେ ଆସିଲେ ଏବଂ ତାକୁ ମୋକ୍ଷ ପ୍ରଦାନ କଲେ । ଭୃଷୁଣ୍ଡୀ ଏହାକୁ ସ୍ୱୀକାର କଲା ମାତ୍ର ଗଣେଶଙ୍କ ପାଦ ଛାଡ଼ିଲା ନାହିଁ । ତାପରେ ଗଣେଶ କହିଲେ ଯେ ଏହା ପ୍ରକୃତ ପୂଜକମାନଙ୍କର ଅବସ୍ଥା । ସେମାନେ କେବେ କୌଣସି ଲଭ ପାଇଁ ବା କୌଣସି ଜିନଷ ପ୍ରାପ୍ତିରେ ସନ୍ତୁଷ୍ଟ ନୁହଁନ୍ତି । ସେମାନେ କେବଳ ତାଙ୍କୁ ହିଁ ଚାହାନ୍ତି ଏବଂ ସେ ଖୁବ୍ ସନ୍ତୁଷ୍ଟ ହୋଇ ଭୃଷୁଣ୍ଡୀକୁ ଆଶୀର୍ବାଦ କରିଥିଲେ ।

ଆଧ୍ୟାତ୍ମିକ କ୍ଷେତ୍ରରେ ବିଳମ୍ବରେ ସଂଯୁକ୍ତ ହୋଇଥିଲେ ମଧ୍ୟ ଏହା ଆଶ୍ଚର୍ଯ୍ୟ ଯେ ସେ ପୁରୁଣା ଦେବତାମାନଙ୍କୁ ଅତିକ୍ରମ କରି ସେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛନ୍ତି । ସବୁ ବିପଦର ବିନାଶକ ଭବରେ, ପ୍ରତ୍ୟେକ ପୁଣ୍ୟ କାର୍ଯ୍ୟରେ, ଶିକ୍ଷା, ଭ୍ରମଣ ଏବଂ ଯୁଦ୍ଧକ୍ଷେତ୍ରକୁ ଯିବା ସମୟରେ ଅନ୍ୟ ଦେବତାମାନଙ୍କୁ ପୂଜା କରିବା ସମୟରେ ପ୍ରାରମ୍ଭରେ ତାଙ୍କୁ ପୂଜା ଅର୍ପଣ କରାଯାଏ । ଗଣେଶ ତାଙ୍କର ପିତା ଶିବଙ୍କ ପରି ବୌଦ୍ଧଧର୍ମ ପରେ ଏବଂ ପୁରାଣ ଯୁଗ ପୂର୍ବରୁ ବୈଦିକ ଆର୍ଯ୍ୟ ଦେବତା-ମାନଙ୍କ ମଧ୍ୟରେ ଏକ ବିଶିଷ୍ଟ ସ୍ଥାନ ଲଭ କରିଛନ୍ତି । ବୌଦ୍ଧଧର୍ମରେ ଏବଂ ଜୈନଧର୍ମରେ ଜଣେ ସ୍ୱର୍ଗୀୟ ଦେବତା ହିସାବରେ ତାଙ୍କୁ ସ୍ୱାଗତ କରାଯାଏ । କାରଣ ଗଣେଶଙ୍କର ହସ୍ତୀ ସହିତ ନିବିଡ଼ ସମ୍ପର୍କ ରହିଛି ଏବଂ ଏହି ହାତୀ ମଧ୍ୟ ଗୌତମ ଏବଂ ମହାବୀରଙ୍କର ଜନ୍ମବୃତ୍ତାନ୍ତରେ ଅଂଶ ଗ୍ରହଣ କରିଛନ୍ତି ।

'ବକ୍ରତୁଣ୍ଡ', 'ଦନ୍ତୀ' ଇତ୍ୟାଦି ବହୁ ମିଥ୍ୟା ମତ ଆମେ ବେଦରେ ସ୍ଥାନେ ସ୍ଥାନେ ଦେଖିବାକୁ ପାଉ । କେବଳ ପୁରାଣ ଯୁଗରେ

ଗଣେଶ ଜଣେ ପ୍ରଧାନ ଦେବତା ଭାବରେ ସ୍ଥାନ ଲଭ କରନ୍ତି । ଏହି ସମୟରେ ପୁରାଣ, ବ୍ରାହ୍ମଣ, ଆଗମ, ଉପନିଷଦ, ସୂତ୍ର, ତନ୍ତ୍ର, ଯୋଗ, ସଂହିତା ଏବଂ ସ୍ମୃତିରେ ସେ ପ୍ରାପ୍ତ ଉଲ୍ଲିଖିତ ହୋଇଥାନ୍ତି । ଜୈନ ଏବଂ ବୌଦ୍ଧଧର୍ମ ସାହିତ୍ୟ ଏବଂ ଅଳ୍ପ କେତେକ ତିବ୍ବତ ଏବଂ ନେପାଳ ପୁସ୍ତକ ଗଣେଶଙ୍କୁ କେନ୍ଦ୍ର କରି ଲିଖିତ । ଏହା ଲୋକମାନଙ୍କର ବିଶ୍ୱାସକୁ ଏକ ମୁଖ୍ୟ ଧର୍ମକୁ ପରିବର୍ତ୍ତନ କରାଇବାରେ ସାହାଯ୍ୟ କରିଛି ।

ତାଙ୍କର ବହୁ ବିଚିତ୍ର ପ୍ରତିମୂର୍ତ୍ତି ମୃତ୍ତିକା, କାଠ, ପଥର ଓ ଧାତୁରେ ଖୋଦିତ । ଏଗୁଡ଼ିକ କଳା, ତାଳପତ୍ର ଏବଂ ମନ୍ଦିରର କାନ୍ଥରେ ଚିତ୍ରିତ ହୋଇ ଆମ ଦେଶର କଳା ସ୍ଥାପତ୍ୟର ପରିଚୟ ଦିଏ । ଅମରାବତୀରେ ବାହାରି ଥିବା ଗଣେଶଙ୍କର ଏକ ମୂର୍ତ୍ତି ଗୋଟିଏ ଓଳନିଆ ଫୁଲହାର ପକାଇ ଥିବାର ଦେଖାଯାଏ । କିନ୍ତୁ ଗଣେଶଙ୍କର ପୂର୍ଣ୍ଣ ଭାବରେ ଉନ୍ନତ ମୂର୍ତ୍ତି ଗୁପ୍ତଯୁଗର ସ୍ୱର୍ଣ୍ଣଯୁଗ ପରଠାରୁ ଦେଖାଯାଏ ।

ଗଣେଶ ବିଘ୍ନ ବିନାଶକ । ସବୁ ଇଚ୍ଛା ପୂରଣକାରୀ ଏବଂ ଅଷ୍ଟ ସିଦ୍ଧିଦାତା । ସେଇଥିପାଇଁ ସେ ପ୍ରଥମେ ପୂଜା ପାନ୍ତି ଏବଂ ତାଙ୍କର ଆଶୀର୍ବାଦ ଖୋଜାଯାଏ । ଏହା ହେଉଛି ଏକ ବର ଯାହା ତାଙ୍କର ଜନ୍ମ ସମୟରେ ତାଙ୍କ ପିତା ପରମେଶ୍ୱର ଓ ମାତା ପାର୍ବତୀ ଏବଂ ଅନ୍ୟ ଦେବତାମାନଙ୍କ ଦ୍ୱାରା ଦିଆଯାଇଥିଲା । ତାଙ୍କର ସୃଷ୍ଟି ବୃତ୍ତାନ୍ତ କହେ କିପରି ସେ ବ୍ରହ୍ମାଙ୍କ ପରି ସର୍ବଗୁଣର ଅଧିକାରୀ ।

ମା' ପାର୍ବତୀ ନିଜର ଏକ ପୁତ୍ର ପାଇଁ ଇଚ୍ଛା କରୁଥିଲେ । ତାର ପରମେଶ୍ୱର ଶିବ ତାଙ୍କ ଇଚ୍ଛା ପୂରଣ କରିବା ପାଇଁ ତାଙ୍କୁ ଉଦ୍ଦେଶ୍ୟ-ପୂର୍ଣ୍ଣ ଭାବରେ ଗ୍ରହିଁଲେ ଏବଂ ମାଟିରେ ଗୋଟିଏ ପୁତ୍ରର ମୂର୍ତ୍ତି କରି ପାର୍ବତୀଙ୍କୁ ଦେଲେ । ପାର୍ବତୀ ଭାବିଲେ ଶିବ ବୋଧେ ତାଙ୍କ ସହିତ ପରିହାସ କରୁଛନ୍ତି । ଏହା ଭାବି ସେ ତାକୁ ତଳେ ପକାଇ ଦେଲେ । ପିଲାଟି ସଙ୍ଗେ ସଙ୍ଗେ କାନ୍ଦିବାକୁ ଲାଗିଲା । ପାର୍ବତୀ ସଙ୍ଗେ ସଙ୍ଗେ ତାକୁ ନିଜର ବକ୍ଷ ପାଖରେ ଧରିରଖି କ୍ଷୀର ପାନ କରାଇବା ପାଇଁ ମନ ବଳାଇଲେ । ତାପରେ ସେ ସ୍ୱାମୀଙ୍କୁ ଏହି ପିଲାଟିକୁ ଖୁସିରେ ଦେଲେ ।

ଶିବ କହିଲେ ଯେ ସେହି ପୁଅଟିକୁ ସେ ତାଙ୍କୁ (ଶିବଙ୍କୁ) ଧରିବାକୁ ଦେଇଥିବାରୁ ସେ ପୁଅଟି ଅଳ୍ପ ସମୟ ପାଇଁ ବଞ୍ଚିବ । ଶିବ ଏହା କହି ଯେତେବେଳେ ସେ ପୁଅକୁ ନିଜ ଆଡ଼କୁ ନେଇ ଆସିଲେ ସେତେବେଳେ ତାହାର ମୁଣ୍ଡ, ବେକ ଅଲଗା ହୋଇଗଲା ଏବଂ ଶିଶୁଟି ମୃତ ହୋଇ ତଳେ ପଡ଼ିଗଲା । ପାର୍ବତୀ ସାନ୍ତ୍ୱନା ଶୁଣିବା ଅବସ୍ଥାରେ ନ ଥିଲେ । ଶିବ ସେହି ବାଳକକୁ ଜୀବନ୍ତ କରିବା ପାଇଁ ମୁଣ୍ଡ ଓ ବେକ ସଂଯୁକ୍ତ କରିବାରେ ବିଫଳ ହେଲେ । ଏହା ଦୈବବାଣୀ ଅନୁସାରେ ପିଲାଟିର ମୁଣ୍ଡ ଉତ୍ତର ଦିଗକୁ ମୁହଁ କରି ପଡ଼ିଥିବାରୁ ଉତ୍ତର ଦିଗକୁ ମୁହଁ କରି ପଡ଼ିଥିବା ଗୋଟିଏ ହାତୀର ମୁଣ୍ଡ ଆଣି ଲଗାଇ ପିଲାଟିକୁ ଜୀବନ ଦିଆଗଲା ।

ସୃଷ୍ଟିକର୍ତ୍ତା ବ୍ରହ୍ମା କହିଲେ ଯେ ଏହି ବାଳକଟି ବିନାୟକ ବୋଲି ନାମିତ ହେବ । କୌଣସି କାର୍ଯ୍ୟ ସିଦ୍ଧି ପାଇଁ ପୂଜା ପାଉଥିବା ଅନ୍ୟ କୌଣସି ଦେବତାଙ୍କ ପୂଜାର ପ୍ରାରମ୍ଭରେ ପୂଜିତ ହେବ । ସେ ବିନାୟକଙ୍କୁ ଅମର ବର ପ୍ରଦାନ କରିଥିଲେ । ବୃହସ୍ପତି ଯେ କି ଦେବତା-ମାନଙ୍କର ରକ୍ଷାକର୍ତ୍ତା ତାଙ୍କୁ ପବିତ୍ର ପଇତା ପ୍ରଦାନ କଲେ । ସରସ୍ୱତୀ ତାଙ୍କୁ ସବୁ ପ୍ରକାର ବିଦ୍ୟାର ଶିକ୍ଷା ଅଧିକାର ପ୍ରଦାନ କଲେ । ବିଷ୍ଣୁ ତାଙ୍କୁ ଅମୃତ, ମାତା ଧରଣୀ ତାଙ୍କୁ ଗୋଟିଏ ମୂଷା ବାହନ, ପିତା ଶିବ ବ୍ୟାଘ୍ରଚର୍ମ, ମା ପାର୍ବତୀ ଆୟୁଷ, ମହାଲକ୍ଷ୍ମୀ ଅଷ୍ଟଧନ, ବରୁଣ ପାଶ, ବାୟୁ ବା ପବନ ଦେବତା ମନ୍ଦାର ହାର, ଦେବାଧି ଦେବ ଇନ୍ଦ୍ର ତାଙ୍କୁ ଅଙ୍କୁଶ ପ୍ରଦାନ କଲେ । ଜନ୍ମ ହେବା ମାତ୍ରେ ବିଘ୍ନରେ ବିପଦଗ୍ରସ୍ତ ହୋଇଥିଲେ ବୋଲି ସେ ବିଘ୍ନେଶ୍ୱର । ସେ ଭାଦ୍ରବ ମାସର ଶୁକ୍ଳପକ୍ଷ ଚତୁର୍ଥୀରେ ଜନ୍ମ ବୋଲି ଶିବ ଓ ପାର୍ବତୀ ଗଣେଶଙ୍କର ଉପାସନା ସେହି ତିଥିରେ ହେବ ବୋଲି ଆଦେଶ ଦେଇଥିଲେ । ସେହିଦିନ ପୂଜା କଲେ ଇଚ୍ଛୁକ ବ୍ୟକ୍ତିର ମନସ୍କାମନା ପୂର୍ଣ୍ଣ ହୁଏ ବୋଲି ଘୋଷଣା କରିଥିଲେ । 'ଗଣ'ର ଦେବତା ବିନାୟକ ହେଉଛନ୍ତି । ଗଣ ଶବ୍ଦର ଅର୍ଥ ଜ୍ଞାନ ଏବଂ ମୁକ୍ତି, ଗଣେଶଙ୍କୁ ଏକଦନ୍ତ କୁହାଯାଏ । ଏହାଦ୍ୱାରା ସେ ଜଣାନ୍ତି ଯେ ଏକ ବା ମାୟା ବା ମୋହ 'ଦନ୍ତ' ଦ୍ୱାରା ବା ପ୍ରକୃତ ଜ୍ଞାନ ଦ୍ୱାରା ମୁଳୋତ୍ପାଟିତ ହେବା ଦରକାର । ସେ ଏକଦନ୍ତ କାରଣ ତାଙ୍କର ଗୋଟିଏ ଦନ୍ତ କାର୍ତ୍ତିକେୟ

ଓଡାଇ ଦେଇଥିଲେ । ଏହା ଘଟିଥିଲା ଯେତେବେଳେ କାର୍ତ୍ତିକେୟ ସ୍ତ୍ରୀ ପୁରୁଷ ଲକ୍ଷଣ ବିଷୟରେ ବର୍ଣ୍ଣନା କଲାବେଳେ ଗଣେଶଙ୍କୁ ଦେବତା-ମାନଙ୍କ ମଧ୍ୟରେ ପ୍ରଥମ ବୋଲି ଧରି ନ ଥିଲେ । ଏହି କଳହ ପରମେଶ୍ୱର ଓ ନାରାୟଣଙ୍କ ଦ୍ୱାରା ମୀମାଂସିତ ହୋଇଥିଲା । ନାରାୟଣ କୁମାରଙ୍କୁ ଦନ୍ତ ଫେରାଇ ଦେବା ପାଇଁ କହିଥିଲେ ଏବଂ କାର୍ତ୍ତିକେୟ ଏଥିରେ ରାଜି ହୋଇଥିଲେ । ସବୁ ପୂଜାରେ ସେ ପ୍ରଥମେ ପୂଜା ପାଇବା ଉଚିତ ବୋଲି କହିଥିଲେ । ଏହିପରି ଗଣେଶ ଏକଦନ୍ତ ହେଲେ । ସେ ବିଘ୍ନର ଦେବତା ଏବଂ ବିଘ୍ନର ବିନାଶକ । ତାଙ୍କର ସ୍ୱର୍ଗୀୟ ଏବଂ ସୁନ୍ଦର ମୁଖ ଯୋଗୁଁ ତାଙ୍କୁ 'ସୁମୁଖ' ମଧ୍ୟ କୁହାଯାଏ । ତାଙ୍କର ମୁଖ୍ୟ ନାମ ୧୬ଟି ରହିଛି, ଯଥା:—ସୁମୁଖ, କପିଳ, ଗଜକର୍ଣ୍ଣିକା, ଲମ୍ବୋଦର, ଭିକାଣ୍ଡ, ବିଘ୍ନରାଜ, ଗଣାଧିପ, ଧୂମକେତୁ, ଗଣାଧ୍ୟକ୍ଷ, ଫାଲଚନ୍ଦ୍ର, ଗଜାନନ, ବକ୍ରତୁଣ୍ଡ, ସୂର୍ପକର୍ଣ୍ଣ, ହେରମ୍ବ, ସ୍କନ୍ଦ ପୂର୍ବଜ ଏବଂ ଏକଦନ୍ତ ।

(Indira K. K. Varma in Ganesh, the God of the Masses ର ଛାୟାରେ)



# ଅନନ୍ତ ଚତୁର୍ଦ୍ଦଶୀ

ଭବିଷ୍ୟ ପୁରାଣରେ ଲେଖାଅଛି—

ସର୍ବକାମ ପ୍ରଦଂନୃଣାଂ ସ୍ତ୍ରୀଣାଂଚୈବ ଯୁଧିଷ୍ଠିର !
ଶୁକ୍ଳପକ୍ଷେ ଚତୁର୍ଦ୍ଦଶ୍ୟାଂ ମାସି ଭାଦ୍ରପଦେ ଶୁଭେ
ତସ୍ୟାନୁଷ୍ଠାନ ମାତ୍ରେଣ ସର୍ବପାଠଂ ପ୍ରଣଶ୍ୟତି ।"

ଅର୍ଥାତ୍ ହେ, ଯୁଧିଷ୍ଠିର ! ସ୍ତ୍ରୀ ଓ ପୁରୁଷଙ୍କର ସର୍ବକାମପ୍ରଦ ଓ ସର୍ବ ପାପହର 'ଅନନ୍ତ'ଙ୍କୁ ଭାଦ୍ରବ ମାସର ଶୁଭ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ପୂଜାକଲେ ସର୍ବ ପାପ ବିନଷ୍ଟ ହୁଏ । ପୂର୍ବାହ୍ନ ହିଁ ଦେବତାଙ୍କ ସମୟ । ପୁଣି ପୁଣ୍ୟ କାର୍ଯ୍ୟରେ ଉଦୟତିଥି ଧରାଯାଏ । ତେଣୁ ଉଦୟଠାରୁ ୬ ଦଣ୍ଡ ହିଁ ଏହି ବ୍ରତର କର୍ମକାଳ । ଏହି ଚତୁର୍ଦ୍ଦଶୀ ତିଥି ଉଦୟଠାରୁ ଚାରିଦଣ୍ଡ ଥିଲେ ମଧ୍ୟ ସେହିଦିନ ଅନନ୍ତ ବ୍ରତ କରାଯିବ । କେତେକ ମଧ୍ୟାହ୍ନ ସମୟ ଏହାର କର୍ମକାଳ ବୋଲି କହନ୍ତି, ମାତ୍ର ଗଦାଧର ପଦ୍ଧତିରେ ଏହାକୁ ବାରଣ କରାଯାଇଛି । ସେମାନଙ୍କର ଯୁକ୍ତି ହେଉଛି 'ଶୀଳା' (ପରେ ଆଲୋଚନା କରାଯାଇଛି ) ନିଜ ପତିଙ୍କ ସହ ପିତୃ ଗୃହକୁ ଗଲାବେଳେ ମଧ୍ୟାହ୍ନ ସମୟରେ ନଦୀତଟରେ ବ୍ରତଚାରିଣୀ ସ୍ତ୍ରୀମାନଙ୍କୁ ଦେଖିଥିଲେ । ଯଥା—

ମଧ୍ୟାହ୍ନେ ଭୋଜ୍ୟ ବେଳାୟାଂ ସମୁତ୍ତୀର୍ଯ୍ୟ ସରିତ୍ତଟେ
ଶୀଳା ଦଦର୍ଶ ସା ସ୍ତ୍ରୀଣାଂ ସମୂହଂ ରକ୍ତବାସସଂ,
ଚତୁର୍ଦ୍ଦଶ୍ୟାମର୍ଚ୍ଚୟନ୍ତଂ ଭକ୍ତ୍ୟାଦେବଂ ପୃଥକ୍ ପୃଥକ୍

( ଗଦାଧର ପଦ୍ଧତି—ପୃଷ୍ଠା ୧୩୨ )

ମାତ୍ର ଏହା ସଙ୍ଗତ ନୁହେଁ, ଏ ଯୁକ୍ତି ଦୁର୍ବଳ ।

'ଅନନ୍ତ' ଏ ଶବ୍ଦର ଅର୍ଥ ବଡ଼ ବ୍ୟାପକ ଓ ଏହି ବ୍ୟାପ୍ତିରେ ହିଁ ଏହାର ମହତ୍ତ୍ୱ 'ଅନନ୍ତ' ଭଗବାନ କୃଷ୍ଣ ଓ 'କାଳ'ର ନାମରେ ହିଁ ବିଶେଷ ପ୍ରଶସ୍ତ । ଉଲ୍ଲେଖ ଅଛି—"ଅନନ୍ତ ଇତ୍ୟହଂ ପାର୍ଥ, ମମରୂପଂ ନିବୋଧୟ" ପୁନଶ୍ଚ 'ଯୋଽୟଂ କାଳୋ ଯଥା ଖ୍ୟାତଃ ସୋଽନନ୍ତ ଇତି

ବିଶ୍ରୁତଃ'' କିନ୍ତୁ ବାସ୍ତବରେ ଏହା ସାଗରସ୍ଥ ଶେଷଶାୟୀ ଭଗବାନଙ୍କ ପୂଜା । ଅନନ୍ତଙ୍କ ଉଦ୍ଦେଶ୍ୟରେ ଯେଉଁ ମନ୍ତ୍ର ରଚିତ, ସେଥିରେ ଶେଷ-ନାଗଙ୍କ ପ୍ରାର୍ଥନା ମଧ୍ୟ ଗୁମ୍ଫିତ । ଏଣୁ କୃଷ୍ଣରୂପ ବିଷ୍ଣୁ ଓ କାଳରୂପ ଶେଷନାଗ ଉଭୟଙ୍କ ସମ୍ମିଳିତ ପୂଜା ଆବଶ୍ୟକ ବୋଲି ମତ ପ୍ରକାଶ ପାଏ । ବିଶେଷତଃ ନଦୀ କୂଳ ଏହି ପୂଜା ପକ୍ଷେ ପ୍ରଶସ୍ତ । ଭୂମିରେ ଗୋମୟ ଲିପି, ସୁନା, ରୁପା ବା ତମ୍ବାର କଳସ ରଖି ଏହାପରେ ବିଷ୍ଣୁ ମୂର୍ତ୍ତି ସହିତ ୧୪ ଗଣ୍ଠିଥିବା ଡୋରି ରଖି ପୂଜା କରିବ । ମୋଟା ମୋଟା ରୋଟି ଓ କ୍ଷୀର ଭୋଗ ଦିଆଯାଏ ବୋଲି ଜଣେ ହିନ୍ଦୀ ଲେଖକ ଲେଖିଚନ୍ତି । ମୋଟ ଉପରେ ଏ ଦିନ ଅନନ୍ତଙ୍କ ନୈବେଦ୍ୟଲାଗି ଉତ୍ତମ ଦ୍ରବ୍ୟ ସବୁ ରନ୍ଧାଯାଏ ।

ପୂର୍ବୋକ୍ତ 'ଅନନ୍ତ'ର ଅନ୍ୟ ଅର୍ଥ ଶେଷନାଗଙ୍କୁ ବୁଝାଉଥିଲେ ସୁଦ୍ଧା ମୁଖ୍ୟତଃ କ୍ଷୀରାବ୍ଧି ଶାୟୀ ଅନନ୍ତ ବିଷ୍ଣୁ ବୈକୁଣ୍ଠବାସୀ ନାରାୟଣ ଯେ ଏଠାରେ ସେବ୍ୟ ନିମ୍ନ ଧ୍ୟାନରେ ଏହାର ସୂଚନା ସ୍ପଷ୍ଟ ।

ଅନନ୍ତଂ ଶ୍ୱେତବର୍ଣ୍ଣଂ ଚ ସହସ୍ର ଫଣକୈର୍ଯୁତଂ
ଚତୁର୍ବାହୁଂ ମହାଦେବଂ ସର୍ବ ଦୁଃଖାପହାରକଂ
ନାଗୋ ପରି ପ୍ରସୁପ୍ତଂ ଚ ନାନାଳଙ୍କାର ଭୂଷିତଂ
ଦିବ୍ୟ ମାଲ୍ୟାମ୍ବରଧରଂ ଦିବ୍ୟ ଗନ୍ଧାନୁଲେପନଂ
ଯୋଗନିଦ୍ରାସ୍ଥିତଂ ଚୈବ ଲକ୍ଷ୍ମୀଧୃତଂ ପଦାମ୍ବୁଜଂ'

('ବ୍ରତବିଧାନ ପଦ୍ଧତି'ରୁ)

କୃଷିପ୍ରଧାନ ଭାରତବର୍ଷରେ ସାଧାରଣ ଜନତା ବିଶେଷ ମାତ୍ରାରେ ଈଶ୍ୱର-ବିଶ୍ୱାସୀ । ବିଷ୍ଣୁ ପୁଣି ପାଳନକର୍ତ୍ତା । ଏ ବ୍ରତ ପୁଣି ବର୍ଷାଋତୁର ଅନ୍ତିମ ଉତ୍ସବ । ତିଥି ପୁଣି ଚତୁର୍ଦ୍ଦଶୀ, ଯାହାକି ରିକ୍ତାତିଥି ରୂପେ ପରିଚିତ । ଏଣୁ ଏହି 'ରିକ୍ତା' ଅର୍ଥାତ୍ 'ଖାଲି' ତିଥିରେ ଦୟାମୟଙ୍କ କୃପାଭିକ୍ଷା ଭାରତୀୟଙ୍କ ପକ୍ଷେ ସମୀଚୀନ । 'ନଦୀତଟରେ ଏହାର ପୂଜା ପ୍ରଶସ୍ତ' ଅର୍ଥ ନଦୀତଟ ମୁକ୍ତ ଓ ପବିତ୍ର ସ୍ଥାନ । ଖୋଲା ସ୍ଥାନରେ ପ୍ରକୃତି କୋଳରେ ମନ ନିର୍ମଳ ରହେ । ମାତ୍ର ଏ ବ୍ରତ ପ୍ରତି ଘରେ ଘରେ ପାଳିତ ହୁଏ । ଗୋମୟଲେପନ ମୂଳରେ ଶୁଦ୍ଧତା ବିଜ୍ଞାନ-

ସମ୍ମତ ଶିକ୍ଷା ରହିଛି । ଏହା ଜୀବ ଶୂନାଶକ, ପୁଣି ସୂତାରେ ଚଉଦଟି ଗଣ୍ଠି ଦେବା କଥା । ଏ ଚଉଦ ଗଣ୍ଠି ଚଉଦ ଜଣ ଦେବତାଙ୍କ ପ୍ରୀତି ଲାଗି ଉଦ୍ଦିଷ୍ଟ ।

ଯଥା—'ନବ୍ୟଦୋରେ ବିଷ୍ଣୁ[୧] ରଗ୍ନି[୨]ସ୍ତଥା ସୂର୍ଯ୍ୟଃ[୩] ପିତାମହ[୪]
ଚନ୍ଦ୍ରଃ[୫] ପିନାକୀ[୬] ବିଘ୍ନେଶଃ[୭] ସ୍କନ୍ଦଃ[୮] ଶକ୍ର[୯]ସ୍ତଥୈବଚ
ବରୁଣଃ[୧୦] ପବନଃ[୧୧] ପୃଥ୍ୱୀ[୧୨] ବସବୋ[୧୩] ଗ୍ରନ୍ଥିଦେବତା
ସୂତ୍ରଗ୍ରନ୍ଥିଷୁ ସଂସ୍ଥାପ୍ୟ ଅନନ୍ତସ୍ୟ[୧୪] ନମୋନମଃ''

ଏହି ଶ୍ଲୋକରେ ପ୍ରଥମେ ପାଳନକର୍ତ୍ତା ବିଷ୍ଣୁ ଓ ଶେଷରେ ଧରଣୀ ଧାରୀ 'ଅନନ୍ତ' ଙ୍କ ନାମୋଲ୍ଲେଖ ଅଛି ଓ ମଝିରେ ୧୨ ଜଣ ଦେବତାଙ୍କ ନାମ ଦିଆଯାଇଛି । ଏହି ୧୨ ଜଣ ଦେବତା ମଧ୍ୟ ସୃଷ୍ଟି ସମ୍ବଳକ । ସେମାନେ ହେଲେ ସୃଷ୍ଟିନିର୍ବାହୀ ଅଗ୍ନି, ସୃଷ୍ଟିକର୍ତ୍ତା ବ୍ରହ୍ମା, ସଂହାର କର୍ତ୍ତା ଶିବ, ସୋମ ଓ ସୂର୍ଯ୍ୟ, ବିଘ୍ନ ବିନାଶକ ଗଣେଶ, ଦେବ ସେନାପତି ସ୍କନ୍ଦ, ଦେବରାଜ ଇନ୍ଦ୍ର, ଜୀବନର ମୁଖ୍ୟ ସାଧନ ଜଳ, ବାୟୁ ଓ ଅନ୍ନର ଅଧିଷ୍ଠାତା ବରୁଣ, ପବନ ଏବଂ ପୃଥ୍ୱୀ ତଥା ବସୁ । ଏହିପରି ସାରା ସଂସାରର ରକ୍ଷକ ଦେବତାଗଣଙ୍କ ପୂଜନ ଏହି ବ୍ରତାନ୍ତର୍ଗତ । ଯେଉଁ ଅନନ୍ତ ବ୍ରତର ଏତେ ସୁଦୂରପ୍ରସାରୀ ମହିମା ତାହାର କଥାବସ୍ତୁ ଭବିଷ୍ୟ ପୁରାଣରେ ଲିପିବଦ୍ଧ । କୃଷ୍ଣ ଯୁଧିଷ୍ଠିର ଉକ୍ତି ପ୍ରତ୍ୟୁକ୍ତିରୁ ସେ କଥାବସ୍ତୁର ସାର ନିର୍ଯ୍ୟାସ ମାତ୍ର ନିମ୍ନରେ ଦିଆଗଲା ।

ତେବେ ଯୁଧିଷ୍ଠିର କୃଷ୍ଣଙ୍କ ଠାରୁ 'ଅନନ୍ତ' ପଦର ଅର୍ଥ (ପୂର୍ବ ମତେ) ବୁଝି ସାରିବା ପରେ ପୁଣି ପଚାରିଲେ—

ଏହି ବ୍ରତ କଲେ କେଉଁ ପୁଣ୍ୟ ଲାଭ
ହୁଏ, ତାହା ଫଳେ ଆସେ କେଉଁ ଶୁଭ
ଏହି ବ୍ରତ ପ୍ରଥମେ କିଏ କରିଥିଲା
ମର୍ତ୍ତ୍ୟେ ଏହି ବ୍ରତ ପ୍ରକାଶ କେ କଲା''

( ବ୍ର. ବ. ପଦ୍ଧତିରୁ )

ଶ୍ରୀକୃଷ୍ଣ କହିଲେ, "ହେ ଯୁଧିଷ୍ଠିର ! ପୂର୍ବେ ସତ୍ୟଯୁଗରେ ବଶିଷ୍ଠ ଗୋତ୍ରରେ ସୁମନ୍ତ ନାମରେ ଜଣେ ଦ୍ୱିଜ ଥିଲେ । ଏ ସର୍ବଗୁଣସମ୍ପନ୍ନା ଭୃଗୁପୁତ୍ରୀ 'ଦୀକ୍ଷା'କୁ ବିବାହ କରିଥିଲେ । କାଳକ୍ରମେ ଏହାଙ୍କ 'ଶୀଳା'

ନାମକ ଏକ ସୁଲକ୍ଷଣୀ କନ୍ୟା ଜାତ ହେଲା । କ୍ରମଶଃ ସେ ଯୌବନ ପ୍ରାପ୍ତ ହେଲା । ଏହା ମଧ୍ୟରେ 'ଶୀଳା' ମାତା ଜ୍ୱରାକ୍ରାନ୍ତ ହୋଇ ନଦୀ ଜଳରେ ପଶି ସ୍ୱର୍ଗକୁ ଗଲେ । ଏହାପରେ 'ସୁମନ୍ତ' ଧର୍ମପୁତ୍ର କନ୍ୟା 'କର୍କଶା'କୁ ବିବାହ କଲେ । ଏ ଦୁଃଶୀଳା, କ୍ରୋଧିନୀ, ମୁଖରା, ନିର୍ଦ୍ଦୟା, ସ୍ୱେଚ୍ଛାଚାରିଣୀ, କୁରୂପା ଓ କଟୁଭାଷିଣୀ ଥିଲା । ଝିଅ 'ଶୀଳା' ସର୍ବଦା ପିତୃଗୃହରେ କର୍ମରତା ରହୁଥିଲା । ପିତା କନ୍ୟାର ଯୌବନାବସ୍ଥା ଦେଖି କୌଣ୍ଡିନ୍ୟ ଦ୍ୱିଜକୁ ବରଣ କରି ଆଣି କନ୍ୟାଦାନ କଲେ । ଯୌତୁକ ଦେବା ପାଇଁ 'କର୍କଶା' ଭାର୍ଯ୍ୟାକୁ କହନ୍ତେ ସେ ପେଡ଼ି ମଧ୍ୟରୁ ସବୁ ଧନରତ୍ନ ନେଇ ନିଜ ପିତାଳୟକୁ ରାଗରେ ପଳାଇଗଲା । ଶେଷରେ 'ସୁମନ୍ତ' ଯଥାବିଧି ଝିଅକୁ ଜୋଇଁଙ୍କ ସହ ପଠାଇଦେଲେ । 'ଶୀଳା' ମଧ୍ୟାହ୍ନ କାଳରେ ଭୋଜନ କରିବା ପାଇଁ ନଦୀତୀରରେ ଶକଟରୁ ଓହ୍ଲାଇ ଦେଖିଲେ— ସ୍ତ୍ରୀମାନେ ରକ୍ତ ବସ୍ତ୍ର ପିନ୍ଧି କରି ପୂଜା କରୁଛନ୍ତି । 'ଶୀଳା' ପଚାରିବାରୁ ସେମାନେ ଉତ୍ତର ଦେଲେ, 'ପ୍ରାତଃସ୍ନାନ ପରେ ଆମ୍ଭେ ଏ ଅନନ୍ତବ୍ରତ ପୂଜା କରୁଅଛୁ ।' ସେମାନେ କହିଲେ, 'ଦୁଇପୋଷ ଗହମ ଚୂନାରେ ଦୁଇଟି ଚକୁଳି ପକାଇ ନଦୀତୀରରେ ମଣ୍ଡଳ କାଟି ଅନନ୍ତ ଦେବଙ୍କୁ ପୀତବସ୍ତ୍ର ଦୁଇଟି ଦେଇ ପୂଜା କରିବ, ଚଉଦ ଖିଅ ସୂତାରେ ଡୋର ନିର୍ମାଣ କରି କୁଙ୍କୁମ ଲଗାଇ ଚଉଦଟି ଗଣ୍ଠି ତହିଁରେ ପକାଇ 'ଅନନ୍ତ'ଙ୍କୁ ଆଗ ସମର୍ପଣ କରି ସ୍ୱହସ୍ତ ବନ୍ଧନ କରିବ । ସ୍ତ୍ରୀ ବାମହସ୍ତରେ ଓ ପୁରୁଷ ଦକ୍ଷିଣ ହସ୍ତରେ ପିନ୍ଧି ପ୍ରଭୁଙ୍କୁ ଧ୍ୟାନ କରିବ । ସେ ବ୍ରତ ବର୍ଷେ ପର୍ଯ୍ୟନ୍ତ ହାତରେ ପିନ୍ଧାଯିବ । ଶୀଳା ସେହି ବ୍ରତ କରି ଧନ, ଧାନ୍ୟ ପୁତ୍ର ନାତି ସକଳ ଲାଭ କଲା । ତା' ସ୍ୱାମୀ ଏହା ଦେଖି 'ଅନନ୍ତ ଗୋଟାଏ କିଏ' କହି ସ୍ତ୍ରୀ ହାତରୁ ସେ ଡୋର ଛିଣ୍ଡାଇଦେଲା ଓ ନିଆଁରେ ପକାଇ ଦେଲା । ଶୀଳା' ଦୁଃଖରେ ହା ହା କାର କରି ଜଳନ୍ତା ନିଆଁରୁ ତାହାକୁ ସଂଗ୍ରହ କରି ସାଇତି ରଖିଲା, ଏଣେ ଧନ ସମ୍ପଦ ସବୁ ସରି ଆସିଲା, ବିପଦ ମାଡ଼ି ଆସିଲା । ତତ୍ପରେ ସ୍ୱାମୀ ସ୍ତ୍ରୀ କଥାରେ ବିଶ୍ୱାସ କରି ଅନାହାରୀ ଓ ବ୍ରହ୍ମଚାରୀ ହୋଇ ହରିନାମ କୀର୍ତ୍ତନ କରି ନିର୍ଜନ କାନନ ମଧ୍ୟରେ ପ୍ରବେଶ କଲା । ପଥ ମଧ୍ୟରେ ଯାହାକୁ ଦେଖେ 'ତୁମେ ଅନନ୍ତଙ୍କୁ ଦେଖିଛ କି ?' ବୋଲି ପ୍ରଶ୍ନ ପଚାରେ । ଚୂତଦ୍ରୁମ, ସବତ୍ସାଧେନୁ, ବୃଷଭ କୁମୁଦ କହ୍ଲାର ଶୋଭିତ ପୁଷ୍କରିଣୀ ଗର୍ଦ୍ଦଭ ଓ ହସ୍ତୀମାନଙ୍କଠାରୁ

ଦିଗଶବାଣୀ ଶୁଣି ସେ କୌଣ୍ଡିନ୍ୟ ବ୍ରାହ୍ମଣ ଅଚେତନ ହୋଇ ପଡ଼ିଗଲେ । ଶେଷରେ ଭଗବାନ ଦୟାପୂର୍ବକ ଦ୍ୱିଜବେଶ ଧରି ବ୍ରାହ୍ମଣଙ୍କ ହାତଧରି କହିଲେ, 'ଆସ ମୁଁ ତୁମକୁ ଅନନ୍ତ'ଙ୍କ ସହ ଦର୍ଶନ କରାଇ ଦେବି' । ଦେବସଭା ଆସୀନ, ଶଙ୍ଖ, ଚକ୍ର ଗରୁଡ଼ ଶୋଭିତ ଅନନ୍ତଙ୍କ ଦର୍ଶନ ବ୍ରାହ୍ମଣ ପାଇ ତାଙ୍କ ପାଦପଦ୍ମରେ ମସ୍ତକ ଅବନତ କଲେ । 'ଅନନ୍ତ' ସନ୍ତୁଷ୍ଟ ହୋଇ ତାଙ୍କୁ ଧନ, ଧର୍ମ ଓ ବିଷ୍ଣୁଧାମ ପ୍ରସନ୍ନଚିତ୍ତରେ ଦେଲେ । ବ୍ରାହ୍ମଣ ପଚାରିଲେ—'ପ୍ରଭୋ ! ବାଟରେ ଯେଉଁ ଆମ୍ବଗଛ, ପୋଖରୀ, ଗାଈ, ଗଧ, ହାତୀ ଦେଖିଥିଲି ସେମାନେ କିଏ ? 'ଅନନ୍ତ' ସେବା ନ କରିବାରୁ ସେମାନଙ୍କର ଏହିପରି ଦୁରବସ୍ଥା ହୋଇଛି ବୋଲି 'ଅନନ୍ତ ଦେବତା' କହିଲେ । ଯଦି ଏମାନେ ଏହି ପୁଣ୍ୟବ୍ରତ କରନ୍ତି, ତେବେ ସେମାନେ ଶାପମୁକ୍ତ ହେବେ । ଏଣୁ ହେ ବ୍ରାହ୍ମଣ ! ଚଉଦ ବର୍ଷ ପର୍ଯ୍ୟନ୍ତ ମୋର ଏ ବ୍ରତ ପାଳନ କର । ସୁଖ ଭୋଗକରି, ନକ୍ଷତ୍ର ଲୋକରେ ସ୍ଥାନ ପାଇବ ଓ ତୁମର ନାମ 'ପୁନର୍ବସୁ' ହେବ । ବ୍ରାହ୍ମଣ ଗୃହକୁ ଫେରି ଏ ବ୍ରତ କରି ଭାର୍ଯ୍ୟା 'ଶୀଳା' ସହ ସୌଭାଗ୍ୟ ଲାଭ କରି ଦେହାନ୍ତେ 'ପୁନର୍ବସୁ' ନକ୍ଷତ୍ର ରୂପେ ଶୋଭା ପାଇଲେ । ଏଣୁ ହେ ଯୁଧିଷ୍ଠିର ! ତୁମ୍ଭେ ସେ ତେଜାସ୍ୱାନ୍ ନକ୍ଷତ୍ରକୁ ଏବେ ମଧ୍ୟ ଦେଖୁଅଛ । ସେ ଏହି 'ଅନନ୍ତବ୍ରତ'ର ଫଳ ।

"ଏତତ୍ତେ କଥିତଂ ପାର୍ଥ ! ବ୍ରତାନାଂ ବ୍ରତମୁତ୍ତମମ୍
ଯତ୍ କୃତ୍ୱା ସର୍ବ ପାପେଭ୍ୟୋ ମୁଚ୍ୟତେ ନାତ୍ର ସଂଶୟଃ
ଯେ ଚ ଶୃଣ୍ୱନ୍ତି ସତତଂ କଥ୍ୟମାନାଂ କଥାମିମଂ
ସର୍ବପାପ ବିନିର୍ମୁକ୍ତା ସ୍ତେ ଯାନ୍ତି ପରମାଂ ଗତିଃ"

ଅର୍ଥାତ୍ 'ହେ ଯୁଧିଷ୍ଠିର ଯେଉଁ ବ୍ରତକରି ଲୋକ ନିଷ୍ପାପ ହୋଇ ସଦ୍‌ଗତି ଲାଭକରେ ସେ କଥା ମୁଁ କହିଲି ।

( ବ୍ରତବିଧାନ ପଦ୍ଧତିରୁ ଉଦ୍ଧୃତ )

'ଅନନ୍ତ ବ୍ରତ' ବିଶେଷତଃ 'ଅନନ୍ତ'ଙ୍କ ସମ୍ବନ୍ଧରେ 'ଶ୍ରୀମନ୍ଦିର' ସମାଚାରରେ (ଅକ୍ଟୋବର ୧ ତାରିଖ, ଆଶ୍ୱିନ ୯ ଦିନ, ବୁଧବାର ୧୯୬୯ ମସିହା ) ପ୍ରକାଶିତ ଏକ ଲେଖାରୁ ଜଣାଯାଏ—'ଏହି ଭୋଗଶାୟୀ

ମହାନାରାୟଣ ଯେତେବେଳେ ତ୍ରିପାଦ ବିଭୂତି ସମ୍ପନ୍ନ ସେତେବେଳେ ସେ ମହାନାରାୟଣ, ମାତ୍ର ସେ ଯେତେବେଳେ ଶେଷଦେବଙ୍କୁ ନେଇ ସୃଷ୍ଟିସଙ୍ଗେ ଜଡ଼ିତ ସେତେବେଳେ ସେ 'ଅନନ୍ତ' ବିଗ୍ରହ ଅଟନ୍ତି । ଯେତେବେଳେ ନାରାୟଣ ମୁଖ୍ୟ ସେତେବେଳେ ସେ ବିଗ୍ରହଙ୍କୁ ଶ୍ୟାମଳ ବର୍ଣ୍ଣ ବିଶିଷ୍ଟ ଶଙ୍ଖ-ଚକ୍ର-ଗଦାପଦ୍ମ ହସ୍ତ ଶେଷଶାୟୀ ବିଷ୍ଣୁ ରୂପରେ, ମାତ୍ର ଯେତେବେଳେ ସେ ବିଗ୍ରହରେ 'ଅନ୍ତ' ବା ଶେଷନାଗ ମୁଖ୍ୟ ସେତେବେଳେ ସେ ଶୁକ୍ଳବର୍ଣ୍ଣର ବିଗ୍ରହ ଅଟନ୍ତି × × ଏହି ଅନନ୍ତତତ୍ତ୍ୱରେ ଅନନ୍ତ ସ୍ୱୟଂ ବଳଭଦ୍ର ଓ ଶ୍ରୀଜଗନ୍ନାଥ ଶେଷଶାୟୀ ମହାବିଷ୍ଣୁ ଓ ସୁଭଦ୍ରା ହିରଣ୍ୟ ଗର୍ଭପଦ୍ମଯୋନି ବ୍ରହ୍ମାରୂପରେ ପରିଗଣିତ ହୋଇ ଥାନ୍ତି ।"



## ଦ୍ୱିତୀୟାଙ୍କ

ଆଶ୍ୱିନ

# ମହାଳୟା ଶ୍ରାଦ୍ଧ

ଭାରତୀୟ ପ୍ରାଣରେ ପୂର୍ବପୁରୁଷ ବା ବଡ଼ବଡ଼ିଆଙ୍କ ସ୍ମୃତି ଉଦ୍ଦୀପନ, ପିତୃପୁରୁଷଙ୍କ କଳ୍ପନା ଓ ସେମାନଙ୍କ ଉପାସନା ବହୁକାଳରୁ ଗଢ଼ି ଆସୁଛି । ଆଶ୍ୱିନ ମାସର କୃଷ୍ଣପକ୍ଷ ପିତୃପକ୍ଷ ରୂପେ ପରିଚିତ । କନ୍ୟା ସଂକ୍ରାନ୍ତିଠାରୁ ବୃଶ୍ଚିକ ସଂକ୍ରାନ୍ତି ଯାଏ ଦୁଇମାସ ପିତୃମାନେ ପିତୃଲୋକରୁ ଆସି ମର୍ତ୍ତ୍ୟଲୋକରେ ରହନ୍ତି । ଏ ଦୁଇମାସ ମଧ୍ୟରେ ଶ୍ରାଦ୍ଧ କରା ନ ଗଲେ ବୃଶ୍ଚିକ ସଂକ୍ରାନ୍ତି ପୂର୍ବଦିନ ସନ୍ଧ୍ୟାରେ ପୁଣି ପିତୃ-ଲୋକକୁ ସେମାନେ ଅସନ୍ତୁଷ୍ଟ ହୋଇ ଅଭିଶାପ ଦେଇ ଫେରିଯାଆନ୍ତି ବୋଲି ଆମର ଶାସ୍ତ୍ର ଓ ଲୋକବିଶ୍ୱାସରେ ଅଛି । ସମଗ୍ର ଭାରତବର୍ଷରେ ଏହି ପଞ୍ଚଦଶ ଦିବସ ପିତୃଦିବସ ରୂପେ ଉଦ୍ଦିଷ୍ଟ । ଏହି ଦିବସ ଗୁଡ଼ିକରେ ଶ୍ରାଦ୍ଧ ତର୍ପଣାଦି ଆଚରିତ ହୋଇଥାଏ । ସ୍ମରଣାତୀତ କାଳରୁ ଏହି ଧାରା ନିୟମିତ ରୂପେ ପ୍ରଚଳିତ ହୋଇ ଆସୁଛି ।

ସାଧାରଣ ସଂସାରୀ ତାହାର ଜୀବନ-କାଳ ମଧ୍ୟରେ ତା'ର ସମସ୍ତ ବାସନାର ତୃପ୍ତି ଘଟାଇପାରେ ନାହିଁ; କାରଣ କାମନାର ବିନାଶ ନାହିଁ । ଏହା ଏକ ଦେଦୀପ୍ୟମାନ ଅଗ୍ନିଶିଖା । ଏହା କ୍ରମବର୍ଦ୍ଧିଷ୍ଣୁ ହୋଇ ଲୋକ-ମନରେ ମାୟାର ଭେଳକି ସୃଷ୍ଟିକରେ । କାମନା-ବାସନାର ଲୁଚକାଳି ଖେଳ ମଧ୍ୟରେ ଜୀବକୁ ପରପାରିରୁ ସତର୍କ ଘଣ୍ଟି ଦିଆଯାଏ । ଉତ୍ତପ୍ତ କାମନାମୟ ଇଚ୍ଛାଶରୀରରେ ଯେତେବେଳେ ମୃତ୍ୟୁର ଶୀତଳ ସ୍ପର୍ଶ ବାଜେ ତା'ର ଅଶ୍ୱସ୍ତିକର ପଞ୍ଚତ୍ୱ ପ୍ରାପ୍ତି ଘଟେ ସତ, ହେଲେ ଅପୂରଣୀୟ କାମନାଗୁଡ଼ିକ ତାହା ସଙ୍ଗେ ସଙ୍ଗେ ଯାଏ । ବିଶେଷତଃ ଠିକ୍ ଶେଷ ନିଃଶ୍ୱାସ ତ୍ୟାଗ କରିବା ପୂର୍ବରୁ ତାହାର ଏହି ଉପଭୋଗ ବାସନା ବା ବିଷୟସମ୍ଭୋଗ ତାହାକୁ ପୁଣି ମର୍ତ୍ତ୍ୟକୁ ଟାଣେ । ଜୀବନର ଅବସାନ ସଙ୍ଗେ ସଙ୍ଗେ ପଞ୍ଚମହାଭୂତ ( କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ )

ନିଜ ନିଜ ବାଟ ଦେଖନ୍ତି । ଶ୍ରୀମଦ୍ଧର ସମାଲୋଚରରେ ଲେଖାଅଛି—"ମନ ଯଦି ରସଗୋଲା ଖାଇବା ଇଚ୍ଛାରେ ନିବଦ୍ଧ ରହେ, ତେବେ ଜଳତତ୍ତ୍ୱ ଜଳରେ ମିଶିପାରେ ନାହିଁ । ଷ୍ଟୋଟବାଦ ପରି ତାହାର ଏକ ଜଳୀୟ କାମନାମୟ କୋଷ ଅମୋକ୍ଷ ଭାବରେ ରହେ ଓ ମୃତ୍ୟୁ ପରେ ପରେ ସେ ଅନ୍ୟ ଯୋନିପ୍ରାପ୍ତ ହୋଇପାରେ ନାହିଁ । × × ଯେଉଁ ଜୀବ ପ୍ରପଞ୍ଚ କାମନାମୟ ସମ୍ଭୋଗ ମନୋବୃତ୍ତିରୁ ନିବୃତ୍ତ କେବଳ ସେ ଏହି ଜୀବ ଦେହତ୍ୟାଗ ମାତ୍ରେ ଉନ୍ନତ ଶରୀର ପ୍ରାପ୍ତ ହୁଏ । ମାତ୍ର ସାଧାରଣ ମନୁଷ୍ୟ କାମନାମୟ ଶରୀର ଲାଭକରି ପ୍ରଥମେ ପ୍ରେତତ୍ୱ ଏବଂ ପରେ ପିତୃତ୍ୱ ପ୍ରାପ୍ତ ହୋଇଥାଏ ।

ଏହି ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ସେମାନଙ୍କ ଆକାଂକ୍ଷା ପୂରଣ ପାଇଁ ଶ୍ରଦ୍ଧାରେ ଯେଉଁ କାର୍ଯ୍ୟ କରାଯାଏ, ତାହା ଶ୍ରାଦ୍ଧରୂପେ ପରିଚିତ । ଯେଉଁମାନେ ଏହି ଶ୍ରାଦ୍ଧ ଭକ୍ତି ବିନମ୍ର ଚିତ୍ତରେ ଆନ୍ତରିକତା ସହ ପିତୃ-ପୁରୁଷ ଦେବତା, ବ୍ରାହ୍ମଣ ଓ ଅଗ୍ନିକୁ ଦିଅନ୍ତି, ସେମାନେ ଧନ, ଅନ୍ନ, ସନ୍ତାନ ଓ ଆୟୁ ପ୍ରଭୃତି ୪ଟି ବର ଲାଭ କରି ସୁଖୀ ହୁଅନ୍ତି ।

"ଯେ ଯଜନ୍ତି ପିତୃନ୍ ଦେବାନ୍ ବ୍ରାହ୍ମଣାନ୍ ସହୁତାଶନାନ୍
ସର୍ବଭୂତାନ୍ତରାତ୍ମାନଂ ବିଷ୍ଣୁମେବ ଯଜନ୍ତି ତେ
ଦତ୍ତାନେନ ବିଧାନେନ ଲଭନ୍ତେ ଚତୁରୋ ବରାନ୍
ଧନମନ୍ନଂ ସୁତାନାୟୁ ର୍ଦଦତେ ପିତରୋ ଭୁବି
ଆୟୁଃ ପୁତ୍ରାନ୍ ଯଶଃ ସ୍ୱର୍ଗଂ କୀର୍ତ୍ତିଂ ପୁଷ୍ଟିଂ ବଳଂ ତଥା
ପଶୂନ୍ ସୁଖଂ ଧନଂ ଧାନ୍ୟଂ ପ୍ରାପ୍ନୁୟାତ୍ ପିତୃ ପୂଜନାତ୍"
(ଗଦାଧର ପଦ୍ଧତି)

ଯେଉଁ ଦଶ ପ୍ରକାର 'ଦାନ' ଦେବାର ବିଧି ଅଛି, ସେଗୁଡ଼ିକ ହେଲା—

'ଗୋ-ଭୂ-ହିରଣ୍ୟ ବାସାଂସି ଘୃତମନ୍ନଂ ଜଳଂ ତିଳାଃ
ଶଯ୍ୟା ପ୍ରଦାନକଞ୍ଚୈବ ପ୍ରେତ ଦାନାନି ବୈଦଶ'

ପ୍ରେତତ୍ୱ ମୁକ୍ତିପାଇଁ ଅର୍ଥାତ୍ ପ୍ରେତ ପୁରୁଷଙ୍କୁ ପିତୃପୁରୁଷ ସ୍ତରକୁ ଉନ୍ନୀତ ହେବା ନିମନ୍ତେ ଦରକାର ନାହିଁ । ଏହି ଆଶ୍ୱିନ କୃଷ୍ଣ ପକ୍ଷ ଶ୍ରାଦ୍ଧ କାଳ ହୋଇଥିବାରୁ ଏହାକୁ ଶାସ୍ତ୍ରରେ

'ପିତୃକ୍ଷୁଧା' ତିଥି କୁହାଯାଏ । ଶ୍ରଦ୍ଧା ହିଁ ଭରତ୍ତତ ଯଜ୍ଞ ଅଧମ, ତେଣୁ ପିତୃ ଉପାସକମାନେ ଏ ବିଗରେ ଯତ୍ନଶୀଳ ହେବା ଉଚିତ । ଶ୍ରଦ୍ଧାର୍ହ୍ନି ଶ୍ରାଦ୍ଧର ମାପକାଠି ମନୁସଂହିତାର ତୃତୀୟ ଅଧ୍ୟାୟରେ ଲେଖା ଅଛି—ସମ୍ୟକ୍ ଶ୍ରଦ୍ଧା ସମନ୍ୱିତ ହୋଇ ଯଥାବିଧି ପିତୃଗଣଙ୍କୁ ଯାହାକିଛି ଦାନ କରାଯାଏ, ପରକାଳରେ ତାହା ପିତୃଲୋକଙ୍କର ଅକ୍ଷୟ ଓ ଅନନ୍ତ ତୃପ୍ତିର କାରଣ ହୁଏ । ପୁନଶ୍ଚ କୃଷ୍ଣ ଦଶମୀଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ତିଥିମାନେ ଶ୍ରାଦ୍ଧ ସକାଶେ ଯେପରି ପ୍ରଶସ୍ତ, ଅନ୍ୟ ତିଥିମାନେ ସେପରି ନୁହଁନ୍ତି । ପିତୃ-ପୁରୁଷଙ୍କ ପ୍ରୀତ୍ୟର୍ଥେ ଯେଉଁ ଯେଉଁ ପଦାର୍ଥ ସବୁ ଉତ୍ସର୍ଗ କରାଯାଏ, ତାହାର ଏକ ନିଖୁଣ ଚିତ୍ର ମଧ୍ୟ ମନୁସଂହିତାର ନିମ୍ନ ଶ୍ଳୋକରେ ସ୍ପଷ୍ଟ—

"ତିଳୈର୍ବ୍ରୀହିଯବୈର୍ମାଷୈରଦ୍ଭିର୍ମୂଳ ଫଳେନ ବା
ଦତ୍ତେନ ମାଂସ ପ୍ରୀୟନ୍ତେ ବିଧିବତ୍ ପିତରୋନୃଣାମ୍"

ଅର୍ଥାତ୍ ତିଳ, ଧାନ, ଯବ, ବ୍ରୀହି, ଜଳ, ମୂଳ ଓ ଫଳ ବିଧି ପୂର୍ବକ ଅର୍ପଣ କଲେ ମନୁଷ୍ୟମାନଙ୍କର ପିତୃଗଣ ପରିତୁଷ୍ଟ ହୁଅନ୍ତି । ପୁନଶ୍ଚ ପିତୃଗଣ ସମ୍ବର ମାଂସରେ ୨ ମାସ, ହରିଣ ମାଂସରେ ୩ ମାସ, ମେଷ ମାଂସରେ ୪ ମାସ ଓ ପକ୍ଷୀ ମାଂସରେ ୫ ମାସ ତୃପ୍ତ ହୁଅନ୍ତି । ପୁଣି ଛାଗ ମାଂସରେ ୬ ମାସ, ଚିତ୍ର ମୃଗ ମାଂସରେ ୭ମାସ, ଏଣୀ ମୃଗ ମାଂସରେ ୮ ମାସ ଓ କୃଷ୍ଣସାର ମୃଗ ମାଂସ ଦ୍ୱାରା ୯ ମାସ, ବରାହ ଓ ମହିଷ ମାଂସରେ ୧୦ ମାସ, ଠେକୁଆ ଓ କଚ୍ଛପ ମାଂସରେ ୧୧ ମାସ ସେମାନଙ୍କର ପରିତୃପ୍ତି ଘଟେ । ଗୋ ଦୁଗ୍ଧ ଓ ଚାଉଳର ପାୟସ ଦ୍ୱାରା ସମ୍ବତ୍ସର ଓ ଲମ୍ବକର୍ଣ୍ଣ ବିଶିଷ୍ଟ ଶ୍ୱେତବର୍ଣ୍ଣ ବୃଦ୍ଧ ଛାଗ ବା ବାର୍ଦ୍ଧିନସ ମାଂସ ଦ୍ୱାରା ସେମାନଙ୍କର ୧୨ବର୍ଷ ପର୍ଯ୍ୟନ୍ତ ତୃପ୍ତି ହୁଏ । ଉପାସକମାନେ କାଳଶାକ, ବଡ଼କାଣ୍ଟ ବିଶିଷ୍ଟ ମାଛ, ଗଣ୍ଡାର, ରକ୍ତଛାଗ, ମଧୁ, ନୀବାରାଦି ମୁନିଜନ ସେବିତ ଅନ୍ନ ଦ୍ୱାରା ଶ୍ରାଦ୍ଧକରି ପାରିଲେ ଅତି ଉତ୍ତମ ।

ଏହି ଶ୍ରାଦ୍ଧ ସାଧାରଣତଃ ପ୍ରତି ଘରେ କରାଯାଇଥାଏ ଛଡ଼ା ଗୟାରେ, ପୁରୁଷୋତ୍ତମ ପିତୃତୀର୍ଥ ସ୍ୱର୍ଗଦ୍ୱାରରେ, ପବିତ୍ର ପୀଠମାନଙ୍କରେ କରାଯାଇଛି । ଏହାଛଡ଼ା ବିରଜା କ୍ଷେତ୍ରରେ, ନାଭିଗୟାରେ ମଧ୍ୟ ପିତୃ ପୁରୁଷଙ୍କ ପାଇଁ ପିଣ୍ଡଦାନର ଶାସ୍ତ୍ରୀୟ ବ୍ୟବସ୍ଥା ରହିଛି ।

କନ୍ୟା ରାଶିକୁ ସୂର୍ଯ୍ୟ ଗମନ କଲେ ପିତୃପୁରୁଷଙ୍କୁ ବସ୍ତ୍ର କାମୁଡ଼ିବା ପରି ଜଣାଯାଏ । ସେମାନେ ରହି ପାରନ୍ତି ନାହିଁ । ପ୍ରିୟଜନଠାରୁ ତିଳୋଦକ ପାଇଁ ଆଗ୍ରହୀ ହୋଇ ସେମାନେ ପୃଥିବୀ ଅଭିମୁଖୀ ହୁଅନ୍ତି । ଯଦି ତାଙ୍କର ପ୍ରାପ୍ୟ ଗୃହଠାରୁ ନ ପାଆନ୍ତି ତେବେ ଅଭିଶାପ ଦେଇ ନିରାଶରେ ଫେରି ଯାଆନ୍ତି । ତେଣୁ ଆଶ୍ୱିନ ମାସର ଗୃହମାସ ପକ୍ଷ ବା କୃଷ୍ଣପକ୍ଷ ପୃଥିବୀ ପୃଷ୍ଠକି ମହା ଆଳୟରେ ପରିଣତ ହୁଏ । ପିତୃ ଓ ଅବିମୁକ୍ତ ପିତୃ ( ପ୍ରେତ ) ଉଭୟ ଶ୍ରଦ୍ଧା କାମନାରେ ଉପଗତ ହୁଅନ୍ତି ।

ଏହି ପିତୃ ଶ୍ରାଦ୍ଧର ପବିତ୍ର କର୍ତ୍ତବ୍ୟ ସାଧାରଣତଃ ଜ୍ୟେଷ୍ଠ ପୁତ୍ର ଦ୍ୱାରା ସମ୍ପାଦିତ ହୁଏ । କାରଣ ଜ୍ୟେଷ୍ଠପୁତ୍ର କୁଳର ପ୍ରଦୀପ ତୁଲ୍ୟ ଓ ସେ ଜ୍ୟେଷ୍ଠ ହେତୁ ଅଭିନନ୍ଦନୀୟ ଓ ପୂଜନୀୟ, ବଂଶର ଭଲମନ୍ଦପାଇଁ ପ୍ରତ୍ୟକ୍ଷ ଭାବେ ସେ ଦାୟୀ—

"ଜ୍ୟେଷ୍ଠ କୁଳଂ ବର୍ଦ୍ଧୟତି ବିନାଶୟତି ବା ପୁନଃ
ଜ୍ୟେଷ୍ଠଃ ପୂଜ୍ୟତମୋ ଲୋକେ ଜ୍ୟେଷ୍ଠଃ ସଦ୍ଭିରଗର୍ହିତଃ"

'ମନୁସଂହିତା'ରେ ଆହୁରି ମଧ୍ୟ ଜ୍ୟେଷ୍ଠ ସନ୍ତାନ କିପରି ଏକଭାଗ ଅଧିକ ପାଇବାପାଇଁ ଯୋଗ୍ୟ ତାହାର ମଧ୍ୟ ପ୍ରମାଣ ରହିଛି । ମହର୍ଷି ମନୁଙ୍କ ମତରେ ପିତୃଗଣର ରକ୍ଷାକାରୀ ଦେବତାମାନଙ୍କୁ ଶ୍ରାଦ୍ଧରେ ପ୍ରଥମେ ସ୍ଥାପନ କରିବ, କାରଣ ଋଷକ ରହିତ ଶ୍ରାଦ୍ଧକୁ ରାକ୍ଷସମାନେ ନଷ୍ଟ କରି ଦିଅନ୍ତି । ଶ୍ରାଦ୍ଧର ପ୍ରାରମ୍ଭ ଓ ସମାପ୍ତି ଦେବତା ପୂର୍ବକ କରିବ, ପିତାଦି ପୂର୍ବକ କରିବ ନାହିଁ । ଖୋଲାସ୍ଥାନ, ପବିତ୍ର ଦେଶ ବା ନଦୀତୀରସ୍ଥ ନିର୍ଜନ ସ୍ଥାନରେ ଶ୍ରାଦ୍ଧ କଲେ ପିତୃଗଣ ପ୍ରସନ୍ନ ହୁଅନ୍ତି । ସେହି ସ୍ଥାନ ମାନଙ୍କରେ କୁଶଯୁକ୍ତ ପୃଥକ୍ ପୃଥକ୍ ଆସନ ବିନ୍ୟସ୍ତ କରି ତହିଁରେ ସ୍ନାନାଗମନ କୃତ ନିମନ୍ତ୍ରିତ ବ୍ରାହ୍ମଣଙ୍କୁ ବସାଇବ । × × ଏପରିକି ଶ୍ରାଦ୍ଧ ଶେଷରେ ବ୍ରାହ୍ମଣ ଭୋଜନ ସମୟରେ ମଧ୍ୟ କିପରି ସତର୍କତା ଅବଲମ୍ବନ କରିବ ତାହାର ବିଧାନ 'ମନୁ' କରି ଯାଇଛନ୍ତି ।

"ପରିବେଷଣ କାଳରେ ଅଶ୍ରୁପାତ କରିବ ନାହିଁ, କ୍ରୋଧ କରିବ ନାହିଁ, ମିଥ୍ୟା କହିବ ନାହିଁ, ପଦ ଦ୍ୱାରା ଅନ୍ନ ସ୍ପର୍ଶ କରିବ ନାହିଁ, କାରଣ ଅଶ୍ରୁପାତ କଲେ ଅନ୍ନ ପ୍ରେତକୁ ଯାଏ, କ୍ରୋଧ କଲେ ଶତ୍ରୁମାନେ ପାଆନ୍ତି, ମିଥ୍ୟା କହିଲେ କୁକୁରଙ୍କୁ ତାହା ପ୍ରାପ୍ତ ହୁଏ, ପାଦଦ୍ୱାରା ସ୍ପର୍ଶ କଲେ

ରାକ୍ଷସମାନଙ୍କୁ ମିଳେ । ଭୋଜନ ସମୟର ବିଧି ସମ୍ପର୍କରେ କୁହାଯାଇଛି ଯେ ମୁଣ୍ଡରେ ବସ୍ତ୍ରାଦି ବାନ୍ଧି ବା ଦକ୍ଷିଣ ମୁଖ ହୋଇ ବା ଚର୍ମପାଦୁକା ପିନ୍ଧି ଯେ ଭୋଜନ କରାଯାଏ, ତାହା ରାକ୍ଷସମାନେ ପାଆନ୍ତି, ପିତୃଗଣ ଗ୍ରହଣ କରନ୍ତି ନାହିଁ । ବ୍ରାହ୍ମଣ ଭୋଜନ ସମୟରେ ଚଣ୍ଡାଳ, ଶୂକର, କୁକ୍କୁଟ, କୁକୁର, ରଜସ୍ୱଳା ସ୍ତ୍ରୀ ଲୋକ ଏବଂ ନପୁଂସକ ଯେପରି ଦେଖିବାକୁ ନ ପାଆନ୍ତି ଏ ସମସ୍ତ ବ୍ୟବସ୍ଥା କରିବ । ବ୍ରାହ୍ମଣମାନଙ୍କୁ ବିଦାୟ ଦେଇ ଶୁଚି ଭାବରେ ମୌନାବଲମ୍ବୀ ହୋଇ ଏକାଗ୍ର ଚିତ୍ତରେ ଦକ୍ଷିଣ ଦିଗ ଅବଲମ୍ବନ କରି ପିତୃବର୍ଗ ନିକଟରେ ଏହି ପ୍ରାର୍ଥନା କରିବ-"ଆମ୍ଭମାନଙ୍କ ବଂଶରେ ଦାତାର ସଂଖ୍ୟା ବଢ଼ୁ, ଆମ କୁଳରୁ ଶ୍ରଦ୍ଧା ତିରୋହିତ ନ ହେଉ" 'ଏହାପରେ ପିଣ୍ଡଗୁଡ଼ିକୁ ଗାଈ, ବ୍ରାହ୍ମଣ, ଛେଳି ବା ଅଗ୍ନିକୁ ଖୁଆଇବ ଅଥବା ପାଣିକୁ ପକାଇ ଦେବ ।

ପିତୃଗଣଙ୍କୁ 'ବସୁ', ପିତାମହଗଣଙ୍କୁ 'ରୁଦ୍ର' ଓ ପ୍ରପିତାମହଗଣଙ୍କୁ 'ଆଦିତ୍ୟ' ବୋଲାଯାଏ । ସର୍ବଦା 'ବିଘସ' ଭୋଜୀ ବା ଅମୃତ ଭୋଜୀ ହେବ । ବ୍ରାହ୍ମଣାଦିଙ୍କ ଭୋଜନାନ୍ତେ ଅବଶିଷ୍ଟାନ୍ନକୁ 'ବିଘସ' ବୋଲାଯାଏ । ପଦ୍ମଶ୍ରୀ ସଦାଶିବ ରଥ ଶର୍ମାଙ୍କ ଏକ ଲେଖାରୁ ଜଣାଯାଏ ଯଦି ଅପରିହାର୍ଯ୍ୟ କାରଣରୁ ଶ୍ରାଦ୍ଧ କରିବା ସମ୍ଭବ ନ ହୁଏ ସେ ଶ୍ରାଦ୍ଧଦିବସରେ 'ଗୋ ଗ୍ରାସ' କରାଇ ପିତୃ ସ୍ମରଣ ପୂର୍ବକ କର୍ତ୍ତବ୍ୟ ସମ୍ପାଦନ କରିବ । ( ସୁରାଜ୍ୟ-୨୭ . ୯ . ୭୧ ) ଶ୍ରୀ ମନ୍ଦିର ସମାଚାରରୁ ଜଣାଯାଏ ପିତୃ ପୁରୁଷମାନଙ୍କୁ ମୋକ୍ଷ ପ୍ରଦାନ ନିମନ୍ତେ ପ୍ରତି ପିତୃତିଥି ଅମାବାସ୍ୟା ଦିନ ଶ୍ରୀ ନାରାୟଣ ସ୍ୱର୍ଗଦ୍ୱାର ବାଟଦେଇ ଗଲାବେଳେ ପିତୃପୁରୁଷମାନେ ପିତୃତୀର୍ଥ ପିତୃସ୍ତମ୍ଭ ନିକଟରୁ ଦର୍ଶନ ପାଇଥାନ୍ତି । × × ତାହାଛଡ଼ା ପୁରୁଷୋତ୍ତମ କ୍ଷେତ୍ରର ପ୍ରତ୍ୟେକ ପିତୃତୀର୍ଥ ଅଟେ । ତେଣୁ ପ୍ରେତାଙ୍କ ଋଷି, ପିତୃଲୋକଙ୍କ ଦେବତ୍ୱ ଲାଭ ଓ ସେମାନଙ୍କ ତୃପ୍ତି ସାଧନ ପାଇଁ ଏହି ପବିତ୍ର ମହାଳୟା ପକ୍ଷରେ ଶ୍ରଦ୍ଧାରେ ଶ୍ରାଦ୍ଧ ଦାନ କରି ପିତୃସ୍ମରଣ କରିବା କାମ୍ୟ ।



# ଭାରତୀୟ ସଂସ୍କୃତିରେ 'ଶ୍ରାଦ୍ଧ' ଓ 'ମହାଳୟା'

ପିତୃପୁରୁଷମାନଙ୍କୁ ବର୍ଷକରେ ଥରେ ଦିଆ ଯାଇଥିବା ଶ୍ରାଦ୍ଧ ହିନ୍ଦୁ ଧର୍ମର ଏକ ଧାର୍ମିକ ଅନୁଷ୍ଠାନ ପୁଲସ୍ତ୍ୟ ଋଷିଙ୍କ ଅନୁସାରେ "ଶ୍ରଦ୍ଧୟା ଦୀୟତେ ଯତ୍"ରୁ ଶ୍ରାଦ୍ଧ ଶବ୍ଦ ଆସିଅଛି । ଯାହାର ଅର୍ଥ ହେଲା ଖୁବ୍ ବିଶ୍ୱାସରେ ଯାହା ପାଳିତ ହୁଏ ।

ଶ୍ରାଦ୍ଧର ବିଭିନ୍ନ ପ୍ରଣାଳୀ ମଧ୍ୟରେ ଅର୍ଘ୍ୟ ( ଜଳପ୍ରଦାନ ), ହବନ ( ଅଗ୍ନିକୁ ଅର୍ପଣ ), ବ୍ରାହ୍ମଣ, ଭୋଜନ, ପିଣ୍ଡଦାନ, ଦକ୍ଷିଣା ପ୍ରଦାନ ଏବଂ ତର୍ପଣ । ପବିତ୍ର ବ୍ରାହ୍ମଣମାନଙ୍କ ଠାରେ ବିଗତ ତିନି ପିତୃପୁରୁଷମାନଙ୍କର ଆତ୍ମାକୁ ପ୍ରତିଷ୍ଠିତ କରାଯାଇ ପୂଜା କରାଯାଏ । ସେମାନଙ୍କୁ 'ବସୁ', 'ରୁଦ୍ର' ଏବଂ 'ଆଦିତ୍ୟ'ଙ୍କ ସହ ସମାନ କରାଯାଇ ପୂଜା କରାଯାଏ ବୋଲି ପୂର୍ବରୁ ସୂଚିତ ହୋଇଛି । ପିତୃମାନେ ପିତୃଲୋକରେ ପ୍ରେତ ରୂପରେ ବାସ କରୁଥାନ୍ତି । ସେମାନଙ୍କୁ ଶ୍ରାଦ୍ଧ ପାଇଁ ବିଶ୍ୱଦେବଙ୍କଠାରେ ସ୍ଥାପନ କରାଯାଏ ।

ଦର୍ଭ ବା କୁଶ ଘାସ ଏବଂ ତିଳ ଶ୍ରାଦ୍ଧ ସମାପନ ପାଇଁ ଦରକାର । ପଦ୍ମ ପୁରାଣ କହେ ଯେ କୁଶ ଏବଂ କଳା ତିଳ ବିଷ୍ଣୁଙ୍କ ଦେହରୁ ଆସିଛି । ଆମ୍ବଳାୟନ ଓ ଗୃହ୍ୟସୂତ୍ର କହେ ଯେ ବୈଦିକ ଗଳ୍ପାନୁସାରେ ଜଳର ସାରାଂଶ ଦର୍ଭରେ ପରିଣତ ହୋଇଛି । ଗୋଟିଏ ବୈଦିକ ଗଳ୍ପାନୁସାରେ ବିଷ୍ଣୁ ସମସ୍ତ ଅମଙ୍ଗଳର ଶତ୍ରୁ ହୋଇଥିବାରୁ ତିଳ ବ୍ୟବହାର କଲେ ଶ୍ରାଦ୍ଧ ଆଉ ସେମାନେ ନଷ୍ଟ କରିବାର ସୁବିଧା ପାଆନ୍ତି ନାହିଁ । ସବୁ ପବିତ୍ର ଜଳର ସମାହାର ହୋଇଥିବାରୁ କୁଶର ବ୍ୟବହାର ଏହି ଅନୁଷ୍ଠାନକୁ ପବିତ୍ର କରିଏ । ଅର୍ଘ୍ୟ ଏବଂ ପିଣ୍ଡ ପ୍ରଦାନରେ ରୌପ୍ୟପାତ୍ର ବ୍ୟବହାର କରିବା ବିଧି । କାରଣ ପ୍ରାଚୀନ ପିତୃମାନେ ରୌପ୍ୟ ପାତ୍ରରେ ସୁଧା ଦୁହିଁଥିଲେ ଏବଂ ସେମାନେ ସେହି ଦୃଶ୍ୟ ଦେଖି ଆନନ୍ଦିତ ହୁଅନ୍ତି ।

**ସୃଷ୍ଟି**—ଶ୍ରାଦ୍ଧ ଈଶ୍ୱରର ଏକ ମଜା ସୃଷ୍ଟି ରହିଛି । ବରାହ ପୁରାଣ କହେ ଋଷି ଆତ୍ରେୟ ମନୁଙ୍କ ବଂଶରେ ଜନ୍ମ ହୋଇଥିଲେ । ତାଙ୍କର 'ନିମି' ନାମରେ ଗୋଟିଏ ପୁତ୍ର ଥିଲା । ନିମିଙ୍କର ଗୋଟିଏ ପୁତ୍ର ଥିଲା । ସେ ହଜାରେ ବର୍ଷଧରି ତପସ୍ୟା କରି ମୃତ୍ୟୁରେ ପଡ଼ିଲେ । ଏହା ଫଳରେ ନିମି ଗମ୍ଭୀର ଦୁଃଖରେ ପଡ଼ିଲେ । ପୁତ୍ରଶୋକ ତାଙ୍କୁ ଦିନ ରାତି କଷ୍ଟ ଦେବାକୁ ଲାଗିଲା । ବହୁତ କଷ୍ଟରେ ଚେଷ୍ଟାକରି ସେ ନିଜକୁ ସାନ୍ତ୍ୱନା ଦେଲେ ଗୋଟିଏ ମାଘମାସର ଦ୍ୱାଦଶୀ ତିଥିରେ ସେ ତାଙ୍କର ମୃତ ପୁତ୍ର ଭଲ ପାଉଥିବା ଫଳ, ପରିବା ପତ୍ର ଏବଂ ଶସ୍ୟ ସବୁ ସଂଗ୍ରହ କଲେ ଓ ନିଜେ ତାକୁ ସବୁ ରାନ୍ଧିଲେ, ସାତଜଣ ପବିତ୍ର ବ୍ରାହ୍ମଣଙ୍କୁ ନିମନ୍ତ୍ରଣ କରି ସେହି ଖାଦ୍ୟ ସାମଗ୍ରୀ ଖାଇବାକୁ ଦେଲେ ଏବଂ ଖାଇବାକୁ ଦେଲାବେଳେ ସେ ନିଜର ପୁତ୍ରର ନାମ, ଗୋତ୍ର ଓ କୁଳ ସ୍ମରଣ କରିବାକୁ ଲାଗିଲେ ।

ସେହି ସମୟରେ 'ନାରଦ' ମୁନି ଆସି ପହଞ୍ଚିଲେ । 'ନିମି' ତାଙ୍କୁ ଦେଖି ସଙ୍କୁଚିତ ହୋଇପଡ଼ିଲେ । କାରଣ ସେ ଭାବିଲେ ବୋଧହୁଏ କିଛି ବୋକାମିର କାର୍ଯ୍ୟ କରିଛନ୍ତି । ଯାହାହେଉ ସେ ନାରଦଙ୍କୁ ଯଥାବିଧି ପୂଜାକଲେ ଏବଂ କାନ୍ଦିବାକୁ ଲାଗିଲେ । ଋଷି ନାରଦଙ୍କୁ ତାଙ୍କର ମୃତ ପୁତ୍ର ପାଇଁ ସେ ବ୍ରାହ୍ମଣମାନଙ୍କୁ ଖାଇବାକୁ ଦେଉଛନ୍ତି ବୋଲି କହିଲେ । ସେ ପୁଣି ପଚାରିଲେ, "ମହାଶୟ, ମୁଁ ଜାଣେନା ମୁଁ ଠିକ୍ କରୁଛି କି ଭୁଲ କରୁଛି । କାରଣ, ପୂର୍ବରୁ ଏପରି କେହି କରିଥିବାର ମୁଁ ଶୁଣିନାହିଁ ।" ତାଙ୍କର ଦୁଃଖର ଅବସ୍ଥା ବୁଝିପାରି ନାରଦ କହିଲେ, "ନିମି, ଭୟ କରନାହିଁ । ମୁଁ ବ୍ୟକ୍ତିଗତ ଭାବରେ ଏହି କାର୍ଯ୍ୟରେ କୌଣସି ଭୁଲଥିବାର ଜାଣି ପାରୁନାହିଁ । ଯାହାହେଉ ତୁମେ ଯଦି ତୁମର ପିତୃପୁରୁଷଙ୍କଠାରେ ଆଶ୍ରୟ ନିଅ, ସେମାନେ ତୁମକୁ ରକ୍ଷା କରିବେ ।"

ଏହିପରି ଆଶ୍ୱାସନା ପାଇ ନିମି ପିତୃପୁରୁଷଙ୍କୁ ଧ୍ୟାନ କରିବାରେ ଲାଗିପଡ଼ିଲେ । ଖୁବ୍ ଶୀଘ୍ର ସେମାନେ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ, "ବତ୍ସ, ତୁମର ପୁତ୍ର ଆମ ସହିତ ପିତୃ-ଦେବତା ଭାବରେ ମିଶିଯାଇଛି । ତୁମେ ଯେଉଁ ଭୋଜନ ଏବଂ ପୂଜା

ଦେଲ, ତାହା ଫଳରେ ତୁମର ଗତ ପୂରୁଷମାନେ ଶାନ୍ତି ପାଇଛନ୍ତି । ପ୍ରକୃତରେ ଏହା ଏକ ପିତୃଯଜ୍ଞ ଅଟେ । ବହୁ ପୂର୍ବରେ ଥରେ ବ୍ରହ୍ମା ନିଜେ ଏହା ପାଳନ କରିଥିଲେ ଏବଂ ଏହାକୁ ସେ ତ୍ୟାଗ ବ୍ରା ଋତୁ ସହ ତୁଳନା କରି ଯାଇଛନ୍ତି ।

ସେହି ଦିନଠାରୁ ଶ୍ରାଦ୍ଧ ହିନ୍ଦୁ ଧର୍ମର ଜୀବନର ଏକ ମୁଖ୍ୟ ଅଂଶ ହୋଇ ରହିଛି ।

ବିଷ୍ଣୁ ଧର୍ମୋତ୍ତର କହେ ଯେ ଶ୍ରାଦ୍ଧ ଅନୁଷ୍ଠାନ ବରାହ ଅବତାରରେ ବିଷ୍ଣୁଙ୍କ ଦ୍ୱାରା ଅଧିଷ୍ଠିତ ହୋଇଥିଲା ଏବଂ ବିଷ୍ଣୁ, ପିତୃ-ମାନଙ୍କୁ ଅର୍ପଣ କରାଯାଉଥିବା ପିଣ୍ଡ ବା ଗୁଳ୍ଜଳ କଣିକାରେ ଅବସ୍ଥାନ କରନ୍ତି । ଏଥିରୁ ଏବଂ ଅପସ୍ତମ୍ବ ଓ ଗୃହ୍ୟସୂତ୍ରରୁ ଜଣାପଡ଼େ ଯେ ଶ୍ରାଦ୍ଧ ପ୍ରଦାନର ବିଧି ବହୁ ପୁରୁଣା ଏବଂ ଏହା ଖ୍ରୀଷ୍ଟଜନ୍ମର ବହୁ ଶତାବ୍ଦୀ ପୂର୍ବରୁ ପ୍ରଚଳିତ ହୋଇ ଆସୁଛି ।

ଆମର ଏବେ ଯେପରି ଶ୍ରାଦ୍ଧ ହେଉଛି ସେ ବିଷୟରେ ପ୍ରଶ୍ନ ଉଠିପାରେ । କେମିତି ଜଣେ ବ୍ରାହ୍ମଣ ଭୋଜନ ଦେଇ ବହୁଦିନରୁ ମୃତ୍ୟୁ ଲଭିଥିବା ନିଜର ପୂର୍ବପୁରୁଷମାନଙ୍କୁ ଶାନ୍ତି ଦେଇ ପାରିବ ? କର୍ମସୂତ୍ର ଅନୁସାରେ ଯେଉଁ ପୂର୍ବପୁରୁଷମାନେ ଭିନ୍ନ ପ୍ରକାରର ହୋଇ ରହିଥାନ୍ତି, ତାଙ୍କ ପକ୍ଷେ ଏହା କିଣ ସମ୍ଭବ ?

ଏହି ପ୍ରଶ୍ନର ଉତ୍ତର ମତ୍ସ୍ୟ ପୁରାଣରେ ଦିଆଯାଇଛି । ଶ୍ରାଦ୍ଧରେ ଆମେ ପିତୃପୁରୁଷଙ୍କ ଆତ୍ମାକୁ ନିମନ୍ତ୍ରିତ ପବିତ୍ର ବ୍ରାହ୍ମଣଙ୍କ ମାଧ୍ୟମରେ ଉଜ୍ଜୀବିତ କରୁ । ପ୍ରକୃତ କ୍ଷେତ୍ରରେ ପିତୃପୁରୁଷଙ୍କ ଆତ୍ମା ବସୁ, ରୁଦ୍ର, ଆଦିତ୍ୟ ପ୍ରଭୃତି ଶ୍ରାଦ୍ଧ ଦେବତାଙ୍କ ସହିତ ସମାନ କରାଯାଇ ପୂଜା କରାଯାଏ ଏବଂ ବ୍ରାହ୍ମଣମାନେ ଯେଉଁ ଖାଦ୍ୟ ଖାନ୍ତି, ମୃତ ବ୍ୟକ୍ତି-ମାନଙ୍କ ନାମ ଓ ଗୋତ୍ର ଉଚ୍ଚାରଣ କରି ଅଗ୍ନିକୁ ଯାହା ଅର୍ପଣ କରାଯାଏ, ତାହା ସ୍ୱର୍ଗୀୟ ଦୂତମାନଙ୍କ ଦ୍ୱାରା ସେହି ନିର୍ଦ୍ଦିଷ୍ଟ ଶକ୍ତି ବା ଆତ୍ମାମାନଙ୍କ ପାଖକୁ ବହନ କରି ନିଆଯାଏ । ଅଗ୍ନି ଯେକି ନିଆଁର ଦେବତା 'ବସୁ' ଏବଂ 'ରୁଦ୍ର' ଯେକି ସବୁଠାରେ ଅଛନ୍ତି ପିତୃପୁରୁଷଙ୍କୁ ଶାନ୍ତି ପ୍ରଦାନ କରନ୍ତି, ଯଦି ସେହି ପିତୃପୁରୁଷ ଜଣେ ପଶୁ ଭାବରେ ଜନ୍ମ ହୋଇଥାନ୍ତି,

ସେହି ପିତୃ ଶ୍ରାଦ୍ଧ ତାଙ୍କ ପାଖକୁ ଅମୃତ ଭାବରେ ଯାଇଥାଏ । ସେ ଯଦି ଗାଈ ହୋଇ ଜନ୍ମ ହୋଇଥାନ୍ତି, ତେବେ ତାହା ଘାସ ରୂପରେ ତାଙ୍କ ପାଖକୁ ଯାଏ । ଯଦି ମଣିଷ ରୂପରେ ଜନ୍ମ ହୋଇଥାନ୍ତି, ତେବେ ଏହା ତାଙ୍କ ପାଖକୁ ଖାଦ୍ୟଶସ୍ୟ ଭାବରେ ଯାଇଥାଏ ।

ଠିକ୍ ଯେପରି ବାଛୁରୀ ଚରିଲା ବେଳେ ବହୁତ ଗାଈ ଭିତରେ ତାର ମା'କୁ ଠିକ୍ ଭାବରେ ଚିହ୍ନି ନିଏ, ସେହିପରି ସେହି ମନ୍ତ୍ରପାଠ କରାଯାଇ ଯେଉଁ ଖାଦ୍ୟ ଅର୍ପଣ କରାଯାଏ, ତାହା ଠିକ୍ ପିତୃମାନଙ୍କ ପାଖକୁ ଚାଲିଯାଏ ।

ପିତୃ ଦେବତାମାନେ ଶ୍ରାଦ୍ଧପ୍ରଦାନ ସମ୍ପୂର୍ଣ୍ଣ ହେଲାପରେ ଏବଂ ପୂଜାଦ୍ୱାରା ସନ୍ତୁଷ୍ଟ ହେଲାପରେ ପୂଜକଙ୍କ; ସ୍ୱାସ୍ଥ୍ୟ, ଧନ ଏବଂ ସନ୍ତାନର ଆଶୀର୍ବାଦ କରି ନିଜ ସ୍ଥାନକୁ ବାହୁଡ଼ି ଯାନ୍ତି ।

ଯଦି ଆମେ ଏକ ସାଧାରଣ ଡାକଘରେ, ବ୍ୟାଙ୍କରେ ନିଜର ବିଦେଶରେ ଥିବା ପୁଅ ପାଖକୁ ଟଙ୍କା ପଠାଉ, ତେବେ ସେହି ଟଙ୍କା ରୁବଲ, ପାଉଣ୍ଡ, ଷ୍ଟର୍ଲିଂ ଆକାରରେ ସେହି ଦେଶରେ ଥିବା ସେହି ପୁଅ ପାଖରେ ପହଞ୍ଚେ । ଯଦି ମଣିଷମାନେ ଏହା କରି ପାରୁଛନ୍ତି, ତେବେ ପର ଲୋକ ବା ସ୍ୱର୍ଗୀୟ ଲୋକମାନେ ଏହା କରି ନ ପାରିବେ କାହିଁକି ? ଶ୍ରୀରାମ ମଣିଷ ଅବତାରରେ ଏହି ଶ୍ରାଦ୍ଧ ପ୍ରଦାନ କରିଥିଲେ ।

ଶ୍ରାଦ୍ଧ ଦ୍ୱାରା କୌଣସି ଧର୍ମ ହେଉ ବା ନ ହେଉ ଶ୍ରାଦ୍ଧ ପ୍ରଦାନ ଦ୍ୱାରା ଆମେ ଆମର ପିତୃପୁରୁଷମାନଙ୍କୁ ସ୍ମରଣ କରୁ ଏବଂ ତାହା ଏକ ଆନନ୍ଦଦାୟକ ଅନୁଭୂତି ।

ଦ୍ୱିତୀୟତଃ ବିଶ୍ୱାସ ଦ୍ୱାରା ବହୁତ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ କରାଯାଇପାରେ । ସାଧାରଣ ବିଶ୍ୱାସ ଦ୍ୱାରା ଯଦି ଏହା ସମ୍ଭବ, ତେବେ ବୈଦିକ ସମୟରୁ ପ୍ରଚଳିତ ଏହି ଶ୍ରାଦ୍ଧ ବିଶ୍ୱାସ ଦ୍ୱାରା କିଣ ଅସମ୍ଭବ ହେବ !

**ଶ୍ରାଦ୍ଧର ପ୍ରକାର ଭେଦ:**—ଭବିଷ୍ୟ ପୁରାଣ ଅନୁସାରେ ଶ୍ରାଦ୍ଧ ୧୨ ପ୍ରକାରର । ସେମାନେ ହେଲେ (୧) ନିତ୍ୟ (୨) ନୈମିତ୍ତିକ

(୩) କାମ୍ୟ (୫) ବୃଦ୍ଧି (୬) ପାର୍ବଣ (୭) ଗୋଷ୍ଠୀ (୮) ଶୁଦ୍ଧି (୯) କର୍ମାଙ୍ଗ (୧୦) ଦୈବିକ (୧୧) ଯାତ୍ରା (୧୨) ପୁଷ୍ଟି ।

ବର୍ତ୍ତମାନ ଆମେ ମହାଳୟା ଶ୍ରାଦ୍ଧ ବିଷୟରେ ଆଲୋଚନା କରିବା ।

**ମହାଳୟା** :—ସାଧାରଣତଃ ସେପ୍‌ଟେମ୍ବର—ଅକ୍ଟୋବର ମାସରେ ପଡ଼ୁଥିବା ଆଶ୍ୱିନ କୃଷ୍ଣ ପକ୍ଷକୁ ମହାଳୟା କୁହାଯାଏ । ଦକ୍ଷିଣାୟନ ହୋଇଥିବା ଏହି ମାସର କୃଷ୍ଣପକ୍ଷ ପିତୃକର୍ମ କରିବାର ପ୍ରକୃଷ୍ଟ ସମୟ ଅଟେ । ସନ୍ଧି ବିଚ୍ଛେଦ କଲେ ମହାଳୟା ଶବ୍ଦ ମହା+ଆଳୟାରୁ ଆସିଛି । ଏହାର ଅର୍ଥ ହେଲା—"ମୃତ ବୃହତ ଶକ୍ତିମାନଙ୍କର ସମାବେଶ" । ଏହି ସମୟର ପ୍ରତ୍ୟେକ ଦିନ ଏହି ମହାଳୟା ଶ୍ରାଦ୍ଧ ଦିଆ ଯାଇପାରେ ବୋଲି ଋଷିମାନେ କହିଯାଇଛନ୍ତି । ଏହି ସମୟର ଯେ କୌଣସି ଦିନ ଶ୍ରାଦ୍ଧ ଦେଲେ ଏହା ଯାଗ କରିବା ସହିତ ସମାନ ଏବଂ ଏହା ଫଳରେ ପିତୃମାନେ ବର୍ଷକ ପାଇଁ ଶାନ୍ତି ପ ଇଥାନ୍ତି । ବାସ୍ତବିକ୍ ଏହି ପିତୃପୁରୁଷମାନେ ଏହି ଶ୍ରାଦ୍ଧ ପାଇବା ପାଇଁ ମନୁଷ୍ୟମାନଙ୍କର ଦ୍ୱାରଦେଶରେ ଆଗ୍ରହରେ ଅପେକ୍ଷା କରିଥାନ୍ତି । ଯଦି ସେମାନେ ସେମାନଙ୍କର ପ୍ରାପ୍ୟ ନ ପାଇ ଫେରିଯାନ୍ତି, ତେବେ ସେମାନେ ଭୟଙ୍କର ଅଭିଶାପ ଦେଇଥାନ୍ତି ।

ମହାଳୟା ଶ୍ରାଦ୍ଧ ଦେବା ପାଇଁ କେତେକ ତିଥି ନକ୍ଷତ୍ର ଦିନ ବାରର ଦରକାର ଥାଏ । ସେଗୁଡ଼ିକ ହେଲା 'ନନ୍ଦା' ତିଥି ଅର୍ଥ ପ୍ରଥମ ଷଷ୍ଠ ଏବଂ ଏକାଦଶ, ଶୁକ୍ରବାର ଓ ଶ୍ରାଦ୍ଧକାରୀଙ୍କ ଜନ୍ମ ନକ୍ଷତ୍ରର ପ୍ରଥମ ଦଶମ ଓ ଊନବିଂଶ ନକ୍ଷତ୍ର ଗୁଡ଼ିକ । ଏହି ବିଧିର ବିପରୀତ ଅମାବାସ୍ୟା ବା ପୂର୍ଣ୍ଣିମା ଦିନ ବାରୁଣୀ ନକ୍ଷତ୍ର ଦିନ ଏବଂ ଦ୍ୱାଦଶୀ ବା ଶୁକ୍ଳପକ୍ଷର ଦ୍ୱାଦଶୀ ଦିନ ମହାଳୟା ଶ୍ରାଦ୍ଧ ପ୍ରଦାନର ପ୍ରକୃଷ୍ଟ ଦିବସ । ତେଣୁ ପୂର୍ବରୁ ପ୍ରଚଳିତ ନିୟମ ସବୁ ମୂଲ୍ୟହୀନ ହୋଇ ଯାଇଛି ।

ଯଦି ଶ୍ରାଦ୍ଧ ପ୍ରଦାନ କରାଯାଉଥିବା ମୃତ ପିତୃ ପୁରୁଷ ସନ୍ନ୍ୟାସ ଅବଲମ୍ବନ କରିଥାନ୍ତି, ତେବେ ଶ୍ରାଦ୍ଧ ଦ୍ୱାଦଶୀ ବା ଶୁକ୍ଳ ପକ୍ଷର ଦ୍ୱାଦଶୀ ଦିନ ପ୍ରଦତ୍ତ ହେବା ଉଚିତ । କାରଣ ସେହି ଦିନଟି ବିଷ୍ଣୁଙ୍କ ପାଇଁ ଉଦ୍ଦିଷ୍ଟ ।

ବସୁଦେବମାନେ ଯେଉଁ ଏବଂ ଉଦ୍ଦିଷ୍ଟ ପିତୃପୁରୁଷମାନଙ୍କୁ ଶ୍ରାଦ୍ଧ ଗ୍ରହଣ ପାଇଁ ଖୋଜିଥାନ୍ତି, ସେମାନେ ହେଲେ "ଧୂରି" ଏବଂ "ଲୋଚନ"

ଆଉ ଏକ ବଡ଼ କଥା ହେଲା ଏବଂ ଶ୍ରାଦ୍ଧ ପ୍ରଦାନ ଦ୍ୱାରା କେବଳ ପରଲୋକଗତ ପିତାମାତା, ପିତାମହ, ପ୍ରପିତାମହ ଶାନ୍ତି ପାଆନ୍ତି ତାହା ନୁହେଁ ଏହା ଫଳରେ ସାବତ ମା, ମୃତଭାଇ, ମୃତ ପିଲାପିଲି ଏବଂ ଭଗବାନ ବିଷ୍ଣୁ ମଧ୍ୟ ଏବଂ ଶ୍ରାଦ୍ଧ ଦ୍ୱାରା ଶାନ୍ତି ପାଆନ୍ତି । ମହାଳୟା ଶ୍ରାଦ୍ଧରେ ବିଭିନ୍ନ ବିଧି ନିୟମ ପାଳନ ତଥା ବ୍ରାହ୍ମଣ ଭୋଜନ ପ୍ରଶଂସନୀୟ ଅଟେ ।

ବାରୁଣୀ ନକ୍ଷତ୍ରରେ ଅନୁଷ୍ଠିତ ହେଉଥିବା ଶ୍ରାଦ୍ଧର ମାହାତ୍ମ୍ୟ ଗୟାରେ ପ୍ରଦାନ କରାଯାଇଥିବା ଶ୍ରାଦ୍ଧ ସହ ସମାନ ।

ବିଷ୍ଣୁପୁରାଣ କହେ ଯେ ଯେତେବେଳେ ଜଣେ ଶ୍ରାଦ୍ଧ ଦିଏ, ସେ କେବଳ ତାର ପିତୃ ପୁରୁଷଙ୍କୁ ଶାନ୍ତି ଦିଏ ନାହିଁ, ସେ ତାହା ଦ୍ୱାରା ମୁନି, ଋଷି, ଦେବତା, ମନୁଷ୍ୟ, ପଶୁପକ୍ଷୀ ଏବଂ କୀଟ ପତଙ୍ଗ ମାନଙ୍କୁ ମଧ୍ୟ ଶାନ୍ତି ଦିଏ ।

ଏଥିରୁ ଜଣାଯାଏ ଯେ ଆମର ସଂସ୍କୃତି ମହାଳୟା ଶ୍ରାଦ୍ଧ ମାଧ୍ୟମରେ ଆମ ପାଇଁ ବହୁ ମୂଲ୍ୟବାନ୍ ତଥ୍ୟ ଗଚ୍ଛିତ କରି ରଖିଛି । ଏଣୁ ଏହାକୁ ଆମେ ସବୁଦିନ ପାଇଁ ପାଳନ କରିବା ଦରକାର ।

# ନବରାତ୍ରି

ଶାରଦୀୟ ଶୁଭ୍ର ମାଳମା ଆଜ ବଣ, ଗିରି, କାନ୍ତାର ସର୍ବତ୍ର ସୁଷମାର ଅଞ୍ଜନ ମାଖି ଦେଇଛି । ଶାରଦ କ୍ଷୀଣ ତଟିନୀର ଉଭୟ ପାର୍ଶ୍ୱରେ ଅଗଣନ କାଶଫୁଲ ମୁଣ୍ଡ ହଲାଉଛନ୍ତି । ହରିହଜା ଆକାଶ ତଳେ ବିହଙ୍ଗମାନଙ୍କର ମଧୁସ୍ରାବୀ କଳକାକଳୀ ମନ ପ୍ରାଣରେ ଶିହରଣ ଆଣୁଛି । ପୁଷ୍ପୋଦ୍ୟାନର ରଙ୍ଗିନ ତରୁଣ ପକ୍ଷ ପ୍ରଜାପତି ଆଜ ମତୁଆଲା । ଚତୁର୍ଦ୍ଦିଗରେ ଶୁକ୍ଳିମାର ନବ ଅଭିସାର । ଏହିପରି ଏକ ମଧୁର ଶରତ ଲଗନରେ ଧରଣୀର ହିଁଆରୁ ବସନ୍ତ ଋତୁରେ ଜଗଜ୍ଜନନୀ ମା'ଙ୍କର ଶୁଭାଗମନକୁ ପ୍ରକୃତିରାଣୀ ନବ ଧାନ-ଶସ୍ୟ ଉପଢୌକନରେ ପ୍ରତୀକ୍ଷା କରିଛି । 'ନବରାତ୍ରି' ଆସୁଛି; ଏହାପରେ ଆସିବ 'ବିଜୟାଦଶମୀ' ।

'ନବରାତ୍ରି'ର ଆରମ୍ଭ ଆଶ୍ୱିନ ଶୁକ୍ଳ ପ୍ରତିପଦ୍ ଓ ଚୈତ୍ର ଶୁକ୍ଳ ପ୍ରତିପଦ୍ ଏବଂ ବ୍ୟାପ୍ତି ନବମୀ ପର୍ଯ୍ୟନ୍ତ । ଯେଉଁ ଶକ୍ତି ସର୍ବବ୍ୟାପିନୀ ଓ ସର୍ବଭୂତେଷୁ ସଂସ୍ଥିତା' ଏବଂ ଯାହାଙ୍କ ଭୟରେ ବାୟୁ ଚଳମାନ, ସୂର୍ଯ୍ୟ ତାପ ଦେଉଛନ୍ତି, ଇନ୍ଦ୍ର ବର୍ଷା କରୁଛନ୍ତି, ତାରାଗଣ ଆଲୋକଦାୟୀ, ବନସ୍ପତି ଲତା ଓ ବୃକ୍ଷଗୁଡ଼ିକ ସମୟାନୁସାରେ ପୁଷ୍ପଫଳ ଧାରଣ କରୁଛନ୍ତି, ନଦୀ ବହମାନା, ସମୁଦ୍ର କୂଳ ଲଙ୍ଘନ କରୁନାହିଁ, ଅଗ୍ନି ଜଳୁଅଛି, ପୃଥିବୀ ଓ ପର୍ବତ ଅଚଳ ଓ ଅଭିମାନୀ ଦେବତା ବ୍ରହ୍ମା, ବିଷ୍ଣୁ ଓ ମହେଶ ଯାହାଙ୍କ ନିର୍ଦ୍ଦେଶରେ ଚାଳିତ, ସ୍ଥାବର ଜଙ୍ଗମ ସମସ୍ତେ ଯାହାର କରାୟତ୍ତ ସେହି 'ଶକ୍ତିକାଳ' ଆସୁଛି ।

'ଭାରତୀୟ ବ୍ରତୋତ୍ସବ' ଲେଖକଙ୍କ ମତରେ ପ୍ରକୃତି ତ୍ରିଗୁଣାତ୍ମିକା ସତ୍ତ୍ୱ, ରଜ ଓ ତମ । ତିନଗୁଣ ମଧ୍ୟରୁ ଯଦି କେଉଁ ଗୁଣର ଆଧିକ୍ୟ ବା ନ୍ୟୂନତା ଦେଖାଯାଏ ତେବେ ହୁଏ ସୃଷ୍ଟି । ଏଣୁ ସତ୍ତ୍ୱ ଗୁଣ ଦିନ ଭାଗର, ତମୋଗୁଣ ରାତ୍ରିର ଅନ୍ଧକାର ଏବଂ ମଧ୍ୟଭାଗ ରଜୋ ରୂପ ସନ୍ଧ୍ୟା । ଏହି ଗୁଣତ୍ରୟର ସାମ୍ୟାବସ୍ଥାରେ ( ଅର୍ଥାତ୍ ଲଘୁ ଓ ଶ୍ରେଷ୍ଠ ନ ହୋଇ ଯଥାର୍ଥ ସ୍ଥିତିରେ ରହିଲେ ) ଥିବା ବେଳେ ଏହି ସମୟ ପ୍ରକୃତିର ପ୍ରକୃତ ଆରାଧନା ସମୟ ହୁଏ । କାରଣ ପ୍ରକୃତି ଅଭିବ୍ୟକ୍ତିରେ ତ୍ରିଗୁଣ

ମିଶ୍ରିତା, ଏଣୁ ତ୍ରିଗୁଣର ପରସ୍ପର ମିଶ୍ରଣ ଅର୍ଥାତ୍ ସତ୍ତ୍ୱପ୍ରଧାନ ସତ୍ତ୍ୱ, ସତ୍ତ୍ୱପ୍ରଧାନ ରଜ, ସତ୍ତ୍ୱପ୍ରଧାନ ତମ ଏବଂ ଏହିପରି ରଜପ୍ରଧାନ ସତ୍ତ୍ୱ, ରଜପ୍ରଧାନ ରଜ, ରଜପ୍ରଧାନ ତମ ଓ ତମପ୍ରଧାନ ସତ୍ତ୍ୱ, ତମପ୍ରଧାନ ରଜ ଓ ତମପ୍ରଧାନ ତମ ଫଳରେ ୯ଟି ରୂପ ପ୍ରକାଶ ପାଏ । ଏଣୁ ମହାମାୟା (ପ୍ରକୃତି) ଙ୍କର ଉପାସନା 'ନବରାତ୍ରି' ରଖା ଯାଇଛି ।

ସମ୍ବତ୍ସର ମଧ୍ୟରେ ୪୦ଟି ନବରାତ୍ରି ମଧ୍ୟରୁ ୨ଟି ପ୍ରଧାନ । ପ୍ରଥମଟି ବର୍ଷାରମ୍ଭ ଚୈତ୍ର ଶୁକ୍ଳ ପ୍ରତିପଦ୍‌ଠାରୁ ଓ ଦ୍ୱିତୀୟଟି ବର୍ଷର ମଧ୍ୟ ଭାଗ ଆଶ୍ୱିନ ଶୁକ୍ଳ ପକ୍ଷାରମ୍ଭରୁ । ପ୍ରଶ୍ନ ଉଠିପାରେ ଏହି ନବରାତ୍ରି ଚୈତ୍ର ଓ ଆଶ୍ୱିନରେ କାହିଁକି ? ତାହାର ଉତ୍ତରରେ ଏତିକି ମାତ୍ର କୁହାଯାଇ ପାରେ ଯେ ଜୀବନର ମୂଳ ହେଲେ ଅଗ୍ନି ଓ ସୋମ । ଏହାଙ୍କର ଧର୍ମ ହେଉଛି ଉଷ୍ଣତା ଓ ଶୀତ; ଏଣୁ ନବରାତ୍ରିର ଆରମ୍ଭରେ ଏମାନେ ପ୍ରଚ୍ଛନ୍ନ ଭାବେ ଥାଆନ୍ତି ।

ଦ୍ୱିତୀୟତଃ ଭାରତ କୃଷିପ୍ରଧାନ ଦେଶ ହୋଇଥିବାରୁ ଏହି ଦୁଇ ସମୟରେ ଶସ୍ୟ ଅମଳ କରାଯାଇ ଥାଏ । ଦୁଇ ପ୍ରକାର ଧାନ୍ୟ ଅମଳ କରି କୃଷକ ମନ ଆନନ୍ଦରେ ପ୍ରକୃତିର ପୂଜାର୍ଚ୍ଚନା କରେ ।

ତୃତୀୟତଃ ବ୍ରତୋତ୍ସବ ଲେଖକଙ୍କ ମତାନୁଯାୟୀ ଭାରତରେ ଚୈତ୍ର ଓ ଆଶ୍ୱିନ ଦୁଇଟି ନିର୍ମଳ, ସୁନ୍ଦର ଓ ସୁଖଦ ମାସ । ଏହି ଦୁଇ ମାସକୁ କେନ୍ଦ୍ର କରି ବହୁ କବିତା ରଚିତ ( ମଧୁମାସ ଚୈତ୍ର ପ୍ରବନ୍ଧ ଦ୍ରଷ୍ଟବ୍ୟ ) ଏ ଦୁଇ ମାସର ବୈଶିଷ୍ଟ୍ୟ ଅନ୍ୟତ୍ର ଦୁର୍ଲ୍ଲଭ । ଏଣୁ ପ୍ରକୃତି ଦେବୀଙ୍କର ଉପାସନା ଓ ପୂଜାର୍ଚ୍ଚନା ନିମନ୍ତେ ଏହା ପ୍ରଶସ୍ତ ସମୟ ।

ଶକ୍ତିପୂଜା ଭାରତୀୟ ସଂସ୍କୃତିରେ ଅତି ପ୍ରାଚୀନ । ସତ୍ୟଯୁଗରେ 'ସୁରଥ', ତ୍ରେତାଯୁଗରେ ରଘୁକୁଳ ତିଳକ ରାମଚନ୍ଦ୍ର ଏହି ଆଦ୍ୟାଶକ୍ତିଙ୍କୁ ପୂଜା କରିଥିଲେ । ସେ ନିତ୍ୟା, ଚିରନ୍ତନୀ ଓ ସକଳ ଶକ୍ତିର ଆଧାର-ଭୂତା । ସେ ନିଜ ଇଚ୍ଛାରେ ସାରା ବିଶ୍ୱ ପାଳନ ଓ ସଂହାର କରନ୍ତି । ସେ ଏକାଧାରରେ ଜନୟିତ୍ରୀ, ପାଳୟିତ୍ରୀ ଓ ସଂହାରକର୍ତ୍ତ୍ରୀ । ଜଣେ ଲେଖକଙ୍କ ମତରେ—

As Sakti or Primordial energy she represents cosmic dynomics and animates all things. In

this aspect even Shiba otherwise conceived as her husband is Shava ( Corpse ) to her" । ତେଣୁ ଦେବୀ ଭାଗବତରେ ଯଥାର୍ଥରେ କୁହାଯାଇଛି 'ଶିବୋଽପି ଶବତାଂଯାତି ଭୁଣ୍ଟା ଶକ୍ତ୍ୟା ବିବର୍ଜ୍ଜିତା' ଶିବ ମଧ୍ୟ ଶକ୍ତି ବିହୁନେ ଶବତୁଲ୍ୟ । ଏହି ଶକ୍ତି ଜାଗତିକ କ୍ଷେତ୍ରରେ ମଧ୍ୟ ପ୍ରାଧାନ୍ୟ ବିସ୍ତାର କରିଛନ୍ତି । ଏହି ଶକ୍ତି ଯାହା ପାଖରେ ନାହିଁ ସେ ହୀନବୀର୍ଯ୍ୟ, କାପୁରୁଷ, ନରାଧମ ଓ ଶବପରି ମୃତ । 'ଦେବୀ ଭାଗବତ'ର ଉକ୍ତି ବାସ୍ତବିକ୍ ମନନଯୋଗ୍ୟ—

'ରୁଦ୍ରହୀନଂ ବିଷ୍ଣୁହୀନଂ ନ ବଦନ୍ତି ଜନାସ୍ତଥା
ଶକ୍ତିହୀନଂ ଯଥା ସର୍ବେ ପ୍ରବଦନ୍ତି ନରାଧମାଃ'

ହାର୍ବଟ ସ୍ପେନସର କହିଛନ୍ତି—"There is an Infinite and eternal energy from which every thing proceeds"

ଦୁର୍ଗା ଏହି ନବରାତ୍ରି ପୂଜାର ମୂଳ କର୍ତ୍ତ୍ରୀ ହୋଇଥିବାରୁ ଶାକ୍ତମାନେ ନଅ ଦିନ ପର୍ଯ୍ୟନ୍ତ ପ୍ରତ୍ୟେକ ରାତ୍ରିରେ ଦୁର୍ଗାଙ୍କ ଭିନ୍ନ ଭିନ୍ନ ରୂପକୁ ପୂଜା କରନ୍ତି । ଯେଉଁ ମଧୁକୈଟଭଙ୍କ ସହିତ ବିଷ୍ଣୁ ପାଞ୍ଚ ହଜାର ବର୍ଷ ଯୁଦ୍ଧ କରି ପ୍ରଥମେ ଅକୃତକାର୍ଯ୍ୟ ହୋଇ ଶେଷରେ ତାଙ୍କ ଦୟାରୁ ସେମାନଙ୍କୁ ହତ୍ୟା କରିଥିଲେ ସେ ମହାକାଳୀ, ଅସୁର ମହିଷା ମାରିଣୀ, ସେ 'ମହିଷ ମର୍ଦ୍ଦିନୀ', ଚଣ୍ଡ ମୁଣ୍ଡର ଘାତକାରିଣୀ, ସେ 'ଚାମୁଣ୍ଡା' ରକ୍ତବୀର୍ଯ୍ୟ ବିନାଶିନୀ ସେ 'କାଳୀ' କୃଷ୍ଣଙ୍କ ପାର୍ଥିବ ଶତ୍ରୁ କଂସର ଭାବୀ ସଂହାର ଜନିତ ଭବିଷ୍ୟବାଣୀ କାରିଣୀ ସେ 'ନନ୍ଦା' ମୃତ୍ୟୁରହିତ ବର ମାଗିଥିବା ଗୋଟିଏ ଅସୁରର ହତ୍ୟା କାରିଣୀ ସେ, 'ରକ୍ତଦନ୍ତୀ' ଶହେ ବର୍ଷ ଧରି ଦୁର୍ଭିକ୍ଷ ପୀଡ଼ିତା ପୃଥିବୀ ରକ୍ଷାକାରିଣୀ ସେ, 'ଶାକମ୍ଭରୀ' ଦୁର୍ଗ ନାମକ ଅସୁରର ବଧ କାରିଣୀ ସେ 'ଦୁର୍ଗା', ଓ ଅରୁଣାସୁର ବିନାଶିନୀ ସେ 'ଭ୍ରାମରୀ' ।

ଦୁର୍ଗାପୂଜା କେବଳ ଶାକ୍ତମାନଙ୍କ ପାଶରେ ଆବଦ୍ଧ ନୁହେଁ, ରକ୍ଷଣଶୀଳ ହିନ୍ଦୁଠାରୁ ଭାରତର ପାଶ୍ଚାତ୍ୟାଧିବାସୀ ପର୍ଯ୍ୟନ୍ତ ସମସ୍ତେ ଏ ଦେବୀଙ୍କ ଆରାଧନା କରି ଆସୁଛନ୍ତି । ଭାରତର କେତେକ ସ୍ଥାନରେ ହିନ୍ଦୁ ଜଗତର ଶ୍ରେଷ୍ଠ ଆରାଧ୍ୟା ଠାକୁରାଣୀ ହିସ୍ତୀ ଏହି ନବରାତ୍ରି ଉତ୍ସବ

ସମୟରେ ଯଥାଶକ୍ତି ପୂଜିତା ହୁଅନ୍ତି । ପ୍ରଥମ ତିନ ରାତି ପର୍ଯ୍ୟନ୍ତ 'ଦୁର୍ଗା', ଦ୍ୱିତୀୟ ତିନ ରାତିରେ 'ଲକ୍ଷ୍ମୀ' ଓ ଶେଷ ତିନ ରାତିରେ ସରସ୍ୱତୀ । ସରସ୍ୱତୀ ସଙ୍ଗୀତ ଓ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ହୋଇଥିବାରୁ ଶେଷ ତିନ ଦିନ ଦୁର୍ଗାଙ୍କ ସହ ଏକତ୍ର ପୂଜିତା ହୁଅନ୍ତି । ସାହିତ୍ୟ ସଙ୍ଗୀତ ପ୍ରିୟ କଳାକାର ଗଣ ସେମାନଙ୍କର ଲେଖନୀ, ବାଦ୍ୟଯନ୍ତ୍ର ଇତ୍ୟାଦି ତାଙ୍କ ପଦତଳେ ରଖି ପୂଜା କରନ୍ତି । ପଞ୍ଜାବରେ 'ନବରାତି'ର ପ୍ରଥମ ସାତଦିନ 'ଉପବାସ ଦିବସ' ରୂପେ ପରିଚିତ । କିମ୍ବଦନ୍ତୀରୁ ଜଣାଯାଏ ଯେ ପୂର୍ବେ ପଞ୍ଜାବରେ ଭୟଙ୍କର ଅସୁରମାନେ ବାସ କରୁଥିଲେ ଓ ସେମାନେ ଲୋକମାନଙ୍କୁ ମିଳୁଥିବା ଖାଦ୍ୟ ନ ଖାଇବାକୁ ଡରାଇ ନିଜେ ଖାଇ ଦେଉଥିଲେ । ଫଳରେ ଲୋକମାନେ ଖାଦ୍ୟ ବିନା ହା ହା କାର କରି ଦୁର୍ଗା ଦେବୀଙ୍କ ଶରଣାପନ୍ନ ହେଲେ । ଦୁର୍ଗା ଯୋଦ୍ଧୃବେଶରେ ଉପନୀତା ହୋଇ ରାକ୍ଷସଙ୍କ ସହ ସାତ ଦିନ ଧରି ଯୁଦ୍ଧ କଲେ ଓ ପଞ୍ଜାବରୁ ସେମାନଙ୍କୁ ଘଉଡ଼ାଇ ଦେଲେ । ଦୁର୍ଗା ଅଷ୍ଟମ ଦିନରେ ଲୋକଙ୍କୁ ମଉଜ ମଜଲିସ କରିବାକୁ ନିର୍ଦ୍ଦେଶ ଦେଲେ । ଫଳରେ ସେହି ସ୍ମୃତି ଉଦ୍ଦେଶ୍ୟରେ ପଞ୍ଜାବୀମାନେ ପ୍ରଥମ ସାତ ରାତିରେ ଉଜାଗର ରହି ଉପବାସ କରନ୍ତି ଓ ଅଷ୍ଟମ ଦିବସରେ ନାନାଦି ମିଷ୍ଟାନ୍ନ ଭୋଜନରେ ବୁଡ଼ି ରହନ୍ତି ।

ପୂର୍ବକାଳରେ ଏହିପରି ଏକ ଆଶ୍ୱିନ ଶୁକ୍ଳନବମୀ ଦିନ ଜଗଜ୍ଜନନୀ ଦୁର୍ଗା ମହିଷାସୁରକୁ ନିଧନ କରିଥିଲେ । ଏଣୁ ଏହି ନବରାତି ଉପଯୁକ୍ତ ବିଧାନାନୁଯାୟୀ ମୋର ପୂଜା କରିବ ବୋଲି ନିଜେ ଦେବୀ ମହାରାଜା ସୁଦର୍ଶନଙ୍କୁ କହିଥିଲେ । ଏହା ମହାପୂଜା ନାମରେ ଖ୍ୟାତ ।—

'ଶରତ୍କାଳେ ମହାପୂଜା କର୍ତ୍ତବ୍ୟାମମସର୍ବଦା
ନବରାତ୍ର ବିଧାନେନ ଭକ୍ତିଭାବଯୁତେନ ଚ

× × ×

ନବରାତ୍ରେ ତୁ ଦେବେଶି ଦେବୀ ଭାଗବତଂ ପଠେତ୍
ଜପେତ୍ ସପ୍ତଶତୀଂ ଚଣ୍ଡୀଂ ନିୟମେନ ସମାହିତଃ'

ଏହି ମହାପୂଜା ସମ୍ପର୍କରେ ଦେବୀ ବ୍ରହ୍ମାଙ୍କୁ କହିଥିଲେ, 'ଶୁକ୍ଳାଷ୍ଟମୀ ପର୍ଯ୍ୟନ୍ତ ତେର ଦିନ ବିଲ୍ୱପତ୍ରରେ ପୂଜା କରିବ, ସପ୍ତମୀରେ

ଘରକୁ ଆଣି ପୂଜିବ, ଅଷ୍ଟମୀରେ ଉପବାସ କରି ଓ ନବମୀରେ ମୋର ଯୋଗିନୀମାନଙ୍କୁ ବଳିଦାନ ଦେଇ ପୂଜା କରିବ । ବିଶେଷତଃ ଅଷ୍ଟମୀ, ନବମୀ ସନ୍ଧିକାଳ ପୂଜା ସର୍ବଶ୍ରେଷ୍ଠ ଫଳଦାୟକ ।

ମହାବିପଦରୁ ରକ୍ଷା କରୁଥିବାରୁ ଏହା 'ମହାଷ୍ଟମୀ' ଓ ସକଳ ସମ୍ପଦଦାୟିନୀ ବୋଲି ନବମୀ 'ମହାନବମୀ' ରୂପେ ଖ୍ୟାତ ଓ ଏହାର ପରଦିନ ଯେ କୌଣସି କାର୍ଯ୍ୟ ଅନୁକୂଳ ସକାଶେ ପ୍ରଶସ୍ତ ହୋଇଥିବାରୁ ତାହା ବିଜୟାଦଶମୀ ବା ଦଶହରା ନାମରେ ପରିଚିତ ।



# ଦଶହରା

ଭାରତୀୟମାନେ ଦୁଇଟି 'ଦଶହରା'ର ସମ୍ମୁଖୀନ ହୁଅନ୍ତି । ଗୋଟିଏ ଜ୍ୟେଷ୍ଠ ଶୁକ୍ଳ ଦଶମୀର ଦଶହରା ଓ ଅନ୍ୟଟି ଆଶ୍ୱିନ ଶୁକ୍ଳ-ଦଶମୀ ଦଶହରା । ଏହା ପୁଣି 'ବିଜୟାଦଶମୀ' ରୂପେ ଜଣା ଶୁଣା । ପ୍ରଥମ ଦଶହରାର ଆରାଧ୍ୟା ଗଙ୍ଗାଦେବୀ ଓ ଦ୍ୱିତୀୟଟିରେ ମା' ଦୁର୍ଗାଦେବୀ ଉଭୟେ ଭାରତୀୟଙ୍କ ପକ୍ଷେ ପୂଜନୀୟା । ଜାହ୍ନବୀଗଙ୍ଗା ମର୍ତ୍ତ୍ୟଲୋକରେ ଅବତରଣ ଓ ଶାରଦୀୟ ଶୁକ୍ଳଦଶମୀରେ ଜଗଜ୍ଜନନୀ 'ଦୁର୍ଗା'ଶୁଭାଗମନ କରି ପୃଥିବୀବାସୀଙ୍କ ଦଶଦଶା ହରଣ କରୁଛନ୍ତି । ଏଣୁ ବ୍ରହ୍ମପୁରାଣରେ ଲେଖାଅଛି—

"ଜ୍ୟେଷ୍ଠେ ମାସି ସିତେ ପକ୍ଷେ ଦଶମୀ ହସ୍ତସଂଯୁତା
ହରତେ ଦଶ ପାପାନି ତସ୍ମାଦଶହରା ସ୍ମୃତା"

'ଗଙ୍ଗା ଦଶହରା'ରେ ଗଙ୍ଗା ପାପନାଶିନୀ ରୂପେ ଓ ଆଶ୍ୱିନ ଦଶହରାରେ ଦୁର୍ଗା ରକ୍ଷାକର୍ତ୍ତ୍ରୀ ରୂପେ ପ୍ରକାଶ ପାଇଛନ୍ତି । ଏହି ଦ୍ୱିତୀୟୋକ୍ତ ଦଶହରା ବା 'ଦଶମୀ' 'ବିଜୟାଦଶମୀ' ନାମରେ ନାମିତ ଓ ଲୋକମୁଖରେ ଏହା 'ଦଶହରା' ନାମରେ କଥିତ ।

**ବିଜୟା ଦଶମୀ କାହିଁକି ?** —ପୁରାଣରେ ଲେଖାଅଛି ଯେ ସର୍ବକାର୍ଯ୍ୟ ଅନୁକୂଳ କରିବା ନିମନ୍ତେ ଆଶ୍ୱିନର ଏହି ଶୁକ୍ଳଦଶମୀ ହିଁ ପ୍ରଶସ୍ତ—

"ଆଶ୍ୱିନେ ଦଶମୀ ଶୁକ୍ଳା ଶ୍ରାବଣେନ ସମନ୍ୱିତା
ବିଜୟା ଦଶମୀ ପ୍ରୋକ୍ତା ସାଚୈବାତ୍ୟନ୍ତ ଦୁର୍ଲ୍ଲଭା
ଆଶ୍ୱିନସ୍ୟ ସିତେ ପକ୍ଷେ ଦଶମ୍ୟାଂ ତାରକୋଦୟେ
ସକାଲୋ ବିଜୟୋ ଜ୍ଞେୟଃ ସର୍ବକାର୍ଯ୍ୟାର୍ଥ ସିଦ୍ଧୟେ
ଲିସପ୍ରଷ୍ୟାମତି-କ୍ରାନ୍ତଃ କିଂଚିତ୍ପୂର୍ଣ୍ଣତତାରକଃ
'ବିଜୟୋ' ନାମ କାଲୋଽୟଂ ସର୍ବକାର୍ଯ୍ୟାର୍ଥ ସାଧକଃ ।

ବାସ୍ତବିକ୍ ଏହିଦିନ ମୁସଲମାନ ରାଜାଙ୍କ ରାଜତ୍ୱ ପୂର୍ବରୁ ହିନ୍ଦୁ ରାଜାମାନେ ସେମାନଙ୍କର ଦିଗ୍‌ବିଜୟ ଯାତ୍ରା ଆରମ୍ଭ କରୁଥିଲେ । ରାବଣାରି ରାମଙ୍କ ଲଙ୍କା ବିଜୟଯାତ୍ରା ଭାରତର ଅତି ପ୍ରାଚୀନ ପରମ୍ପରାର ସୂଚକ । ଏଣୁ ଭାରତର ଏହା ଏକ ବିଜୟ ମୁହୂର୍ତ୍ତରୂପେ ପରିଗଣିତ । ଏହି ଦିଗ୍‌ବିଜୟ ମୂଳରେ ଭୌଗୋଳିକ ତଥ୍ୟ ଥିବାର ଜଣାଯାଏ । ଶରତଋତୁ ଭାରତର ସ୍ୱଚ୍ଛନ୍ଦ, ସୁଖଦ ଋତୁ ରୂପେ ପୂର୍ବେ ସୂଚିତ ହୋଇଅଛି । ବସନ୍ତ ଋତୁ ମଧ୍ୟ ଦିଗ୍‌ବିଜୟ ଯାତ୍ରା ନିମନ୍ତେ ସେତେ ଅନୁକୂଳ ନୁହେଁ । କାରଣ ବସନ୍ତ ଋତୁ ପରେ ପରେ ହଠାତ୍ ଗ୍ରୀଷ୍ମ ପହଞ୍ଚିଯାଏ । ବିଜୟଯାତ୍ରା ପକ୍ଷେ ଏହା ସୁଖଦ ନୁହେଁ । ଏଣୁ ପୂର୍ବେ ଶରତ୍-କାଳକୁ ରାଜାମାନେ ବିଜୟ ଯାତ୍ରା ରୂପେ ଗ୍ରହଣ କରୁଥିଲେ । ପୁନଶ୍ଚ ଶରତର ପୂର୍ବ ବର୍ଷାକାଳରେ ନଦନଦୀ ଜଳଗର୍ଭା ହୋଇଥାଏ । ଏ ସମୟରେ ଦିଗ୍‌ବିଜୟ ସମ୍ପୂର୍ଣ୍ଣ ନିଷିଦ୍ଧ, ସଂସ୍କୃତ 'ବର୍ଷା' ପଦ୍ୟରେ ମଧ୍ୟ ଏହି ଆଭାସ—

"ରଜଃ ପ୍ରଶାନ୍ତଂ ମହିମାଦ୍ୟ ବାୟୁଃ
ନଦୀଘଦୋଷ—ପ୍ରସରାଃ ପ୍ରଶାନ୍ତାଃ
ସ୍ଥିତାହି ଯାତ୍ରା ବସୁଧାଧିପାନାମ୍
ପ୍ରବାସିନୋ ଯାନ୍ତି ନରାଃ ସ୍ୱଦେଶାନ୍"

ମହାରାଜା 'ରଘୁ'ଙ୍କ ଦିଗ୍‌ବିଜୟ ଯାତ୍ରା ସମ୍ବନ୍ଧରେ କାଳିଦାସ ବର୍ଣ୍ଣନା କରିଛନ୍ତି—

'ସରିତଃ କୁର୍ବତୀ ଗାଧାଃ ପଥଶ୍ଚାଶ୍ୟାନ କର୍ଦ୍ଦମାନ୍
ଯାତ୍ରାୟୈ ନୋଦୟାମାସ ତଂ ଶକ୍ତେଃ ପ୍ରଥମଂ ଶରତ୍'

ଅର୍ଥାତ୍ ନଦୀକୁ ଶୁଷ୍କ କରୁଥିବା ଓ କର୍ଦ୍ଦମ ଗୁଡ଼ିକୁ ଶୁଷ୍କ କରୁଥିବା ଶରତ ଋତୁ ରାଜା ରଘୁଙ୍କୁ ଦିଗ୍‌ବିଜୟ ପାଇଁ ( ସୈନ୍ୟ ପ୍ରସ୍ତୁତିକରଣ କାର୍ଯ୍ୟ) ପ୍ରେରଣା ଦେଇଥିଲା । ଶରତର ସ୍ୱାଭାବିକ ପରିବେଶ ଉତ୍ସାହପ୍ରଦ । ଏହାଛଡ଼ା ଜ୍ୟୋତିଷଶାସ୍ତ୍ରାନୁସାରେ ମଧ୍ୟ ଏହି କାଳ ଦିଗ୍‌ବିଜୟ ନିମନ୍ତେ ଅନୁକୂଳ । ଅନ୍ୟତ୍ର ଉଲ୍ଲେଖ ଅଛି—

'ସର୍ବ ଦୁଃଖ ଶମନୀ ଯଶସ୍କରୀ ଲାଭଦା ଚ ଦଶମୀ ତଦନ୍ତରମ୍'

ଅର୍ଥାତ୍ ଶୁକ୍ଲପକ୍ଷ ଦଶମୀ ସବୁ ଦୁଃଖକୁ ପ୍ରଶମନ କରେ ଓ ଲାଭଦାୟିନୀ ହୁଏ । ବିଶେଷତଃ ଶ୍ରବଣାନକ୍ଷତ୍ର ଯୁକ୍ତ ତିଥି ଯାତ୍ରା ନିମନ୍ତେ ଶୁଭ । ଶାସ୍ତ୍ର କହେ— ଅଶ୍ୱିନୀ, ପୁନର୍ବସୁ, ଅନୁରାଧା, ମୃଗଶିରା, ପୁଷ୍ୟା, ରେବତୀ, ହସ୍ତା, ଶ୍ରବଣା ଏବଂ ଧନିଷ୍ଠା ଏହି ନକ୍ଷତ୍ରଗୁଡ଼ିକ ଯାତ୍ରାରେ ଶୁଭଙ୍କର ।

ରାମଚନ୍ଦ୍ରଙ୍କ ସହ ଦୁର୍ଗାଙ୍କୁ ମିଶାଇ କେତେକ ଏହା ରାମଙ୍କ 'ବିଜୟ ଯାତ୍ରା' ରୂପେ ବହୁ ପ୍ରାଚୀନ କାଳରୁ ବର୍ଣ୍ଣନା କରି ଆସୁଅଛନ୍ତି । ଏହା ବାଲ୍ମୀକି ରାମାୟଣରେ ନ ଥିଲେ ସୁଦ୍ଧା ଲୋକ ଚଳଣିରେ ଏହାର ଚେର ବହୁ ଦୂରକୁ ଗ୍ଲାଲଗଲାଣି । ଏଣୁ ଏହାର ବିରୁଦ୍ଧ ମତ ହିଁ ଅଗ୍ରାହ୍ୟ । ରାମଙ୍କର 'ଅକାଳ ବୋଧନ' ଏବେସବୁ ପୁରାଣ, କାବ୍ୟ, ସାହିତ୍ୟ ଓ ସଂସ୍କୃତିରେ ସ୍ୱତନ୍ତ୍ର ସ୍ଥାନ ଲାଭକଲାଣି । ଯେତେବେଳେ ରାମ ସ୍ୱଚକ୍ଷୁ ଉତ୍ପାଟନ କରିବାକୁ ବାସନ୍ତୀ ଓ ଦେବୀ ଦୁର୍ଗାଙ୍କ ପୂଜା ସମାପନ କରିବାକୁ ମନସ୍ଥ କରନ୍ତି, ଦେବୀ କହିଥିବା କଥା ବଙ୍ଗକବି କୃତ୍ତିବାସ ତାଙ୍କ ରଚିତ ରାମାୟଣରେ ଲେଖିଛନ୍ତି—

ଚକ୍ଷୁ ଉପାଡ଼ିତେ ରାମ ବସିଲ ସାକ୍ଷାତେ
ହେନକାଲେ କାତ୍ୟାୟନୀ ଧରିଲେନ ହାତେ
କି କର କି କର ପ୍ରଭୁ ଜଗତ ଗୋସାଇଁ
ସକଲୁ ତୋମାର ପୂର୍ଣ୍ଣ ଚକ୍ଷୁ ନାଇଁ ଗୁଇ ।।

''ଅକାଳ ବୋଧନେ ପୂଜା          କରିଲେ ତୁମି ଦଶଭୁଜା
ବିଧିମତେ କରିଲ ବିନାଶ,

ଲୋକେ ଜାଣିବାର ଜନ୍ୟ ଆମାରେ କରିଲ ଧନ୍ୟ
ଅବମତେ କରିଲେ ପ୍ରକାଶ ।
ଦଶମୀତେ ପୂଜା କରି ବିସର୍ଜିଲ୍ଲ ମହେଶ୍ୱରୀ
ସଂଗ୍ରାମେ ଚଳିଲ ରଘୁପତି
ଆଦେଶ ପାଇଣ୍ଟା ରାମ ସିଦ୍ଧ କଲ ମନସ୍କାମ
ଚଣ୍ଡୀଲୀଳା ମଧୁର ଭାରତୀ" ।

ମହାଭାରତରୁ ଜଣାଯାଏ ବିରାଟ ରାଜାଙ୍କ ଗୋଶାଳାରୁ ଦୁର୍ଯ୍ୟୋଧନ, ଦୁଃଶାସନ କୌରବଗଣ ଗୋବତ୍ସା ହରଣ କରିନେଇଥିଲେ । ମଧ୍ୟମ ପାଣ୍ଡବ ଅର୍ଜୁନ ଅଜ୍ଞାତ ବନବାସ ପୂର୍ବରୁ ଶମୀବୃକ୍ଷ କୋଟରରେ ଗୁପ୍ତ ରଖିଥିବା ଅସ୍ତ୍ର ସାହାଯ୍ୟରେ କୁରୁବଳଙ୍କ ଏହି ଗୋହରଣ କାର୍ଯ୍ୟକୁ ପ୍ରତିହତ କରିଥିଲେ । ଏଣୁ ବିରାଟ ରାଜା ସେହିଦିନ ଏକ ବିଜୟୋତ୍ସବ ପାଳନ କରିଥିଲେ । ମହାଭାରତ ଯୁଦ୍ଧ ପ୍ରାରମ୍ଭରେ ମଧ୍ୟ ଶତ୍ରୁମାନଙ୍କୁ ଜୟ କରିବା ପାଇଁ କୃଷ୍ଣଙ୍କ ନିର୍ଦ୍ଦେଶରେ ଅର୍ଜୁନ ଦୁର୍ଗାଙ୍କୁ ବନ୍ଦନା କରିଥିଲେ ।

**ଦଶହରା—ଏକ ସମରୋତ୍ସବ; ସାମରିକ ଅନୁକୂଳ—** ବିଶେଷତଃ ଓଡ଼ିଶାରେ ଏହା ଏକ ସାମରିକ ଐତିହ୍ୟ ରୂପରେ ଆଧାରିତ । ସମରପ୍ରିୟ ଉତ୍କଳୀୟମାନେ ବର୍ଷା ପୂର୍ବରୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରି କୃଷି କାର୍ଯ୍ୟରେ ମନୋନିବେଶ କରୁଥିଲେ । ଦଶହରା ସମୟକୁ ପାଗ ଅନୁକୂଳ ହେଉଥିବାରୁ ପୁଣି ମା 'ଦୁର୍ଗା'ଙ୍କୁ ପୂଜା କରି ବିଜୟ ଯାତ୍ରା ଆରମ୍ଭ କରୁଥିଲେ । ଏଣୁ ଦଶହରା ବଙ୍ଗଳାର ଅନୁକରଣରେ ଓଡ଼ିଶାରେ ପ୍ରବେଶ ଲାଭ କରିଛି ବୋଲି ଯେଉଁ ଭ୍ରାନ୍ତ ଧାରଣା କେତେକଙ୍କର ଅଛି ତାହା ଅମୂଳକ । ଓଡ଼ିଶାର ପୁରପଲ୍ଲୀରେ ଶହ ଶହ ବର୍ଷ ଧରି ଦଶହରା ଏକ ଆନନ୍ଦ, ଉଲ୍ଲାସ ସୃଷ୍ଟି କରି ଆସୁଛି । ବିଶେଷତଃ ଖଣ୍ଡାୟତ ପଲ୍ଲୀରେ ଏବେ ବି ଦଶହରା ଯେତେବେଳେ ବର୍ଷକେ ଥରେ ତାହାର ଚଞ୍ଚଳ ପାଦ ପକାଏ, ଉତ୍କଳର ଅଗଣିତ ଛୋଟିଆ ଗାଁ ଗଣ୍ଡା ଉଲ୍ଲାସର କଳରୋଳରେ ମୁଖରିତ ହୋଇ ଉଠେ । ଡକ୍ଟର ମାୟାଧର ମାନସିଂହ ଯଥାର୍ଥରେ ଲେଖିଛନ୍ତି—

"ସବୁରି ପ୍ରଥମ ପ୍ରହର ବେଳକୁ କ୍ଷୁଦ୍ରପଲ୍ଲୀ, ଗ୍ରାମଦେବୀ ବାଦ୍ୟକାରମାନଙ୍କର ଢକ୍କା ଢୋଲରେ ସହସା ମନ୍ଦ୍ରିତ ହୋଇ ଉଠେ ।

ବାଦ୍ୟନାଦରେ ଖଣ୍ଡାୟତର ସୁପ୍ତ ଶୋଣିତ ଘର୍ଘ ଏକ ବର୍ଷ ମଧ୍ୟରେ କେତୋଟି କ୍ଷୁଦ୍ର ମୁହୂର୍ତ୍ତଲାଗି ଜାଗ୍ରତ ହୋଇ ଉଠେ । ପୂଜାଗୃହକୁ କେହି ତରବାରି, କେହି ଖଣ୍ଡା, କେହି ବର୍ଚ୍ଛା, କେହି ପଟାବାଡ଼ି ଘେନି ବାହାରି ପଡ଼ନ୍ତି । ତାଙ୍କୁ ବାହାରି ଅଭିଯାନ ଆରମ୍ଭବେଳେ ଆସି ଦେବତାର ତୃପ୍ତି ନିମନ୍ତେ ବଳିଦାନ ହୁଏ । ଇତିହାସର କେଉଁ ବିସ୍ମୃତ କାଳରେ, ଏହି ଅସି ଏହିପରି ମୁହୂର୍ତ୍ତରେ ରକ୍ତପାନ କରୁଥିଲା ।

(ସ୍ୱରାଜ୍ୟ-୭-୧୦-୭୦)

ସନ୍ଧ୍ୟା ହୁଅନ୍ତେ ମଠର ପ୍ରାଙ୍ଗଣ ଖଣ୍ଡାୟତମାନଙ୍କ ଗହଗହ ନାଦରେ ପ୍ରକମ୍ପିତ ହୋଇଉଠେ । ବୃଦ୍ଧ, ପ୍ରୌଢ଼, ତରୁଣ ସମସ୍ତେ ଏକତ୍ର ହୋଇ ସ୍ୱ ସ୍ୱ ବାହୁ କୌଶଳ ପ୍ରଦର୍ଶନ କରନ୍ତି । ପ୍ରଥମେ ତରୁଣ ବାହୁ କୌଶଳ ଯଷ୍ଟିଯୁଦ୍ଧ ଓ ଆତ୍ମରକ୍ଷାମୂଳକ ଅଭିନୟ ଦେଖାଇ ସାରିଲା ପରେ ବୃଦ୍ଧମାନେ ନିଜକୁ ସମ୍ଭାଳି ନ ପାରି କୁହାଟ ମାରି ପାହୁଲ ପକାନ୍ତି । ବାଦ୍ୟଧ୍ୱନି ଯେତେ ଯେତେ ଖରତର ହେଉଥାଏ, ଖଣ୍ଡାୟତମାନଙ୍କର ପଦ-ଘାତର ସେତେ ସେତେ ମଠର ପ୍ରାଙ୍ଗଣର ଧୂଳି ମାଟିକୁ ମନ୍ଥିତ କରୁଥାଏ । ଏହି ଓଡ଼ିଆର ପୂର୍ବପୁରୁଷ ଯେ ଦିନେ କୋଣ୍ଡାଭିଡୁ, ଓ୍ୟାରଙ୍ଗଲ, ଗୁଲବର୍ଗା, ବିଜୟନଗର ଜିଞ୍ଜିକୁ ସ୍ୱ ବାହୁବଳରେ ଜୟ କରିଥିଲେ ତାହା କେବଳ କଳ୍ପନାରେ ରହିଯାଇଛି ।

ଏବେ ମଧ୍ୟ 'ଦଶହରା'ରେ କ୍ଷତ୍ରିୟ ସମେତ ବ୍ରାହ୍ମଣ, ବୈଶ୍ୟ, ଶୂଦ୍ର ସମସ୍ତେ ନିଜ ନିଜର କୌଳିକ ଉପକରଣ ମାନ ପୂଜା କରୁଛନ୍ତି । ଏଣୁ ଏହା କେବଳ ଆଜି କ୍ଷତ୍ରିୟଙ୍କର ଏକଚାଟିଆ ନ ହୋଇ ସାର୍ବଜନୀନ ଦୁର୍ଗାପୂଜାରେ ପରିଣତ ହେଲାଣି ।

ଦୁର୍ଗାଦେବୀ ନିଜେ ସମର-ଦେବୀ (War-goddess) ରୂପେ ପରିଚିତା । ବଙ୍ଗୀୟ ମତରେ ସେ ପୁଣି ଦଶଭୁଜା । ଅବଶ୍ୟ ଏ ସମ୍ପର୍କରେ ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର ବିରୁଦ୍ଧମତ ପ୍ରକାଶ କରି ଆସୁଛନ୍ତି । ବଙ୍ଗୀୟ ମତେ ତାଙ୍କର ଦଶ ହସ୍ତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ସହ ଖଣ୍ଡା, ବର୍ଚ୍ଛା, ଢାଲ ପ୍ରଭୃତି ସାମରିକ ଉପକରଣମାନ ରହିଛି । ଲେଖକ P. Thomas ତାଙ୍କ ପ୍ରଣୀତ ପୁସ୍ତକରେ ଦଶହରା ଉପରେ

ଆଲୋକପାତ କରିବାକୁ ଯାଇ ଲେଖିଛନ୍ତି-" Though celebrated all over India also by the common folk, Dassera is chiefly a royal festival beloved of the ruling class. As the War Goddess of the Patheon, Durga is the Presiding genius of all militant activities and is assiduously courted by all desising success in arms. In ancient and medieval India, all planned military operations of the Hindu Kings generally, started on the tenth day of Dassera"

ଅର୍ଥାତ୍ ସର୍ବସାଧାରଣଙ୍କ ଦ୍ୱାରା ଭାରତରେ ସର୍ବତ୍ର ପାଳିତ ହେଉଥିଲେ ସୁଦ୍ଧା ଶାସକ ଗୋଷ୍ଠୀର (କ୍ଷତ୍ରିୟ) ଏହା ପ୍ରିୟତମ ଓ ରାଜକୀୟ ପର୍ବ, ଯେହେତୁ ଏ ପୂଜାର ମୂଳ ଅଧିଷ୍ଠାତ୍ରୀ ଦେବୀ 'ଦୁର୍ଗା' ସମରପ୍ରିୟା । ଏଣୁ ବିଜୟ ଶ୍ରୀମଣ୍ଡିତ ହେବାଲାଗି ତାହାଙ୍କୁ କ୍ଷତ୍ରିୟବର୍ଗ ଆରାଧନା କରନ୍ତି । ପ୍ରାଚୀନ ଓ ମଧ୍ୟଯୁଗରେ ହିନ୍ଦୁ ରାଜାମାନଙ୍କର ସମସ୍ତ ସୁଚିନ୍ତିତ ଦିଗ୍‌ବିଜୟ ଯୋଜନାମାନ ଦଶହରା (ଦଶମୀ ଦିବସ) ଠାରୁ ଆରମ୍ଭ ହେଉଥିଲା ।

ଦିଗ୍‌ବିଜୟ ପୂର୍ବରୁ ଦୁର୍ଗାଙ୍କୁ ମଇଁଷି ବଳିଦେଇ (ମହିଷ ଏଠାରେ ମହିଷାସୁରର ପ୍ରତୀକ) ଆରାଧନା କରାଯାଉଥିଲା । ହିନ୍ଦୁର ସାମରିକ ଐତିହ୍ୟକୁ ଅକ୍ଷୁଣ୍ଣ ରଖିବାକୁ ଓ ଆଓରଙ୍ଗଜେବଙ୍କ ବିରୁଦ୍ଧରେ ଆକ୍ରମଣ ଚଳାଇବାକୁ ସଦର୍ପ ପ୍ରସ୍ତୁତ ହେଉଥିବା ମରହଟ୍ଟା ବୀର ଶିବାଜୀ ବିଜୟ ଆଶାରେ ଦୁର୍ଗାଙ୍କୁ ଆରାଧନା କରିଥିଲେ । ଶିଖ୍‌ମାନଙ୍କୁ ଏକ ବୀର ଓ ସମରକୁଶଳ ଜାତିରେ ସଗଠିତ କରି ମୋଗଲମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବା ଶିଖ୍ ଗୁରୁଗୋବିନ୍ଦ ସିଂହ ମଧ୍ୟ ଦୁର୍ଗାଙ୍କ ଆରାଧନା କରିଥିଲେ । ଏପରିକି ବ୍ରିଟିଶ ଯୁଗ ସମୟରେ ମଧ୍ୟ ବଙ୍ଗଳାରେ ବିଦ୍ରୋହ ଲାଗି ଉଦ୍ଧଥିବା ସମୟରେ ବିପ୍ଳବୀମାନେ ଏହି ଦୁର୍ଗାଙ୍କ ଆଶ୍ରୟ ନେଇଥିଲେ ।

ବ୍ରିଟିଶ ପୂର୍ବ ଯୁଗ ପର୍ଯ୍ୟନ୍ତ ସ୍ୱାଧୀନ ହିନ୍ଦୁ ନରପତିମାନେ ଶାନ୍ତିମତ ରାଜକୀୟ କାଇଦାରେ 'ଦଶହରା' ପର୍ବକୁ ଏକ ସମର ଉତ୍ସବ

ରୂପେ ପାଳନ କରୁଥିଲେ ଓ ଠିକ୍ ଆଶ୍ୱିନ ଶୁକ୍ଳ ଦଶମୀ ଦିନ ବିଗ୍-ବିଜୟ ଯାତ୍ରା ଅନୁକୂଳ କରୁଥିଲେ । ମାତ୍ର ବ୍ରିଟିଶମାନଙ୍କ ଆଗମନ ପରେ ପରେ ଭାରତୀୟ ଶାସକବର୍ଗ ଛିନ୍ନଭିନ୍ନ ହୋଇଗଲେ, କରଦ ରାଜ୍ୟରେ ପରିଣତ ହେଲେ । ତଥାପି ରାଜା ମହାରାଜାମାନେ ଏବେ ବି 'ଦଶହରା' ଦିନ ପୁରୋହିତମାନଙ୍କୁ ଦାନ ଦେଉଛନ୍ତି ଓ ପ୍ରଜାମାନଙ୍କଠାରୁ ପ୍ରଣାମ ଗ୍ରହଣ କରୁଛନ୍ତି ।

ଦଶହରା ଉତ୍ସବ ପଞ୍ଚଦଶ ଓ ଷୋଡ଼ଶ ଖ୍ରୀଷ୍ଟାବ୍ଦରେ ଇଉରୋପୀୟ ପରିବ୍ରାଜକଙ୍କର ସୁଦୃଷ୍ଟି ଆକର୍ଷଣ କରିଥିଲା । ସେମାନେ ଭାରତର ଏହି ପର୍ବ ଦେଖି ଆତ୍ମବିଭୋର ହୋଇ ତାଙ୍କ ବିବରଣୀରେ ଲିପିବଦ୍ଧ କରି-ଅଛନ୍ତି । ବିଶେଷତଃ ମହୀଶୂରରେ ରାଜାଙ୍କ ଦ୍ୱାରା ପାଳିତ ହେଉଥିବା ଏହି ଉତ୍ସବରେ ପରମ୍ପରା କିପରି ସୁରକ୍ଷିତ ତାହାର ନିଖୁଣ ବର୍ଣ୍ଣନା ଦେଇଛନ୍ତି । ବିଜୟନଗର ରାଜାମାନେ ହିନ୍ଦୁଧର୍ମ ଓ ସମରକୁଶଳୀ ଥିଲେ । ସେମାନେ ପୌରାଣିକ ଯୁଗର ରାଜାଙ୍କ ପରି ପର୍ବ ପରମ୍ପରା ବଜାୟ ରଖିଥିଲେ । ମହୀଶୂରରେ 'ଦଶହରା' ପୂର୍ବ ଆଡ଼ମ୍ବର ସହକାରେ ପାଳିତ ହୁଏ, ଦରବାର ହୁଏ । ରାଜା ନିଜେ ରାଜକୀୟ ଢଙ୍ଗରେ ଆସନ ଗ୍ରହଣ କରନ୍ତି । ଲୋକେ ସମ୍ମୁଖରେ ବସନ୍ତି, ଅସ୍ତ୍ର ପୂଜା ହୁଏ । ସଜ୍ଜିତ ହୋଇଥିବା ହସ୍ତୀ, ଅଶ୍ୱ ଓ ଯାନବାହନ ସବୁ ମହାରାଜାଙ୍କ ଆଶୀର୍ବାଦ ଲାଭ କରି ତାଙ୍କ ସମ୍ମୁଖରେ ଗୋଟି ଗୋଟି ହୋଇ ଅତିକ୍ରମ କରନ୍ତି । ଉପସ୍ଥିତ ବିରାଟ ଜନସମୁଦ୍ର ଆଗରେ ବିଦ୍ୟୁତାଲୋକ ଜଳି ଉଠି ଦରବାରର ପ୍ରତି କୋଣ ଅନୁକୋଣ ଝଲସାଇ ଦିଏ । ହସ୍ତୀ, ଅଶ୍ୱ ଓ ମଲ୍ଲମାନେ ନିଜ ନିଜ ଖେଳ ପ୍ରଦର୍ଶନ କରନ୍ତି । ସବୁଠାରୁ ବେଶୀ ଆକର୍ଷଣୀୟ ହେଉଛି ରାଜ୍ୟ-ଶୋଭାଯାତ୍ରା । ଏଥିରେ ରାଜ୍ୟର ପ୍ରତ୍ୟେକ କୋଣରୁ ଲୋକେ ଯୋଗ ଦେଇ ଥାଆନ୍ତି । ମହାରାଜା ରାଜକୀୟ ଭାବରେ ଏକ ସୁସଜ୍ଜିତ ହାଉଦା ଉପରେ ବସିଥାନ୍ତି । ତାଙ୍କ ପାଖେ ପାଖେ ବାଦ୍ୟକାର ବୃନ୍ଦ, ଦେହରକ୍ଷୀଗଣ, ଯୋଦ୍ଧା ହାତୀମାନେ ଧୀରେ ଧୀରେ ଚାଲି ଥାଆନ୍ତି ।

'ଦଶହରା' ବଙ୍ଗଳାର ଏକ ଜାତୀୟ ପର୍ବ । 'ନବରାତ୍ର'ରୁ ଶେଷ ତିନି ରାତ୍ର ବିଶେଷତଃ 'ଅଷ୍ଟମୀ' ରାତ୍ରିର ଗୁରୁତ୍ୱ ସେଠାରେ ବେଶୀ ଅନୁଭୂତ ହୁଏ । ଏହିଦିନ ସନ୍ଧ୍ୟା ସମୟରେ ହିଁ ମୂଳ ପୂଜା ବା 'ମହାପୂଜା'

'ସନ୍ଧିପୂଜା' ଆରମ୍ଭ ହୁଏ । ପ୍ରତି ଗାଁ ଓ ସହର ବଜାରରେ ଦୁର୍ଗାଙ୍କ ସହ ହିନ୍ଦୁ ଜଗତର ଅନ୍ୟ କେତେକ ଦେବଦେବୀ ଆସୀନ ହୁଅନ୍ତି । ଦୁର୍ଗା ସିଂହ ମଞ୍ଚରେ ବସନ୍ତି । ସେ ଅପେକ୍ଷାକୃତ ଉଚ୍ଚ, ତାଙ୍କର ବର୍ଣ୍ଣ ସୁନେଲି ଓ ସେ ଦଶଭୁଜା । ଏହାଙ୍କର ଦଶଟି ହସ୍ତ, କାରଣ ସେ ଯୁଦ୍ଧର ଦେବୀ । ତାଙ୍କ ଡାହାଣ ପାଖେ ସରସ୍ୱତୀ ଓ ଅଳ୍ପ ତଳକୁ ଗଣେଶ, ବାମପାର୍ଶ୍ୱରେ ଲକ୍ଷ୍ମୀ ଓ ଟିକିଏ ତଳକୁ ଦେବୀଙ୍କ ପ୍ରଧାନ ସହାୟକ କାର୍ତ୍ତିକେୟ । ପଶୁବଳି ଦିଆଯାଏ । ଦୁର୍ଗାଙ୍କ ଅସ୍ତ୍ର 'ଖଣ୍ଡା' 'ଖର୍ପର' ମଧ୍ୟ ଦେବୀଙ୍କ ସହ ପୂଜା ପାଏ । ନିର୍ଦ୍ଦିଷ୍ଟ ସମୟରେ ଭୋଗ ଦିଆଯାଏ, ଦେବୀ ପୁରାଣ ପାଠ କରାଯାଏ । ତେଣୁ ଏଠାରେ ମଧ୍ୟ 'ଦଶହରା' ଯେ ଏକ ସମରୋତ୍ସବର ପ୍ରତୀକ ପ୍ରକାରାନ୍ତରେ ଜଣାଯାଏ ।

ଉତ୍ତର ଭାରତରେ ଏହି ରାମାବତାର ସହ ସଂଶ୍ଳିଷ୍ଟ । ପୁଣି ତୁଳସୀଦାସଙ୍କ ରାମାୟଣ ରଚନା ଫଳରେ ଏହି ଉତ୍ସବଟିର ପାଳନ ବିଧି ବେଶୀ ରାମାୟଣାଶ୍ରୟୀ । 'ଦଶହରା' ସମୟରେ ରାମ ଓ ରାବଣଙ୍କୁ କେନ୍ଦ୍ରକରି ରାମଲୀଳା ଅଭିନୀତ ହୁଏ । ଉତ୍ତର ଭାରତରେ ଅଧିକାଂଶ ଗାଁ ଗଣ୍ଡାରେ, ଏହି ଲୀଳା ସଂଘଟିତ ହେଉଥିବାର ଜଣାଯାଏ । ବିଶେଷତଃ 'ଲଙ୍କାକାଣ୍ଡ' ବେଶୀ ଅଭିନୀତ ହୁଏ । ଏଥିରେ ହନୁମାନଙ୍କର ଭୂମିକା ମଧ୍ୟ ବେଶ୍ ଜାକଜମକରେ ପ୍ରଦର୍ଶିତ ହୁଏ । ଦୀର୍ଘଲାଞ୍ଜ ବିଶିଷ୍ଟ ହନୁମାନଙ୍କର ଯୁଦ୍ଧ କ୍ଷେତ୍ରରେ ଇତସ୍ତତଃ ଭ୍ରମଣ ରକ୍ତମୁଖାବାନର ଓ କୃଷ୍ଣମୁଖା ଜାମ୍ବବାନଙ୍କର ସାମରିକ କଳକୌଶଳ ପ୍ରଦର୍ଶନ ନବରାତ୍ର ସମୟରେ ଦୁଇ ଘଣ୍ଟା ଧରି ପ୍ରତ୍ୟହ ଅନୁଷ୍ଠିତ ହୁଏ । ଉପସ୍ଥିତ ଜନତା 'ଜୟ ରାମ କୀ ଜୟ' ଧ୍ୱନିରେ ଗଗନପବନ ଫଟାଇ ଦିଅନ୍ତି । ବିଜୟା ଦଶମୀ ଦିନ ରାବଣର ଏକ ବିରାଟ ପ୍ରତିମୂର୍ତ୍ତିରେ ଅଗ୍ନି ସଂଯୋଗ କରାଯାଏ । ଏହା ରାମଙ୍କ ଶେଷ ବିଜୟର ସ୍ମାରକୀ ।

ଦଶହରା 'ନେପାଳ' 'ପଞ୍ଜାବ' ପଶ୍ଚିମ ଓ 'ମଧ୍ୟ ଭାରତ'ରେ ମଧ୍ୟ ଆଡ଼ମ୍ବର ସହକାରେ ପାଳିତ ହୁଏ । ଲେଖକ କେ. କେ. ଦେବରାଜ ଉର୍ସ ତାଙ୍କ ଲେଖା The festival of Dessera ରେ (ଭବନ୍ସ ଜର୍ଣ୍ଣାଲ-ସେପ୍‌ଟେମ୍ବର' ୬୭) ଲେଖିଛନ୍ତି—

"The Worship of the weapons of war is a prominent feature in some places, especially among war-like races." ଇନ୍ଦୋରରେ ଏହା ଏକ ରାଜ୍ୟ-ପର୍ବ (State festival), ମହାରାଜା ନିଜେ ଅଂଶ ଗ୍ରହଣ କରନ୍ତି । କୋଚିନ୍, ଟ୍ରାଭାଙ୍କୁର୍ ଓ ପୁଡୁକୋଟାଇରେ ଓ ଦକ୍ଷିଣରେ ସର୍ବତ୍ର ତିନି ଦିନ ଧରି ପୂଜା ହୁଏ । ପ୍ରଥମ ଦିନ ଆୟୁଧ ପୂଜା, ଦ୍ୱିତୀୟ ଦିନ ବିଦ୍ୟାଧିଷ୍ଠାତ୍ରୀ ସରସ୍ୱତୀ ପୂଜା ଓ ତୃତୀୟଦିନ ଦେବୀ ପୂଜା ।

"ଓଡ଼ିଶାରେ ଦୁର୍ଗାପୂଜା" ଶୀର୍ଷକ ଲେଖାରେ ଶ୍ରୀ ଚନ୍ଦ୍ରଧର ମହାପାତ୍ର କହିଛନ୍ତି—ଓଡ଼ିଆ ଜାତିର ଦୁର୍ଗା ପୂଜା, ଖାଉଣ୍ଡର ପୂଜ, ଖଣ୍ଡା, ତରବାରି ଢାଲ, କୁନ୍ତ, ଛେଲ, ଧନୁଶର ଓ ବଳିର ପୂଜା । ମହାନବମୀ ପୂଜା ସବୁଲେ ଦଶହରା ଅନୁକୂଳ, ସାମରିକ ଅନୁକୂଳ । ୧୮୨୬ରେ ଏସ୍ତୁ ଦିବ୍ୟସିଂହଦେବ ଗଜପତି ଜେଜ ଯାତ୍ରା ମହାସମାରୋହରେ କରି ବସିଲେ ।

ଦୁର୍ଗା ମାଧବ ବିଜେ ହେଲେ । ପାଇକ ଅନ୍ୟୂନ ପଚିଶ ହଜାର ଜମିଗଲେ । ଦର୍ପୀ ଖଣ୍ଡାୟତବୃନ୍ଦଙ୍କ ବାହାସ୍ଫୋଟ ତରବାରିର ଝଙ୍କାର ଧ୍ୱନିରେ ବଡ଼ଦାଣ୍ଡ କମ୍ପି ଉଠିଲା । ଦଶହରା ପଦାରେ ତୋପ ଭୀଷଣ ଗର୍ଜନରେ ଫୁଟିଲା । ଏହା ଅସହ୍ୟ ହେଲା କେତେକ ଅଣଓଡ଼ିଆ କର୍ମଚାରୀଙ୍କୁ, ଇଂରେଜ କଲେକ୍ଟରଙ୍କୁ । ୧୮୧୭ର ପାଇକ ବିଦ୍ରୋହ କଥା ସେମାନେ ଚେତାଇଲେ । ଏହା କିପରି ବନ୍ଦ କରାଯିବ ସେଥିପାଇଁ ନବୀନଚନ୍ଦ୍ର ସେନ୍ ଏକ କଡ଼ା ନୋଟ୍ ଦେଲେ । ଚକ୍ରାନ୍ତ ଚାଲିଲା ।

( ସ୍ୱରାଜ୍ୟ, ୭. ୧୦. ୭୦ )

ଓଡ଼ିଶାରେ ଖଣ୍ଡାୟତ ସମ୍ପର୍କରେ ପୂର୍ବେ ସୂଚନା ଦିଆଯାଇଛି । ଏହାଛଡ଼ା ଗହ୍ମା ପୂର୍ଣ୍ଣିମାଠାରୁ ଆରମ୍ଭ କରି କୌମୁଦୀ ଜାଗର ଉତ୍ସବ ଅର୍ଥାତ୍ କୁମାର ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ହେଉଥିବା ବିଭିନ୍ନ ଓଷା, ବ୍ରତ ମଧ୍ୟରେ ମଧ୍ୟ ଉତ୍କଳୀୟଙ୍କ ପୂର୍ବ ସମରସ୍ପୃହା ପ୍ରଚ୍ଛନ୍ନ ଭାବେ ଜଡ଼ିତ । ଓଡ଼ିଶାରେ ପୂର୍ବେ ପାଳିତ ହେଉଥିବା 'ଅଙ୍ଗଭେଟି' ସପ୍ତପୁରୀ ଆମାବାସ୍ୟା, ସୁନିଆ, ଅଶ୍ୱପଞ୍ଚମୀ, ଗଜଷଷ୍ଠୀ ପ୍ରଭୃତିରେ ଅଶ୍ୱାରୋହୀ, ଗଜାରୋହୀ ଓ 'ସପ୍ତପୁର ବିଜୟ ସ୍ମୃତି ନିହିତ ।

**ଦଶହରା : ଅପରାଜିତା ଦଶମୀ**—ଆଶ୍ୱିନ ଦଶହରା ଦିନ ଅପରାଜିତା ପୂଜନ ବିଧି ଶାସ୍ତ୍ରସଙ୍ଗତ । ଗାଁ ଶେଷରେ ବା ଈଶାନ କୋଣରେ ପବିତ୍ର ସ୍ଥାନରେ ଗୋମୟ ଲେପନ କରି ଚନ୍ଦନାଦି ଦ୍ୱାରା ପ୍ରସ୍ତୁତ ଅଷ୍ଟକୋଣ ମଣ୍ଡଳ ରଖିବ । ମଝିରେ 'ଅପରାଜିତା', ଦକ୍ଷିଣରେ 'ଜୟା' ଓ ବାମପାର୍ଶ୍ୱରେ 'ବିଜୟା'ଙ୍କୁ ଆବାହନ କରି ଷୋଡ଼ଶୋପଚାରରେ ପୂଜା କରିବ; କିନ୍ତୁ ଆଜିକାଲି ଏ ବିଧି ଲୁପ୍ତପ୍ରାୟ ।

ଶକ୍ତି ଅପରାଜେୟା । ସେ ଅନ୍ୟକୁ ପରାଜିତ କରନ୍ତି, ମାତ୍ର ନିଜେ ଅପରାଜିତା । ଏଣୁ ସଫଳତାକାମୀ ମାନବ ଏହି ଅପରାଜିତା ପୂଜନ କରି ଆସୁଛନ୍ତି । କାରଣ ପ୍ରାଣୀ ମାତ୍ରେ ସମସ୍ତେ ସଫଳତା ଆଶାୟୀ । ଯେଉଁମାନେ ପରାଜିତ ହୋଇ ବସିରହେ, ତା'ମନରେ ଔଦାସୀନ୍ୟ, ମାନ୍ଦ୍ୟତା ବା ଜଡ଼ତା ରାଜତ୍ୱ କରେ । 'ଜଡ଼ତା' ଶକ୍ତିର ପରିପନ୍ଥୀ । ଏଣୁ ବିଜୟା ଦଶମୀ ଦିନ 'ଅପରାଜିତା ପୂଜନ' ବିଧି ବହୁକାଳରୁ ଗଢ଼ି ଆସୁଛି । ଏହିଦିନ ଆରାଧ୍ୟ ଦେବତାଙ୍କ ଅପେକ୍ଷା ଅପରାଜିତା ପୂଜନ ଓ ସ୍ମରଣ ବେଶୀ ଲାଭପ୍ରଦ ଯଦିଓ ଦୁହେଁ, ଏକ ତାତ୍ପର୍ଯ୍ୟବାଚୀ । ଗଦାଧର ପଦ୍ଧତିରେ 'ଅପରାଜିତା ଦଶମୀ' ଉପରେ ବିଶେଷ ଆଲୋକପାତ କରାଯାଇଛି । ଏହା 'ଜୟଦା ଦଶମୀ' ନାମରେ ମଧ୍ୟ ନାମିତା, ଯଥା—

"ମାର୍କଣ୍ଡେୟବଚେ ପୁଣ୍ୟା ବର୍ଣ୍ଣିତେ ଦଶମୀତିଥିଃ
ଆଶ୍ୱିନେ ଶୁକ୍ଳପକ୍ଷେ ତୁ ସା ଭବେଜ୍ଜୟଦା ନୃଣାଂ"

ଶତାନନ୍ଦ ସଂଗ୍ରହରେ ଅଛି—

"ଶ୍ରବଣେନ ଯୁତାଚେତ୍ ସ୍ୟାଦ୍ଦଶମୀ ଶ୍ରୁପରାଜିତା
ତତ୍ର ମାରାଜନାଂ କୃତ୍ୱା ଯାତ୍ରାକାଳେ ଜିଗୀଷୁଣା"

**ଦଶହରା ଶମୀ ପୂଜନ**—ଗାଁ ବାହାରେ ବା ଈଶାନ କୋଣରେ ଶମୀପୂଜା କରିବା ଏକ ବିଧି । ପୂଜାର ମନ୍ତ୍ର ହେଉଛି—

"ଅମଙ୍ଗଳାନାଂ ଶମନୀଂ ଶମନୀଂ ଦୁଷ୍କୃତସ୍ୟ ଚ
ଦୁଃଖବିନାଶିନୀଂ ଧନ୍ୟାଂ ପ୍ରପଦ୍ୟେଽହଂଶମୀଂ ଶୁଭାମ୍"

ପୂଜା ଶେଷରେ ମଧ୍ୟ ନିମ୍ନଲିଖିତ ମନ୍ତ୍ର ଉଚ୍ଚାରଣ କରିବ ।

"ଶମୀ ଶମୟତେ ପାପଂ ଶମୀ ଲୋହିତ କଣ୍ଟକା
ଧରିତ୍ର୍ୟର୍ଜୁନ-ବାଣାନାଂ ରାମସ୍ୟ-ପ୍ରିୟବାଦିନୀ
କରିଷ୍ୟମାଣାଯା ଯାତ୍ରା ଯଥା କାଳଂ ସୁଖଂ ମୟା
ତତ୍ର ନିର୍ବିଘ୍ନ-କର୍ତ୍ତ୍ରୀତ୍ୱଂ ଭବଶ୍ରୀରାମ ପୂଜିତେ"

ଶମୀ ଶବ୍ଦରୁ ଜଣାଯାଏ ଯାହା ଶମ ବା ପ୍ରଶମନ କରେ । ଏହାର ଅନିଷ୍ଟ ନିବୃତ୍ତି ଶକ୍ତି ରହିଛି । ଏଣୁ ଅପରାଜିତ ହେବାକୁ ଇଚ୍ଛୁକ ବ୍ୟକ୍ତି ଶମୀ ପୂଜନ କରିବା ଉଚିତ୍ । ଶମୀ 'ଅଗ୍ନିଗର୍ଭା' ରୂପେ ପରିଚିତ । କାଳିଦାସ ରଘୁବଂଶରେ ଲେଖିଛନ୍ତି—'ଶମୀ ମିବାଭ୍ୟନ୍ତରଲୀନ ପାବକାମ୍' । ପୁଣି ମଲ୍ଲିନାଥଙ୍କ ଦ୍ୱାରା ଉଦ୍ଧୃତ 'ଶମୀଗର୍ଭାଦଗ୍ନିଃ ଜନୟନ୍ତି'ରୁ ଜଣାଯାଏ ଶମୀ ଅଗ୍ନ୍ୟାଶ୍ରୟୀ । ଏଣୁ ଅମଙ୍ଗଳ ତଥା ଦୁଷ୍କୃତ ବିନାଶ-ପ୍ରୟାସୀ ଲୋକ ବିଜୟା ଦଶମୀର ବିଜୟ ଯାତ୍ରାବେଳେ ଅଗ୍ନିଗର୍ଭା ଶମୀକୁ ପୂଜା କରିବା ଉଚିତ୍ । ଏହି ଶମୀ ସମ୍ପର୍କରେ ପାଣ୍ଡବମାନଙ୍କ ଅଜ୍ଞାତ ବନବାସ ସମୟର ଏକ ଅଭୁଲା ସ୍ମୃତି ସଂଲଗ୍ନ । ପାଣ୍ଡବମାନେ ଅଜ୍ଞାତବାସ କରିବା ପୂର୍ବରୁ ଏହାର ଗୋଟିଏ ଅଂଶ ନିଜ ହାତରେ ବାନ୍ଧିଥିଲେ ଓ ଏହି ଅଜ୍ଞାତବାସ ପରେ ଏହାର ଶାଖାର ଏକ ଅଂଶକୁ ବ୍ୟବହାର କରିଥିଲେ । ଲେଖକ କେ. କେ. ଦେବରାଜ ଉର୍ସ କହନ୍ତି—

"The worship of the Sami Tree sometimes called Banni is closely connected with this festival. Sami is identified with Sakti, the chief attribute of Durga and hence Her worship of nine days ends appropriately with the attribute of her most important character." ଅର୍ଥାତ୍ ଶମୀପୂଜନ ଏହି ପର୍ବ ସହ ସଂଶ୍ଳିଷ୍ଟ; କାରଣ ଦୁର୍ଗାଙ୍କ ମୁଖ୍ୟ ଗୁଣ ଶକ୍ତି ସହ 'ଶମୀ'ର ପୂର୍ଣ୍ଣ ସାମଞ୍ଜସ୍ୟ ରହିଛି ଏବଂ ନଅଦିନ ପୂଜାଶେଷରେ ଦୁର୍ଗାଙ୍କ ଏହି ଶକ୍ତିସହ ଏହାର ମଧ୍ୟ ପୂଜା କରାଯାଏ ।

**ମହିଷାମର୍ଦ୍ଦିନୀ 'ଦୁର୍ଗା'** :—ଶକ୍ତିରୂପରେ ସର୍ବବ୍ୟାପିନୀ ଓ ସର୍ବଜନପ୍ରିୟା, ଦୁର୍ଗାରୂପେ ସେ ସମର ଅଧିଷ୍ଠାତ୍ରୀ ଦେବୀ ବିଶେଷତଃ ମହିଷରୂପୀର ସେ ସଂହାରିଣୀ, କାଳୀ ରୂପରେ ସେ କାଳଜୟିନୀ, ଜଗଦମ୍ବା ରୂପେ ସେ ବିଶ୍ୱର ପାଳନକର୍ତ୍ତ୍ରୀ, ସ୍ନେହମୟୀ ଓ କଲ୍ୟାଣମୟୀ

'ପାର୍ବତୀ' ରୂପେ ସେ ସ୍ୱାମୀ ଶିବଙ୍କ କର୍ତ୍ତବ୍ୟରତା ସହଧର୍ମିଣୀ ଓ ଗଣେଶ କାର୍ତ୍ତିକେୟଙ୍କର ସନ୍ତାନବତ୍ସଳା ଜନନୀ, 'ସତୀ' ରୂପେ ସେ ସାଧ୍ୱୀ ପତିବ୍ରତାନାରୀ ଭୁଲ୍ୟ ପତିର ସମ୍ମାନରକ୍ଷାକାରିଣୀ, 'ରକ୍ତଦନ୍ତୀ' ରୂପେ ସେ ରକ୍ତ ଓ ହିଂସାର ଅଧିଷ୍ଠାତ୍ରୀ ଦେବୀ, 'କୁମାରୀ' ରୂପେ ଚିର-କୁମାରୀ ଅକ୍ଷତା, 'ଲଳିତା' ରୂପେ ସେ ଶ୍ରେଷ୍ଠ ସୌନ୍ଦର୍ଯ୍ୟମୟୀ ଓ ଶଙ୍କରଙ୍କ ଭାର୍ଯ୍ୟାରେ ସତୀଙ୍କର ଅବତାର, 'ଉମା' ରୂପେ ସେ ତପସ୍ୱିନୀ । ଏହିପରି ଭାବେ ଦୁର୍ଗା ମନୁଷ୍ୟର ଯେ କୌଣସି ମାନସିକ ଅବସ୍ଥା (Mood ସହ ମେଳ ଖାଇବା ପରି ଏକ ଅଦ୍ୱିତୀୟା ଦେବୀ ।

ଶ୍ରୀ ଶ୍ରୀ ଠାକୁର ନିଗମାନନ୍ଦ ଦୁର୍ଗାଙ୍କ ତତ୍ତ୍ୱ ଉପରେ ମତବ୍ୟକ୍ତ କରିବାକୁ ଯାଇ କହନ୍ତି—'ଦୁର୍ଗା ଶକ୍ତି ନାରାୟଣଙ୍କର ଶକ୍ତିମୂର୍ତ୍ତି' ଏହି ଶକ୍ତି ପ୍ରଭାବରେ ବ୍ରହ୍ମାଦି ଦେବତାମାନେ ବିଶ୍ୱସଂସାର ଜୟ କରନ୍ତି । ଏହି ଶକ୍ତି ଆମର ଜୀବନୀଶକ୍ତି । ଏହି ଶକ୍ତି ହିଁ ସରସ୍ୱତୀ ଓ ସାବିତ୍ରୀ । ବହ୍ନିର ଯେଉଁ ଦାହିକା ଶକ୍ତି, ଦେବତାମାନଙ୍କର ଯେଉଁ ଦେବଶକ୍ତି, ତପସ୍ୱୀମାନଙ୍କର ଯେଉଁ ତପଃଶକ୍ତି, ସେ ସବୁହିଁ ଏହି ଶକ୍ତି । ଏହି ଶକ୍ତିଙ୍କର ବିକାଶ ହେଲେ ଜ୍ଞାନ, ବିଦ୍ୟା, ବୁଦ୍ଧି ବିଶେଷଭାବରେ ବୃଦ୍ଧିପାଏ । × × ଇନ୍ଦ୍ରିୟ-ମାନଙ୍କର ରାଜା ମନ ରୂପ ସିଂହ ତାଙ୍କର ବାହନ, ଅବିଦ୍ୟା ଜାତ ଅସୁର ହିଁ ମହିଷାସୁର । (ନିଗମତତ୍ତ୍ୱ-ପୃ୧୫୮-୧୫୯)

ସେହି ପରମ କରୁଣାମୟୀ ମହାମାୟା ଜଗଜ୍ଜନନୀ ଦୁର୍ଗାଙ୍କ ସ୍ତୁତି କରିବାକୁ ଯାଇ ଦୁର୍ଗା ସପ୍ତଶତୀ, କାଳିକା ପୁରାଣ, ଦେବୀ ପୁରାଣ, ମହାଭାରତର ପୃଷ୍ଠାସବୁ ପବିତ୍ର ହୋଇ ଉଠିଛି । ଶ୍ରୀମଦ୍ ମିଶ୍ର ମହାରାଜାଙ୍କ ଗୋଟିଏ ଲେଖାରୁ ଗୋଟିଏ ଉଦ୍ଧୃତାଂଶ ଦେଇ (ସ୍ୱରାଜ୍ୟ ତା୭.୧୦.୭୦) ଏ ପ୍ରବନ୍ଧର ଉପସଂହାର କରୁଛି ।

"ମତେ ସିଂହବାହିନୀ ବୋଲି କହୁଛ କାହିଁକି ? ସିଂହ ପରି ତୁମର ଶୌର୍ଯ୍ୟ ବୀର୍ଯ୍ୟ ତେଜ ? ଅର୍ଥାତ୍ ତମର ସାହସ ଓ ତମର ଆତ୍ମ ବିଶ୍ୱାସ ? ମୁଁ ତ ତାହାରି ଉପରେ ହିଁ ଅଧିଷ୍ଠିତ । ମୋର ପୂଜା କରିବା ମାନେହିଁ ତମ ଜୀବନଯାତ୍ରାର ପ୍ରତି ଛନ୍ଦରେ ଏସବୁ ଗୁଣର ଅଭ୍ୟୁତ୍ଥାନ । ତମେ ମୋର ପରମାଶକ୍ତିର ତନୟ । ତମର ଦୁର୍ବଳତା ନାହିଁ, ଭୟ ନାହିଁ । ମୁଁ ତୁମର ଅଭୟା, ପରାଜୟ ନାହିଁ; ମୁଁ ତୁମର ବିଜୟା" ।

●

# ଭାରତରେ 'ଦଶହରା'

'ଦଶହରା' ବା 'ନବରାତ୍ରି' ପର୍ବଟି ସମଗ୍ର ଭାରତବର୍ଷରେ ବହୁଳ ଭାବରେ ଜନପ୍ରିୟ । ଏହି ପର୍ବଟି ଦୁର୍ଗାଙ୍କର ମହିଷାସୁର ଉପରେ ବିଜୟ ସୂଚକ ରୂପେ, ଦକ୍ଷିଣରେ 'ନବ ରାତ୍ରି' ପର୍ବ, ଉତ୍ତରରେ 'ଦଶହରା' ଓ ପୂର୍ବର 'ପୂଜା' ପ୍ରଭୃତିରେ ଆଞ୍ଚଳିକ ତାରତମ୍ୟ ଦେଖାଗଲେ ମଧ୍ୟ ଏ ସବୁ ଶାରଦୀୟ ମହା ପାର୍ବଣର ଅନ୍ତର୍ଭୁକ୍ତ ।

ଦେବୀ ଦୁର୍ଗା, ଲକ୍ଷ୍ମୀ ଏବଂ ସରସ୍ୱତୀରୂପେ ଦୀର୍ଘ ନଅ ଦିନ ଧରି ପୂଜା ପାଆନ୍ତି । ଶେଷ ଦଶମୀ ମହୋତ୍ସବଟି 'ବିଜୟା ଦଶମୀ' ନାମରେ ପରିଚିତ ।

ଦେବୀ ଦୁର୍ଗାଙ୍କର ପୂଜୋତ୍ସବ ଭାରତର ଏକ ପ୍ରାଚୀନ ଧର୍ମ ସମ୍ବନ୍ଧୀୟ ପର୍ବ । ଏହା ଭାରତର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ରୂପେ ପାଳିତ । ଯଦିଓ ଏହି ପୂଜା ସର୍ବତ୍ର ପାଳିତ ହୁଏ, ତଥାପି କେବଳ ବଙ୍ଗରେ ମୃତ୍ତିକା ମୂର୍ତ୍ତି ନିର୍ମିତ, ପୂଜିତ ଓ ଶେଷରେ ଜଳମଗ୍ନ କରାଯାଏ ।

ଏହି ଦୁର୍ଗାପୂଜାର ମୌଳିକ ତଥ୍ୟ ଓ ଏହାର ଆତ୍ମପ୍ରକାଶ ରହସ୍ୟାବୃତ । ତାହିର ପୁରର ରାଜା କଂସ ନାରାୟଣ "ରାଜସାହି" ଜିଲ୍ଲାରେ (ବର୍ତ୍ତମାନ ଏହା ସ୍ୱାଧୀନ ବଙ୍ଗଳା ଦେଶରେ) ରାଜୁତି କରୁଥିଲେ ସେ ମୋଗଲ ଶାସକ ମହାନୁଭବ ଆକବରଙ୍କ ରାଜତ୍ୱ କାଳରେ ୧୫୮୦ ଖ୍ରୀ. ଅ. ରେ ଦେବୀଙ୍କର ମୂର୍ତ୍ତି ତିଆରି କରି ବଙ୍ଗ ଦେଶରେ ଏହି ପୂଜାର ପ୍ରଚଳନ କରାଇଥିଲେ । କଂସ ନାରାୟଣ କୁଲ୍ଲୁକ ଭଟ୍ଟଙ୍କର ପୁତ୍ର ଏବଂ ରାଜା ଉଦୟ ବର୍ମନ୍‌ଙ୍କର ନାତି । ସେହି ରାଜା କଂସ ନାରାୟଣ ରାଜୋପାସକ ପଣ୍ଡିତ ରମେଶ ଶାସ୍ତ୍ରୀଙ୍କ ସହିତ ଶାସ୍ତ୍ର ବର୍ଣ୍ଣିତ ବିଶ୍ୱଜିତ୍ ଯଜ୍ଞ, ରାଜସୂୟ ଯଜ୍ଞ, ଅଶ୍ୱମେଧ ଯଜ୍ଞ ଓ ଗୋମେଧ ଯଜ୍ଞ ସମ୍ବନ୍ଧରେ ଆଲୋଚନା କରିଥିଲେ । ଉପାସକଙ୍କ ଠାରୁ ଦୁର୍ଗାପୂଜା ଯେ ସବୁ ଯଜ୍ଞର ପ୍ରତିନିଧି ଏ ଧାରଣା ଲାଭ କରିଥିଲେ । ଏ କଳିଯୁଗରେ ଏହାକୁ କରିବା ଅସମ୍ଭବ ବୋଲି ଉପାସକ ମତ ଦେଇଥିଲେ । ନଅଲକ୍ଷ ମୁଦ୍ରାର

ଜନ୍ମସୂତ୍ରରେ ପ୍ରଥମ ଦୁର୍ଗାପୂଜା ବଙ୍ଗ ଦେଶରେ କଂଷ ନାରାୟଣଙ୍କ ନେତୃତ୍ୱରେ ଆରବ୍ଧ ହେଲା ।

ବଙ୍ଗରେ ମାତୃରୂପିଣୀ ଦୁର୍ଗାଙ୍କ ଲାଗି 'ଆଗମନୀ-ଗୀତିକା' ବା ସ୍ୱାଗତ ସଙ୍ଗୀତର ପ୍ରଚଳନ ରହିଛି । ଏହି ପର୍ବ ମାଧ୍ୟମରେ ପାରିବାରିକ ବନ୍ଧୁ-ମୁଖ ଦର୍ଶନ ଏବଂ ନୂତନ ବାନ୍ଧବ ଲାଭର ସୁଯୋଗ ମିଳିଥାଏ ।

ମହୀଶୂର ରାଜ୍ୟରେ ୧୯୧୦ ଖ୍ରୀ. ଅ. ଠାରୁ ଦୁର୍ଗାପୂଜା କ୍ରମାଗତ ଭାବେ ପାଳିତ ହୋଇ ଆସୁଛି । ତଦାନୀନ୍ତନ ଶାସକ ରାଜା ଉଦୟପୁର ରାଜକୀୟ ଢଙ୍ଗରେ ଏହି ମହୋତ୍ସବ ପ୍ରଥମେ ପାଳନ କରିଥିଲେ ଏବଂ ସେହିଦିନଠାରୁ ଏହା ନିରନ୍ତର ପାଳିତ ହେଉଛି । ଦୁର୍ଗାପୂଜାର ପ୍ରତ୍ୟେକ ଦିବସର ସନ୍ଧ୍ୟାରେ ରାଜା ସ୍ୱରାଜବାଟୀରେ ଏକ 'ଦରବାର' ଆହ୍ୱାନ କରନ୍ତି । ଦୀର୍ଘ ୧୦ଦିନ ପର୍ଯ୍ୟନ୍ତ ଭାରତର ବିଭିନ୍ନ ପ୍ରାନ୍ତରୁ ଦର୍ଶକବୃନ୍ଦ ବହୁ ସଂଖ୍ୟାରେ ଆଗମନ କରନ୍ତି । ସମଗ୍ର ପ୍ରାସାଦ ଦୀପ୍ତିମନ୍ତ ପ୍ରଦୀପମାଳାରେ ଆଲୋକିତ ହୋଇଉଠେ । ନବମ ଦିବସରେ ଖଡ୍‌ଗ ସମୂହ ପୂଜିତ ହୁଏ । ଖଣ୍ଡା ସବୁ ପାରମ୍ପରିକ ରୀତିରେ ଗୋଟିଏ ସଜ୍ଜିତ ପାଲିଙ୍କିରେ ରଖାଯାଏ ଓ ଅଳଙ୍କାର ଭୂଷିତ ବଳଦମାନେ ଏହାକୁ ଟାଣନ୍ତି । ଦଶମ ଦିବସର ସାୟଂକାଳରେ ବିରାଟ ଶୋଭାଯାତ୍ରାରେ ପୂଣ୍ୟ ପର୍ବଟି ଉଦ୍‌ଯାପିତ ହୁଏ

ଦିଲ୍ଲୀ ନଗରୀରେ 'ରାମଲୀଳା'ର ପ୍ରତିରୂପ ନେଇ ଦଶହରା ପାଳିତ ହୁଏ । ମୂର୍ତ୍ତି ରାମାୟଣର ଅଭିନୟ ମଞ୍ଚୋପଯୋଗୀ କରାଯାଏ ଏବଂ ଦଶମ ଦିନ ରାବଣ ଓ ଅନ୍ୟାନ୍ୟ ସହଚର ଦାନବମାନଙ୍କର ବିରାଟ ପ୍ରତିମୂର୍ତ୍ତି· ଗୁଡ଼ିକୁ ଦଗ୍‌ଧ କରି ଦିଆଯାଏ । ନିଶିଥିନୀର ମଧୁର ପରିବେଶକୁ ଆଲୋକ ମାଳାରେ ଦିବସ ସମ ଉଦ୍ଭାସିତ କରି ଦିଆଯାଏ ଏବଂ ସେହି ମଞ୍ଜୁଳ ବାତାବରଣ ମଧ୍ୟରେ ଆତସବାଜି ବ୍ୟବହୃତ ହୁଏ ।

ମହାରାଷ୍ଟ୍ରରେ ବିଜୟା ଦଶମୀ ଦିନ ଶମୀ ନାମକ ଗଛକୁ ପୂଜା କରାଯାଏ । ଏହି ଗଛର ପତ୍ରକୁ ମଧ୍ୟ ପବିତ୍ରଭାବେ ଗୃହକୁ ନେଇ ଦିଆଯାଏ ।

ମାନ୍ଦ୍ରାଜରେ ସବୁ ହିନ୍ଦୁ ପରିବାର ଧାଡ଼ି ଧାଡ଼ି କରି ମୃଣ୍ମୟ ମୂର୍ତ୍ତି ସବୁ ସଜାଇ ରଖନ୍ତି ଏବଂ ନଅଦିନ ଧରି ସୁପାରି, ହଳଦୀ ଓ କୁଙ୍କୁମ ପ୍ରଭୃତି 'ସୁମନ ଗାଳସ'ଙ୍କ ମଧ୍ୟରେ ବିତରଣ କରାଯାଏ । ଏଠାରେ ଶକ୍ତି କୁମାରୀ ଓ ସୁବାସିନୀରୂପେ ପୂଜିତା ହୁଅନ୍ତି । ଲଳିତା ସହସ୍ରନାମ ଏଠାରେ

ନଅଦିନ ଧରି ଘୋଷିତ ହୋଇଥାଏ । ଭଗବାନ ହୟଗ୍ରୀବଙ୍କ ମତାନୁସାରୀ ସହସ୍ର ନାମ ମଧ୍ୟରୁ ଦୁର୍ଗାଙ୍କ ଏହି ଦଶନାମ ସର୍ବୋତ୍କୃଷ୍ଟ । ସେଗୁଡ଼ିକ ହେଲା—ଗଙ୍ଗା, ଭବାନୀ, ଗାୟତ୍ରୀ, କାଳୀ, ଲକ୍ଷ୍ମୀ, ସରସ୍ୱତୀ, ବାଳକି ପୁର ସୁନ୍ଦରୀ, ଶ୍ୟାମଳା, ବରାହୀ ଓ ଲଳିତା । ସହସ୍ରନାମ ମଧ୍ୟରୁ ଏହି ଦଶନାମ ମଧ୍ୟରେ ପୁଣି 'ଲଳିତା' ନାମ ସର୍ବୋତ୍ତମ ।

କେତେକ ଅଞ୍ଚଳରେ ସଙ୍ଗୀତ ପରିବେଷଣ କରାଯାଏ । 'କୁଲ୍ଲୁ'ରେ ନୃତ୍ୟ ଉପରେ ଗୁରୁତ୍ୱ ଦିଆଯାଏ । ଚିତ୍ତାକର୍ଷକ ନୃତ୍ୟର ଆକର୍ଷଣ ଏଠାରେ ଲବ୍ଧ ହୁଏ । ଏହି ପାଳନ ମଧ୍ୟରେ 'ରାମ' ଅଧିଷ୍ଠ ଦେବତା ଅଟନ୍ତି ।

ଆଦିବାସୀ ବହୁଳ କ୍ଷେତ୍ରରେ ମଧ୍ୟ ଦୁର୍ଗାଙ୍କର ଭୂମିକା ତାତ୍ପର୍ଯ୍ୟ-ପୂର୍ଣ୍ଣ । ଓଡ଼ିଶାର ଗଞ୍ଜାମ ଓ କୋରାପୁଟର ପାହାଡ଼ିଆ ଶବରମାନେ ଦୁର୍ଗା ଦେବୀଙ୍କୁ ପୂଜା କରନ୍ତି ।

ଜୟପୁରରେ ଏହି ପର୍ବ ଷୋହଳ ଦିନ ପର୍ଯ୍ୟନ୍ତ ପାଳିତ ହୁଏ । ନିର୍ଦ୍ଦିଷ୍ଟ ରୂପେ ସେଠାରେ ମନ୍ଦିର ମଧ୍ୟରେ କନକ ଦୁର୍ଗାଙ୍କର ଆରାଧନା କରାଯାଏ । ମଧ୍ୟ ପ୍ରଦେଶର ବସ୍ତର ଅଞ୍ଚଳରେ ଦେବୀ ଧନ୍ତେଶ୍ୱରୀଙ୍କୁ ଅନ୍ତରତମ ଭକ୍ତି ଅର୍ପଣ କରାଯାଏ । ଦଶହରାର ପାଞ୍ଚଦିନ ପରେ କୁମାର କୁମାରୀଙ୍କ ପ୍ରାଣକୁ ଉଦ୍ବେଳିତ କରି ଓଡ଼ିଶା ବକ୍ଷରେ ଅବତୀର୍ଣ୍ଣ ହୁଏ 'କୁମାର ପୂର୍ଣ୍ଣିମା' । ପ୍ରାଚୀନ ଶାସ୍ତ୍ରରେ ଏହା କୌମୁଦୀ ମହୋତ୍ସବ ନାମରେ ପରିଚିତ । ଏହା ଉତ୍କଳୀୟ ପର୍ବମାନଙ୍କ ମଧ୍ୟରେ ଏକ ବିଶିଷ୍ଟ ସ୍ଥାନ ଗ୍ରହଣ କରେ ।

ଏହିପରି ଭାବେ ଭାରତ ବକ୍ଷରେ ଆମର ପୁଣ୍ୟପର୍ବ ଦଶହରା ଭାରତୀୟଙ୍କୁ ପୁଲକିତ କରି ବିଦାୟ ନେଇଯାଏ । ଏହା ଆମ ଭାରତୀୟ-ମାନଙ୍କର ଅତୀତ ଗୌରବକୁ ଦେଖାଇ ଦିଏ । ଆମେ ଏହିଠାରୁ ପ୍ରେରଣାପ୍ରାପ୍ତ ହୋଇ ମଙ୍ଗଳବିଧାୟିନୀ ମାତାଙ୍କ ନିକଟରେ ଅନ୍ତରର ନିବେଦନ ଜଣାଇ ତାଙ୍କର ଆଶୀର୍ବାଦ ଆଶାୟୀ ହୋଇ ଉଠୁ ।



[ 'ଭବନସ୍ ଜର୍ଣ୍ଣାଲ୍'ରେ ପ୍ରକାଶ ପାଇଥିବା (ଅକ୍ଟୋବର ୭୪) S. Natarajan ଙ୍କ ଲେଖା Dassera Festival in India ଲେଖାର ମର୍ମାନୁବାଦ । ]

# କୁମାରସମ୍ଭବର ପୌରାଣିକ ପୃଷ୍ଠଭୂମି

ବୃହସ୍ପତ୍ୟାଦି ଦେବତାଗଣ, ବ୍ରହ୍ମାଙ୍କୁ ନିବେଦନ କରି କହିଲେ, "ହେ ସୃଷ୍ଟିକର୍ତ୍ତା ଶଶଧର ତାଙ୍କର ପୂର୍ଣ୍ଣଷୋଳକଳାରେ ତାରକାସୁରକୁ ଚନ୍ଦ୍ରିକା ଜାଲରେ ଆହ୍ଲାଦିତ କରୁଛନ୍ତି, ଗନ୍ଧବହ ମନ୍ଦଗତିର ଧରି 'ତାରକା' ପାର୍ଶ୍ୱରେ ପଙ୍ଖାସଦୃଶ ଆଚଯାତ । ଋତୁ ସକଳ କ୍ରମପର୍ଯ୍ୟାୟରେ ଅସୁରକୁ ସୁରଭିତ କୁସୁମାବଳୀରେ ଅଭିନନ୍ଦନ ଜଣାଉଛନ୍ତି । ଜଳନିଧି ବରୁଣ ତାରକାଙ୍କୁ ବହୁ ବହୁ ମଣିମୁକ୍ତା ଉପହାର ଦେଇ ସନ୍ତୁଷ୍ଟ କରିବା ନିମନ୍ତେ ସର୍ବଦା ଜଳାଶ୍ରୟୀ । ସର୍ପରାଜ ବାସୁକୀ ଭୟରେ ତାରକାପୁରରେ ବିନିଦ୍ର ରଜନୀ ରହି ତାଙ୍କ ମଣିଭୂଷିତ ଫଣୀ ବନ୍ଧୁଙ୍କ ଗହଣରେ ସର୍ବଦା ଆଲୋକ ଦାନ କରୁଛନ୍ତି; ଏପରିକି ଇନ୍ଦ୍ର ତାରକାର ତୁଷ୍ଟି ସାଧନ ନିମନ୍ତେ କଳ୍ପତରୁ ପ୍ରଦତ୍ତ ବିଶେଷ ଉପହାରମାନ ତାହା ନିକଟକୁ ପଠାଉଛନ୍ତି । ନନ୍ଦନକାନନ ଏବେ ବିଶ୍ରୀ, ସ୍ୱର୍ଗସୁଷମା ଆଜି ବ୍ୟସ୍ତ । ଅପ୍ସରାଗଣ ଏବେ ତାରକାର କେଳିପୁରରେ ଚାମର ବ୍ୟଜନ କରୁଛନ୍ତି । ଅଷ୍ଟଦିଗ୍‌ଗଜଙ୍କର ଚପଳ ମଦକ୍ରୀଡ଼ା ଜନିତ ମନ୍ଦାକିନୀର ଆବିଳ ଜଳ ରହିଛି, ମାତ୍ର ସୁରନଦୀର ସେ ସ୍ୱର୍ଣ୍ଣପଦ୍ମ ସବୁ ଅସୁରହାତ ଉତ୍ପାଟିତ ହୋଇ ତାହାର ଉଦ୍ୟାନ କୂପରେ ବୃକ୍ଷରୋପିତ ହେବା ପରି ସ୍ଥାନ ପାଇଛି । ବିରାଟ ବପୁସ୍ଥାନ ଉଚ୍ଚୈଃଶ୍ରବା ଅଶ୍ୱ ଆଜ ନାହିଁ । ମାତ୍ର ଶ୍ୱେତାଙ୍ଗ ଐରାବତ ରହିଛି, କାରଣ ଅସୁରର ଗଜଠାରୁ ଏ ନିକୃଷ୍ଟ । ଏଣୁ ଏହା ତା' ପକ୍ଷରେ ଅଦରକାରୀ ।" ବ୍ରହ୍ମା କହିଲେ, "ହେ ଆର୍ତ୍ତ, ସନ୍ତପ୍ତ ଦେବଗଣ, ଦୁଃଖ କର ନାହିଁ, ସ୍ୱହସ୍ତରୋପିତ ବୃକ୍ଷ ମୁଁ କିପରି ନିଜେ ଛେଦନ କରିବି ? ତାରକାସୁରର ଅଦୃଷ୍ଟପୂର୍ବ ତପସ୍ୟାର ଫଳ ଏ । ସେ ତ୍ରିପୁରବିଜୟୀ ହେବାକୁ ବର ମାଗିଥିଲା । ନଚେତ୍ ସାରା ସୃଷ୍ଟି ସେ ତାର ତପଃ ପ୍ରଭାବରେ ନଷ୍ଟ କରିଥାନ୍ତା । ମହାଯୋଗୀ ଶିବବୀର୍ଯ୍ୟ ସମ୍ଭୂତ ସନ୍ତାନ ହିଁ ଅସାଧାରଣ ସେନାପତିତ୍ୱ ନେଇ ଦେବ-ଦାନବ ଯୁଦ୍ଧରେ ତାରକାସୁରକୁ ନିଧନ କରିବ । ଏଣୁ

ତୁମ୍ଭେମାନେ ଧ୍ୟାନରତ ଶିବରୂପୀ ଲୌହ ସହ କୋମଳାଙ୍ଗୀ ପର୍ବତ କନ୍ୟା ପାର୍ବତୀ ରୂପୀ ଚୁମ୍ବକକୁ ସଂଯୋଗ କରିବାର ବା ଆକୃଷ୍ଟ ହେବାର ବ୍ୟବସ୍ଥା କର । ଶିତିକଣ୍ଠ ଶିବଙ୍କର ସେଇ ଆତ୍ମଭୂ ତୁମର ସେନାପତିତ୍ୱ କରିବ ଓ ସୁରବନ୍ଦୀମାଙ୍କର ବେଣୀ ଉନ୍ମୋଚନ କରିବ ।

‘ତସ୍ୟାତ୍ମା ଶିତିକଣ୍ଠସ୍ୟ
ସୈନ୍ୟା ପତ୍ୟ ମୁ୨ପେତ୍ୟ ବାଃ
ମୋକ୍ଷତେ ସୁରବନ୍ଦୀନାଂ
ବେଣୀ ବୀର୍ଯ୍ୟ ବିଭୂତି-ଭିଃ’

[ କୁମାର ସମ୍ଭବ—୨ୟ ସର୍ଗ ]

ସେଇ ପୂର୍ବକଳ୍ପିତ ତାରକାରିପୁ ଶିବଙ୍କ ଅମୋଘ ରେତର ଆଶ୍ରୟ ନେଲେ । ପର୍ବତ ନନ୍ଦିନୀ ସେ ଅକ୍ଷୟରେତ ଧାରଣ କରିବାକୁ ଅକ୍ଷମା ହେବାରୁ ଶିବଙ୍କ ନିର୍ଦ୍ଦେଶରେ ବାୟୁଦେବତା ତା'ର ଦାୟିତ୍ୱ ନେଲେ । ସମସ୍ତଙ୍କର ଶ୍ରଦ୍ଧା ଓ ଆଗ୍ରହପୂର୍ଣ୍ଣ ଠୁଳୀଭୂତ ଚକ୍ଷୁ ତାକୁ ଜଗି ରହିଲ । କାରଣ ପୃଥିବୀର ଭାର ନିବାରଣ ହେବ, ଦେବତାଙ୍କର କାମନା ପୂର୍ଣ୍ଣ ହେବ, ସେନାନୀ ଜନ୍ମିବେ ।

ଶରତ୍ ସୁନ୍ଦରୀ ପଦାର୍ପିଲ । ମେଘ ବିମୁକ୍ତ ଆକାଶରେ ଆଜ ଧଳାବାଦଲର ସଞ୍ଚାର, ଗନ୍ଧବହ ଉଡ଼ିଲା, ଚତୁର୍ଦ୍ଦିଗରେ ମଧୁ ମହୋତ୍ସବର ଅଫୁରନ୍ତ ଆସର । ଛ'ଟି ଦେବକନ୍ୟା ସ୍ନାନାର୍ଥିନୀ ଏହାର ଏକ ଚମତ୍କାର ବର୍ଣ୍ଣନା ଦିଆଯାଇଛି, ଭକ୍ତକବି ଅଚ୍ୟୁତାନନ୍ଦ ଦାସଙ୍କ ରଚିତ ଓଡ଼ିଆ ‘ହରିବଂଶର’ ବିଷ୍ଣୁ ଖଣ୍ଡରେ । ସେ ଷଡ଼କୁମାରୀଙ୍କର ବୟସ ପୁଣି କଅଁଳ, ସମସ୍ତେ ଅବିବାହିତା, କୁମାରୀ, ସେମାନେ ହେଲେ—

‘ବରୁଣ କନ୍ୟା କରୁଣା ନାମରେ ଯେ ଜେମା,
ଇନ୍ଦ୍ରରେଖା ନାମରେ ଦୁଲଣୀ ଅନୁପମା ।
ଇନ୍ଦ୍ର ଦେବର ଦୁହିତା ଅରବିନ୍ଦଲୋଚନୀ,
ଚନ୍ଦ୍ରଙ୍କ ଦୁହିତା ନାମ ସୀତାଂଶୁମାଳିନୀ ।
ଆଦିତ୍ୟ ଦୁହିତା ନାମ ଜ୍ୟୋତି ଯୋଗବତୀ,
ସଖୀ ମେଳରେ ସରବେ ସ୍ନାହାନ କରନ୍ତି ।’’

ଶରତ ଋତୁର ଶେଷ କାଳ । ସାମାନ୍ୟ ଶୈତ୍ୟର ପରଶ ତାଙ୍କୁ ସେଦିନ ବ୍ୟତିବ୍ୟସ୍ତ କଲା । କୃତ୍ତିକାଗଣ କେଶବାସ ଉନ୍ମୁକ୍ତ କରି ବିବସନା ହୋଇ ରୋମଞ୍ଚାଙ୍କୁରିତ ଅବସ୍ଥାରେ ଜ୍ୱଳମାନ ଅଗ୍ନି ଚତୁଃପାର୍ଶ୍ୱରେ ବସିଲେ । ବାୟୁ ଦେବତା ଏହାକୁ ଶୁଭଲକ୍ଷଣ ଜାଣି ଅଗ୍ନି ମଧ୍ୟରେ ବ୍ରହ୍ମରେତକୁ ନିକ୍ଷେପ କଲେ ଓ ତା' ପରେ ପରେ ବାୟୁ ସଂଘାତରେ ତାହା ସବୁ କନ୍ୟାମାନଙ୍କ ଗର୍ଭ କମଳରେ ସ୍ଥାନ ପାଇଲା । କ୍ରମେ କନ୍ୟାଏ ଗର୍ଭବତୀ ହେଲେ । ଅବିବାହିତା ଅବସ୍ଥାରେ ଏ ପ୍ରକାର ବିପ୍ଳାକଳାପରେ ସନ୍ତ୍ରସ୍ତା ହୋଇ ସମସ୍ତେ ମନ ଭରି ଉଦ୍‌ଗାର କରିବାକୁ ଲାଗିଲେ । ତଳେ ଝୀନବସ୍ତ୍ର ପାରି ପଦ୍ମପତ୍ର ବିଛାଇ ଛ'ଟି ବାଳକଙ୍କୁ ଏକତ୍ର ପୋଟଳାରେ ରଖିଲେ । ଉପରେ ପଦ୍ମପତ୍ର ଗୁଡ଼ାଇ ସରୋବର ମଧ୍ୟକୁ ନିକ୍ଷେପ କଲେ । ମାତ୍ର ଦୈବବଶରେ ସେ ଷଡ଼ଅଙ୍ଗ ଏକତ୍ର ରୂପ ଧାରଣ କଲା । ଷଡ଼ମୁଣ୍ଡ ଓ ଦ୍ୱାଦଶ ଭୁଜବିଶିଷ୍ଟ ନବଜାତ ପୁତ୍ର ଏକା ପାଦ ପ୍ରହାରରେ ସେ ପୋଟଳାକୁ ଭାଙ୍ଗିଲେ । ସେନାପତି ଜନ୍ମିଲେ ।

ଚାରିଆଡ଼େ ଜୟଶଙ୍ଖ ବାଜି ଉଠିଲା । ନାରଦ ମୁନି ବେଦଧ୍ୱନି, ଅପ୍‌ସରା ନର୍ତ୍ତନ, ଗନ୍ଧର୍ବ ଗାୟନରତ ହେଲେ । ସ୍ଥାବର, କୀଟପତଙ୍ଗ ସମସ୍ତଙ୍କ ମନରେ ଅଜଣା ପୁଲକ ଦେଖାଗଲା । ସ୍ୱର୍ଗରୁ ପୁଷ୍ପବୃଷ୍ଟି ହେଲା । ପରକାଶ ଜନ୍ମିଲେ, ସ୍ୱର୍ଗରେ ଦେବତାଗଣ ଜୟ ଜୟ ଧ୍ୱନି ମାଧ୍ୟମରେ ତାଙ୍କ ନାଆଁ ଦେଲେ 'କୁମାର' । ମୟୂର ତାଙ୍କର ବାହନ ।

କୁମାର ପୂର୍ଣ୍ଣିମାକୁ କେତେକ 'କୋଜାଗରୀ ପୂର୍ଣ୍ଣିମା' ବୋଲି କହନ୍ତି । ପୁରାଣ ଅନୁଯାୟୀ ଏ ଦିନ କୁମାର ଜନ୍ମିଥିବାରୁ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଚାରି ଜାତି ସମସ୍ତେ ଆନନ୍ଦ ମନରେ ରାତି ଉଜାଗର ହୋଇ ନାନାଦି ଖେଳ ଖେଳିଥିଲେ । ଉଚାଟ ମନରେ ଜୁଆଖେଳିବା ବିଧି ମଧ୍ୟ ଏବେ ବି ବହୁ ଅଞ୍ଚଳରେ ଦେଖାଯାଏ । ଅବଶ୍ୟ ଏହାର ପ୍ରଚ୍ଛନ୍ନ ସ୍ୱାସ୍ଥ୍ୟ ନୀତି ରହିଛି । ତଥାପି ରାତି ଉଜାଗରରେ ସେ ପୂର୍ବର ପୌରାଣିକ ପୃଷ୍ଠଭୂମି ସହ ଶାରଦୀୟ ପ୍ରକୃତିର ଅନବଦ୍ୟମୟ ଶୋଭା-ମାଧୁରୀ ମଧ୍ୟ ଯୁବକଯୁବତୀ, ପ୍ରୌଢ଼ ବୃଦ୍ଧ ସମସ୍ତଙ୍କୁ ବିହ୍ୱଳ କରେ । ପୁରାଣରେ ଲେଖାଅଛି—

'ଯହୁଁ ଜନ୍ମିଲେ କୁମାର ନାମେ ଆଦି ପାଟ,
ଉଜାଗର ହେଲେ ସର୍ବେ ଲଭିଣ ଉଚାଟ ।

ଥୋକାଏକ ଲୋକମାନେ ଜୁଆଖେଳ ଖେଳ,
ଥୋକାଏ ଏକ ସ୍ଥାନରେ ବସି କଲେ କେଳ ।
ଥୋକାଏ ଦେବ ପୂଜନ୍ତି ଥୋକେ କର ଜପ,
ଥୋକେ ନୃତ୍ୟଗୀତ ଥୋକେ କରନ୍ତି ଆଳାପ ।'

(ହରିବଂଶ—ବିଷ୍ଣୁ ଖଣ୍ଡ)

ଏହି କୌମୁଦୀ ଜାଗର ଉତ୍ସବ ବା କୋଜାଗର ଉତ୍ସବରେ ରାତି ଜାଗରଣ ରହିବା ମୂଳରେ ଅନ୍ୟ ଏକ ଶାସ୍ତ୍ରବାଣୀ ଦୃଷ୍ଟିକୁ ଆସେ । ତାହା ହେଉଛି—ଏହି କୁମାର ପୂର୍ଣ୍ଣିମା ଦିନ 'ଲକ୍ଷ୍ମୀପୂଜା' ମଧ୍ୟ ହୁଏ । କେତେକ ଶାସ୍ତ୍ର ମତରେ ଏ ଦିନଟି ଲକ୍ଷ୍ମୀଜନ୍ମ ଉତ୍ସବକୁ କେନ୍ଦ୍ରକରି ଗଢ଼ି ଉଠିଛି । ଲକ୍ଷ୍ମୀଦେବୀ ଏହି ଆଶ୍ୱିନ ମାସର ପୂର୍ଣ୍ଣିମା ରାତିରେ ବରଦାୟିନୀ ବେଶରେ ଜଗତରେ ବିଚରଣ କରନ୍ତି ଏବଂ ଯେଉଁ ବ୍ୟକ୍ତି ଏହି ରାତିଟି ଅକ୍ଷକ୍ରୀଡ଼ା ଦ୍ୱାରା ଉଜାଗର ରହି କଟାଇବ, ତାହାକୁ ସେ ବିତ୍ତ ପ୍ରଦାନ କରନ୍ତି । ଏଣୁ ଏ ଦିନ ଭକ୍ତିପୂର୍ଣ୍ଣ ହୃଦୟରେ ଲକ୍ଷ୍ମୀପୂଜନ ସହ ରାତିରେ ନାରିକେଳ ଓ ଚିପିଟକ ଦ୍ୱାରା ଦେବଗଣଙ୍କୁ ଅର୍ଚ୍ଚନା କରିବାକୁ ହୁଏ । ବଙ୍ଗୀୟମାନେ ଏହି ଉତ୍ସବକୁ ନିଷ୍ଠା ସହକାରେ ବେଶି ପାଳନ କରନ୍ତି । କାରଣ ଲେଖାଅଛି—

ନାରିକେଳ ଚିପିଟକୈଃ ପିତୃନ୍
ଦେବାନ୍ ସମର୍ଚ୍ଚୟେତ୍
ବନ୍ଧୁଷ୍ଟ ପ୍ରୀଣୟେତ୍ତେନ
ସ୍ୱୟଂ ତେଶନୋଭବେତ୍ ।"

ପୁରୋହିତ ଦର୍ପଣ-ବଙ୍ଗଳା)

ଲିଙ୍ଗ ପୁରାଣରେ ମଧ୍ୟ ଅନୁରୂପ ଉଲ୍ଲେଖ ଦେଖାଯାଏ ।

"ନାରିକେଳୋଦକଂ ପୀତ୍ୱା
ଅକ୍ଷୈ ର୍ଜାଗରଣଂ ନିଶି
ତସ୍ମୈ ବିତ୍ତଂ ପ୍ରଯଚ୍ଛାମି
କୋ ଜାଗର୍ତ୍ତି ମହୀତଳେ ।"

କୁମାରୀ ମନକୁ ଉତଳା କରି, ପଦ୍ମ କୁମୁଦ କହ୍ଲାର ତନୁ ମନରେ ନୂଆ ଯଉବନର ପରଶ ମାଖି, ହଂସ କାରଣ୍ଡବର ଅଳସ

ପଦରେ ନୂପୁର ଲଗାଇ କବି କଳ୍ପନାରେ ପଶୁ ରାଇଜର ଡେଣା ଲଗାଇ ଯୁଗେ ଯୁଗେ ଏହି କୁମାର ପୂନେଇ ଆସୁଛି—ଶରତର ବହୁମୁଖୀ ଚମତ୍କାରିତା ମଧ୍ୟରେ କୁଆଁରୀ ଜନ୍ମ ଯୁବପ୍ରାଣକୁ ହୃତ୍‌ଥଳ କରେ, ପ୍ରାଣରେ ଉନ୍ମାଦନା ଭରିଦିଏ,ଅଙ୍କରିକୁ କବି କରେ, ପଲ୍ଲୀ କିଶୋର କଣ୍ଠକୁ ମଧୁସ୍ରାବୀ କରାଏ । ତା'ର ଚନ୍ଦ୍ରଉଦିଆ ବର ଦରକାର । ଫଳରେ ଚନ୍ଦ୍ରରୂପୀ ସୁନ୍ଦର-ତାର ପ୍ରତୀକ ସ୍ୱାମୀ ଜୀବନ ବନ୍ଧୁର ସେ ଇଙ୍ଗିତ ଦିଏ । 'ପୁଚିଲେ · ଯା' ଯା'ରୁ ଘୁଞ୍ଚି ଲେ' ଛଳରେ ସେ ପୁଚିଖେଳ ତା'ର ସୁଠାମ ଅଙ୍ଗଦେଶକୁ ସ୍ୱାମୀ ଅନଙ୍ଗ କ୍ରୀଡ଼ା ଉପଯୋଗୀ ସୁସ୍ଥ ସବଳ କରିବା ସଙ୍ଗେ ସଙ୍ଗେ ସ୍ୱାମୀ ଜନ୍ମଦାତ୍ରୀର ଆସନ ଦଖଲ କରିବାର ସୂଚନା ଦିଏ । ପଲ୍ଲୀର ଏ 'ପୁଚିଖେଳ' ସଂସ୍କୃତି କ୍ରମଶଃ ଗତାୟୁ ହୋଇ ପଡ଼ୁଛି । ଏହା ମଧ୍ୟ କୁମାରମାନଙ୍କ କ୍ରୀଡ଼ା ଦିବସ ତାସ, ପଶା, ବୋହୂଚୋରି, କଟକଟି ଆଦି ପଲ୍ଲୀସୁଲଭ କ୍ରୀଡ଼ା ଯୁବକପ୍ରାଣକୁ ବିଶେଷତଃ କୁମାର ମନକୁ ଉତ୍ତଳା କରେ । 'ପ୍ରାପ୍ତେ ତୁ ଷୋଡ଼ଶେ ବର୍ଷେ ପୁତ୍ରମିତ୍ର ମିବାଚରେତ୍' ଦୃଷ୍ଟିରୁ ୧୬ ବର୍ଷ ପୂର୍ବର ବୟସ ହିଁ କୁମାର ବୟସ । ଏହି ସମୟରେ କୁମାର କ୍ରୀଡ଼ା ଏକା ସାଜେ । ଖାରବେଳଙ୍କ ଶିଳାଲିପିରେ ମଧ୍ୟ ଐରରାଜା ଖାରବେଳଙ୍କ ଖେଳାଳିଆ କୁମାର ବୟସର ଉଲ୍ଲେଖ ଅଛି — "ଐର ମହାରାଜ ମହା' ମେଘବାହନ ଚେତ ରାଜବଂଶବର୍ଦ୍ଧନ ପ୍ରଶସ୍ତ ଶୁଭ ଲକ୍ଷଣ ଚତୁରନ୍ତ ରକ୍ଷଣଗୁଣ ଉପେତ କଳିଙ୍ଗାଧିପତି ଶ୍ରୀ କଡ଼ାର ଶରୀରଶାଳୀ ଶ୍ରୀ ଖାରବେଳଙ୍କ ଦ୍ୱାରା ପନ୍ଦରବର୍ଷ ପର୍ଯ୍ୟନ୍ତ କ୍ରୀଡ଼ିତ ହେଲା କୁମାରକ୍ରୀଡ଼ା ।" ଏଣୁ ଏହା କୁମାରୋତ୍ସବ ନାମରେ ବିଦିତ ହେବାରେ କୌଣସି ଅଯଥାର୍ଥତା ନାହିଁ ।

ମୋଟ ଉପରେ କୁମାରୋତ୍ସବ ଆନନ୍ଦର ଏକ ଭିତ୍ତିଭୂମି ଉପରେ ଦଣ୍ଡାୟମାନ । 'କୁମାର'ଙ୍କ ସୌନ୍ଦର୍ଯ୍ୟ ଓ ବୀରତ୍ୱର ସ୍ମୃତି ସ୍ମରଣ ହିଁ ଏ ପର୍ବର ପ୍ରଚ୍ଛନ୍ନ ପୃଷ୍ଠପଟ । କାର୍ତ୍ତିକେୟଙ୍କ ସତରଟି ନାମ ମଧ୍ୟରୁ କୁମାର ନାମ ଅନ୍ୟତମ ଓ କୁମାର ହିଁ ସକଳ ସୌନ୍ଦର୍ଯ୍ୟର ପ୍ରତୀକ । ଏଣୁ ଦେଶର କୁମାରକୁମାରୀମାନେ ସୌନ୍ଦର୍ଯ୍ୟ ଓ ବୀରତ୍ୱର ଅଧିକାରୀ ଓ ଅଧିକାରିଣୀ ହୋଇ ରହି ଜାଗରଣ ରହୁ ଚିତ୍ତସଂଯମ ସହ ନିଷ୍ଠା ଓ ମନର ବଳକୁ ଦୃଢ଼ କରନ୍ତୁ ।

ଏବେ ବରଷକ ପରେ ପୁଣି ଯୁବଗୋଷ୍ଠୀ ମଧ୍ୟରେ ଅଜଣା ପୁଲକ ଓ ଉନ୍ମାଦନା ସୃଷ୍ଟିକରି ଭାରତୀୟ ସାଂସ୍କୃତିକ ଚେତନାର ବାର୍ତ୍ତାବହ ଜାତୀୟପର୍ବ କୁମାରୋତ୍ସବ ଆସିଛି । କାଳେ କାଳେ ଏହିପରି ଭାରତୀ ଓ ସୌନ୍ଦର୍ଯ୍ୟର ଇଙ୍ଗିତଧର୍ମୀ କୁମାରପୂର୍ଣ୍ଣିମା ଆସୁଥାଉ ଓ ସ୍ୱବଗ୍ଧ ଚନ୍ଦ୍ରାମଣି ଧଚପ୍ଷିତା ଅଭିମନ୍ୟୁଙ୍କ ନିଂଶ ସୁନ୍ଦର 'ରତ୍ନମୁଖଜାତଷ୍ଠି ନଶିମଞ୍ଜୁଳ' ସମସ୍ତଙ୍କ ତନୁମନରେ ଆନନ୍ଦ ଉନ୍ମାଦନା ଖେଳାଉ ଥାଉ ।



[ ସ୍ୱରାଜ୍ୟ—୪.୧୦.୭୧ରେ ପ୍ରକାଶିତ ]

# ମୟୂର ପୂଜା

ମୟୂର ଭାରତର ଜାତୀୟ ପକ୍ଷୀ । ଏହା ସମ୍ଭବତଃ ତାମିଲ-ନାଡୁର ବାସିନ୍ଦା ସଂସ୍କୃତ ମୟୂରର ମୂଳ ତାମିଲଭାଷାର 'ମୟିଲ'ରୁ ଆସିଥିବାର ଅନୁମାନ । ଭାରତର ଅନ୍ୟ ଯେ କୌଣସି ଅଞ୍ଚଳ ଅପେକ୍ଷା ତାମିଲନାଡୁରେ ପକ୍ଷୀପୂଜାର ପ୍ରଚଳନ ସର୍ବାଧିକ ।

ଦ୍ରାବିଡମାନେ ମୟୂରକୁ 'ଧରଣୀ-ଦେବୀ' ରୂପେ ମାନ୍ୟ କରୁଥିଲେ । ପ୍ରାକ୍ ଇତିହାସ ଯୁଗରେ ଏହି ମୟୂର ଉପାସନା ନିଶ୍ଚୟ ଭାରତରୁ ଅନ୍ୟ ଦେଶକୁ ବ୍ୟାପିଥିଲା । ପ୍ରତ୍ନତତ୍ତ୍ୱବିତ୍ ମାର୍ଶାଲ୍ ଏବଂ ମ୍ୟାକେ ପ୍ରମାଣ କରିଛନ୍ତି ଯେ 'ମୟୂର' ଚିତ୍ର ସବୁ ସିନ୍ଧୁ ଗାଙ୍ଗେୟ ଉପତ୍ୟକାର ମୃଣ୍ମୟପାତ୍ରରେ ଦେଖିବାକୁ ମିଳିଛି ।

ଉତ୍ତରର ଏକ ବିଚ୍ଛିନ୍ନ ଅଞ୍ଚଳ ଓ ମଧ୍ୟ ଭାରତରେ ବାସ କରୁଥିବା ଦ୍ରାବିଡମାନେ ଏହି ପକ୍ଷୀକୁ ପୂଜା କରନ୍ତି । ଗୁଜୁରାଟ୍‌ର ଭିଲଙ୍କ ମଧ୍ୟରେ ଥିବା ମୋରି ବଂଶର ଲୋକେ 'ମୟୂର'କୁ ତାଙ୍କର ଚିହ୍ନ ରୂପେ ଗ୍ରହଣ କରିଛନ୍ତି ଓ ଏହାକୁ ସମୟେ ସମୟେ ଶସ୍ୟ ଅର୍ପଣ କରନ୍ତି । ସେମାନଙ୍କର ବିଶ୍ୱାସଯେ, ମୟୂର ଯାଇଥିବା ରାସ୍ତାରେ ପାଦ ପକାଇବା ଅର୍ଥ ରୋଗକୁ ନିମନ୍ତ୍ରଣ କରିବା । ଯଦି କୌଣସି ସ୍ତ୍ରୀଲୋକ ଏହି ପକ୍ଷୀକୁ ଦେଖେ ତେବେ ତା ମୁହଁକୁ ସାଙ୍ଗେ ସାଙ୍ଗେ ଢାଙ୍କିଦେଇ ପଳାଇଯିବା ଉଚିତ ।

ପକ୍ଷୀଟି 'ଅହିର' ଓ 'ଖାଣ୍ଡା' ମାନଙ୍କ ପକ୍ଷେ ମଧ୍ୟ ପବିତ୍ର । ଆନ୍ଧ୍ର ପ୍ରଦେଶର ଗୋଦାବରୀ ଉପତ୍ୟକାରେ ବାସ କରୁଥିବା 'କୋଇ' ଜାତି-ମାନେ ଯେତେବେଳେ ବସନ୍ତ ରୋଗର ଠାକୁରାଣୀ 'ସିନ୍ଦେମାତା' ବା 'ମାରୟ୍ମା'ଙ୍କ ଉପାସନା କରନ୍ତି, ସେତେବେଳେ ସେମାନେ ଗାଁର ଶେଷ ମୁଣ୍ଡରେ ନିମଗଛ ତଳେ ଗୋଟିଏ ମଞ୍ଚ ବାନ୍ଧନ୍ତି । ଏହି ଠାକୁରାଣୀ ମାଟିରେ ତିଆରି । ଏହି ମୂର୍ତ୍ତି ଏକ ତିନିଗୋଡ଼ିଆ, କାଠ ତିଆରି ଆସନ ଉପରେ ପ୍ରତିଷ୍ଠିତ ହୁଅନ୍ତି । ଏହାଙ୍କ ଦେହରେ ଲୁଗା ଆବୃତ୍ତ ହୁଏ । ଏହାଙ୍କ ଗ୍ରୀବାଦେଶ କେତେକ ମୟୂର ଚନ୍ଦ୍ରିକାରେ ମଣ୍ଡିତ ହୁଏ । 'ମକର ସଂକ୍ରାନ୍ତି' ବା 'ପଙ୍ଗଲପର୍ବ'ରେ ଏହି ପକ୍ଷୀକୁ ତାମିଲ୍‌ମାନେ ପୂଜା କରନ୍ତି । ତପୂର ଦିନଟି 'ମାତୃପଙ୍ଗଲ' ନାମରେ ପରିଚିତ । ଏହିଦିନ ଗୋ ମହିଷାଦି ପ୍ରାଣୀମାନେ ପୂଜିତ ହୁଅନ୍ତି । ଏହିଦିନ ସ୍ତ୍ରୀଲୋକମାନେ ମୟୂରକୁ ସମ୍ମାନ ଦେଖାନ୍ତି । ମୟୂରପକ୍ଷୀ 'ମୁରୁଗ' ଦେବଙ୍କର ବାହନ । ଏହି ମୁରୁଗ ଦେବ କାର୍ତ୍ତିକ ବା କାର୍ତ୍ତିକେୟ, ମଠୁକୁମାର ସ୍ୱାମୀ, କନ୍ଦ ସ୍ୱାମୀ ଏବଂ ସୁବ୍ରମନ୍ୟମ୍' ନାମରେ ପରିଚିତ । ସେ ଯୁଦ୍ଧର ଦେବତା । ସେ ଭାରତ ସାରା ଭିନ୍ନ ଭିନ୍ନ ରୂପରେ ପୂଜା ପାଆନ୍ତି । ଦକ୍ଷିଣ ଭାରତର ମନ୍ଦିରମାନଙ୍କ ଉତ୍ସବମାନଙ୍କରେ ମୟୂର ଚନ୍ଦ୍ରିକା ଗୁଡ଼ିକ ପବିତ୍ର ବସ୍ତୁ ରୂପେ ପରିଗଣିତ ହୁଏ । କେରଳର ପ୍ରତ୍ୟେକ ମନ୍ଦିରରେ ଯେଉଁ ହସ୍ତୀମୂର୍ତ୍ତି ସବୁ ଖଚିତ ହୋଇଅଛି ସେମାନଙ୍କ ଉପରେ ଛତାମାନ ସବୁ ଟେକା ହୋଇଅଛି । ଏହି ଛତା ବା ପଙ୍ଖା ଗୁଡ଼ିକ ମୟୂର ପରରେ ନିର୍ମିତ । ସାରା ଉତ୍ତର ଭାରତର ମନ୍ଦିରମାନଙ୍କରେ ମୟୂର ପଙ୍ଖା ବ୍ୟବହୃତ ହୁଏ । ପଶ୍ଚିମ ବଙ୍ଗଳାର ପ୍ରତ୍ୟେକ ଠାକୁର ବାଡ଼ିରେ ମୟୂରପଙ୍ଖାଟିଏ ଥାଏ । ବନାରସ୍‌ର ଆଧ୍ୟାତ୍ମିକ ଗୁରୁ ବା ପୁରୋହିତମାନେ ଏହାର ସଦ୍‌ବ୍ୟବହାର କରିଥାନ୍ତି । ଏହାର ଟାଉନ୍ ହଲ୍ ନିକଟରେ ଥିବା ମୁଖ୍ୟ ମନ୍ଦିରଟିରେ ଏହି ମୟୂର ଚନ୍ଦ୍ରିକା ରଖାଯାଇଅଛି । ପୁରୋହିତମାନେ ପାପ କରିଥିବା ଭକ୍ତମାନଙ୍କୁ ଏଥିରେ ସାମାନ୍ୟ ମୃଦୁ ଆଘାତ କରି ଏମାନଙ୍କୁ ପାପରୁ ମୁକ୍ତ ଦିଅନ୍ତି । ମହାରାଷ୍ଟ୍ରର ଗୋଟିଏ ଜଙ୍ଗଲଜାତି ବାରଲିସ୍‌ମାନେ ମୟୂର ପର ପିତ୍ତଳ ପାତ୍ର ମଧ୍ୟରେ ରଖି ତାର ଚାରିପଟେ ନୃତ୍ୟ କରନ୍ତି । ଦକ୍ଷିଣ ଭାରତରେ ଯେପରି ମୁରୁଗନ୍ ଦେବଙ୍କର ବାହନ ରୂପେ ମୟୂର ପରିଚିତ, ସେହିପରି ଉତ୍ତରରେ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀଙ୍କର ବାହନ ।

ସରସ୍ୱତୀଙ୍କର ଦକ୍ଷିଣ ଭାରତରେ ଓ ବଙ୍ଗଦେଶରେ ହଂସବାହନ । ଅନ୍ୟ କୌତୂହଳର କଥା ଯେ, ଯୁଦ୍ଧର ଦେବତା କାର୍ତ୍ତିକେୟ ବଙ୍ଗଦେଶରେ ବେଶ୍ୟାମାନଙ୍କର ମଧ୍ୟ ପ୍ରଧାନ ପୃଷ୍ଠପୋଷକ ଦେବତା । ତାଙ୍କର ଶିଷ୍ୟସବୁ କଲିକତାର କେତେକ ଜିଲ୍ଲାରେ କେତେ ସୁନ୍ଦର କାର୍ତ୍ତିକ ମଣ୍ଡନ କରେ । କାର୍ତ୍ତିକେୟ ସେମାନଙ୍କ ମତରେ ଜଣେ ଚିର କୁମାର ଏବଂ ତାଙ୍କ ଚେହେରା ଠିକ୍ ଆପେଲୋଙ୍କ ପରି ରମଣୀୟ ।

ବାଳକ କୃଷ୍ଣ ସବୁବେଳେ ତାଙ୍କ ମଥାରେ ମୟୂର ଚନ୍ଦ୍ରିକା ଖୋସୁଥିଲେ ଯଦିଓ ଦ୍ରାବିଡ଼ମାନଙ୍କଠାରୁ ମୟୂର ଉପାସନା ଆରମ୍ଭ ହୋଇଛି । ବର୍ତ୍ତମାନ ହିନ୍ଦୁଧର୍ମ ମଧ୍ୟରେ ଏହା ପ୍ରବେଶ ଲାଭ କଲାଣି । କୌଣସି ହିନ୍ଦୁ ଏହାର କ୍ଷତି ଇଚ୍ଛା କରନ୍ତି ନାହିଁ । ଅବଶ୍ୟ ଆଜିକାଲି କେତେକ ମହାରାଜା ଏହି ପକ୍ଷୀକୁ ଆହାର ସାମଗ୍ରୀ ରୂପେ ଗ୍ରହଣ କରିଛନ୍ତି । ଗଳ୍ପରୁ ଜଣାପଡ଼େ ଯେତେବେଳେ ରାବଣ ସ୍ୱର୍ଗକୁ ଆକ୍ରମଣ କଲା, ସେତେବେଳେ ଦେବତାମାନଙ୍କର ରାଜା ଏହି ଇନ୍ଦ୍ର ମୟୂରର ପୁଚ୍ଛ ମଧ୍ୟରେ ଲୁଚି ରହିଥିଲେ । ସେତେବେଳେ ମୟୂରର ପୁଚ୍ଛ ରଙ୍ଗହୀନ ଥିଲା । ଇନ୍ଦ୍ର କୃତଜ୍ଞତାରେ ଖୁସି ହୋଇ ତାହାକୁ ବର ପ୍ରଦାନ କରି କହିଲେ, "ମୁଁ ସହସ୍ରାକ୍ଷ, ଅର୍ଥାତ୍ ମୋର ହଜାର ଆଖି ଅଛି । ଯେହେତୁ ତୁ ମୋର ଜୀବନକୁ ରାବଣ ଆଗରୁ ରକ୍ଷା କରିଛୁ, ତେଣୁ ତୋର ମଧ୍ୟ ହଜାରେ ଆଖି ହେଉ" । ପାରସୀୟ ଦେଶରେ ମଧ୍ୟ ମୟୂର ପୂଜା ହେବାର ଜଣାଯାଏ । ସାଇରସ୍‌ଙ୍କର ପଚାଶିଶହ ତମ ବାର୍ଷିକ ଉତ୍ସବ ପାଳନ ସମୟରେ ତେହେରାନ୍‌ର ମୁଖ୍ୟ ପ୍ରବେଶ ପଥ ନିକଟରେ ଏକ ବିରାଟ ମୟୂର ମୂର୍ତ୍ତି ରଖାଯାଇଥିଲା ।

ଇରାନ୍ ୧୯୦୧ ଖ୍ରୀଷ୍ଟାବ୍ଦରେ ହୋଫୁଟ୍ (Crow foot) ନାମକ ଜଣେ ଲେଖକ ଇରାନରେ ମୟୂର ପୂଜା ଓ ପର୍ବ ପାଳିତ ହେଉଥିବାର ଲେଖିଛନ୍ତି । ଏକ ନିର୍ଦ୍ଦିଷ୍ଟ ପର୍ବରେ ଇରାନ ଦେଶର ଲୋକମାନେ ମୟୂରକୁ ପୂଜାକରି ଏହାର ମାଦ, ଅଣ୍ଡ ଉପରେ ଜଳସିଞ୍ଚନ କରନ୍ତି ଓ ସେହି ପବିତ୍ର ଜଳକୁ ମୁକ୍ତ ଲକ୍ଷଣରେ ପାନ କରନ୍ତି ।

ବୀର ଆଲେକଜାଣ୍ଡର ଭାରତବର୍ଷ ଛାଡ଼ିଲାବେଳେ 'ସେ ସାଙ୍ଗରେ କିଛି ମୟୂର ନେଇ ଯାଇଥିଲେ । ମୟୂର ପରି ସମ୍ମାନର ଶେଷ ସୀମାରେ

ପହଞ୍ଚିଥିଲା । ଏହି ଚଢ଼େଇ 'ହେରା'ଙ୍କର ଅତି ପ୍ରିୟ ଥିଲା । ବାଇବେଲରେ ଉଲ୍ଲେଖ ଅଛି ଯେ, ରାଜା 'ସଲୋମନ' କେତେକ ଆଡ଼ମ୍ବରପ୍ରିୟ ଚଢ଼େଇ 'ମୋଉଆ' ମଧ୍ୟ ନେଇ ପବିତ୍ରଭୂମି (ହୋଲିଲାଣ୍ଡ)କୁ ପଠାଇଥିଲେ । ଫୋନେସିୟ ଲୋକମାନେ ମିଶର ଓ ଏସିଆ ମାଇନର୍‌ରେ ମୟୂରର ପ୍ରଚଳନ କରିଥିଲେ । ହିନ୍ଦୁମାନେ ମଧ୍ୟ ଏହି ପକ୍ଷୀମାନଙ୍କୁ ରଖିଥିବାର ପ୍ରମାଣ ମିଳେ । ଗ୍ରୀସରୁ ମୟୂରଗୁଡ଼ିକ ରୋମକୁ ଓ ସିଜର୍‌ଙ୍କର ରାଜ-ଧାନୀକୁ ପଠାଯାଇଥିଲା । ରୋମାନମାନେ ଏହାର ପକ୍ଷୀକୁ ଅଳଙ୍କାର ରୂପେ ବ୍ୟବହାର କରୁଥିଲେ । ଖ୍ରୀଷ୍ଟିୟାନ୍‌ମାନେ ମୟୂରମାନଙ୍କୁ ପୁନର୍ମୁକ୍ତି ରୂପେ ଗ୍ରହଣ କରିଥିଲେ । କିନ୍ତୁ ଇଂଲଣ୍ଡ ଦେଶର ଲୋକମାନେ ଏହାକୁ ଏକ ଅଶୁଭ ପକ୍ଷୀରୂପେ ଗ୍ରହଣ କରୁଥିଲେ । ଚୀନ ଦେଶରେ ମୟୂର ଅନାଦିକାଳରୁ ପୂଜିତ ହୋଇ ଆସୁଥିଲା । ସେମାନଙ୍କ ପକ୍ଷରେ ମୟୂର ହେଉଛି ସୌନ୍ଦର୍ଯ୍ୟ ଓ ମହତ୍ତ୍ୱର (dignity) ପ୍ରତୀକ । ଏହାର ସୁନ୍ଦର ପୁଚ୍ଛ ଗୁଡ଼ିକ ମିଙ୍ଗ୍ ବଂଶର ରାଜତ୍ୱ ସମୟରେ ଆଦୃତ ହୋଇଥିଲା । ସର୍ବୋପରି ମୟୂର ଖାରତ୍ୱ, ସୌନ୍ଦର୍ଯ୍ୟ ଓ ଗର୍ବର ପ୍ରତୀକ ।



(The Illustrated Weekly of India, August 11, 1974 ରେ ପ୍ରକାଶିତ P. Thankappan Nairଙ୍କ 'Peacock worship' ର ମର୍ମାନୁବାଦ)

## କୁଆଁର ପୁନେଇ ଜହ୍ନ ଲୋ

ବରଷକ ପରେ ହରଷ ମନରେ ସରସବଦନା ଶରତ୍‌ସୁନ୍ଦରୀ ମରତକୁ ଓହ୍ଲାଇ ଆସିଛି । ଅଙ୍ଗରେ ତାର ଅନଙ୍ଗର ଉଚ୍ଚାଟନ, ବାସରେ ତାହାର କାଶଫୁଲର ଶୁକ୍ଳମା, ଚରଣରେ ତାର ହଂସକାରଣ୍ଡବର ନୂପୁରନିକ୍ୱଣ । ରୂପାଥାଳପରି ପର ମନମତାଣିଆ କୁଆଁରୀ ଜହ୍ନ ତାହାର ଶିରୋଭୂଷା । ସପ୍ତଚ୍ଛଦମାଳତୀ ବନବନାନୀରେ ତାର ଚଲାପଥକୁ ସୁରଭିତ କରୁଛନ୍ତି । ମେଘବିମୁକ୍ତ ଆକାଶ ତଳେ ବିହଗବଧୂମାନେ ଉନ୍ମନା ହୋଇ ଗୁହାଁ ବସିଛନ୍ତି । ଅଜଣା ଦେଶର ଅଗଣନ ବିହଙ୍ଗବିହଙ୍ଗୀଙ୍କ କଣ୍ଠରେ

ମଧୁସ୍ୱର କାକଳୀ, କାଶହାସମୟୀ ସ୍ୱଚ୍ଛ ସ୍ରୋତସ୍ୱତୀର କୁଳୁକୁଳୁ ନାଦରେ ତାହାର ଆବାହନ ଗୀତ ଫୁଟି ଉଠୁଛି । ବରଷାଜରତୀର ଧବଳଜଟା କାଶକୁସୁମ ମୃଦୁହିଲ୍ଲୋଳରେ ସ୍ୱାଗତିକା ଜଣାଉଛି । ଶରତ୍ ବଧୂବେଶ ସାଜ ପଦାର୍ପଣ କରୁଛି ।

ଧରଣୀରେ ଆଜ ଶୁକ୍ଳମାର ସଞ୍ଚାର । ମହୀମଣ୍ଡଳା କାଶବିଭୂଷଣା, ରଜନୀ ସଜନୀ ଶଶିଶୋଭନା, ସରସୀ ରୂପସୀ ଧବଳ କୁମୁଦାନ୍ୱିତା, ନଦୀହଂସପୂର୍ଣ୍ଣା, ବନାନ୍ତ କୁସୁମାନ୍ୱିତ, ଉପବନ ମାଳତୀର ଶୁଭ୍ରିମାରେ ଶୁକ୍ଳୀକୃତ । ରସିକ କବି କାଳିଦାସଙ୍କ ଲେଖନୀ ଚଞ୍ଚଳ ହୋଇ ଉଠିଛି ।

"କାଶୈର୍ମହୀ ଶିଶିର-ଦୀଧିତିନା ରଜନ୍ୟୋ
ହଂସୈର୍ଜଳାନି ସରିତାଂ କୁମୁଦୈଃ ସରାଂସି
ସପ୍ତଚ୍ଛଦୈଃ କୁସୁମଭାର ନତୈ—ର୍ବନାନ୍ତାଃ
ଶୁକ୍ଳୀକୃତାନ୍ୟୁପ-ବନାନି ଚ ମାଳତୀ— ଭିଃ"

( ଋତୁ ସଂହାର )

ଶରତ ସୁନ୍ଦରୀର ମଥାମଣି କୁଆଁର ପୁନେଇ ଜହ୍ନ ଆଜ ସେଇ ଧବଳିମା ପ୍ରକୃତିକରି କୁଆଁରୀମାନଙ୍କ ମନକୁ ଉଚ୍ଛଳ କରୁଛି । ତଳେ ଅବନୀ ନନ୍ଦିତା, ଉପରେ ଧଳାବାଦଲ କୋଳରୁ ରଜତଜ୍ୟୋତ୍ସ୍ନା ଝରି ପଡ଼ୁଛି । ଗାଁଦାଣ୍ଡରେ ଆଜ ମଧୁ ମହୋତ୍ସବର ବିପୁଳ ଆସର । ଶରତ୍‌ର ମନମତାଣିଆ ଜହ୍ନ ଆଜ ଅକବିକୁ କବି କରିଛି । ପଲ୍ଲୀ ବାଳିକାର ଅଳସପଦକୁ ଲୀଳା ଚଞ୍ଚଳ କରିଛି । ବ୍ରୀଡ଼ାବତୀ ଆଜ ଗାଁ ଦାଣ୍ଡରେ କ୍ରୀଡ଼ାବତୀ, ମୂକ ଆଜ ମୁଖର । ଯାହା ପାଟିରୁ ପଦେ କଥା ବାହାରୁ ନ ଥିଲ, ସେ ଆଜ ଅଳତା ମାଖି ଗୋଡ଼ଖଡ଼ୁ, ବିଦ, ଗୁଜପଟି, ଟାଇଚ, ନୂପୁରର ରୁଣୁଝୁଣୁ ନାଦରେ ଗାଁ ଦାଣ୍ଡ କମ୍ପାଉଛି । ଅଳସ ଆଖିରେ ତାର କୁମାରୀ ଜୀବନର ଅଦିନିଆ ଫଗୁଣ । ତନୁମନରେ ତା'ର ଉଚ୍ଛଳ ଯଉବନର କାଉଁରୀ କାଠିଛୁଆଁ ନୂଆ ପରଶ । ପଦ ଛନ୍ଦତପଳ । କଣ୍ଠରେ ମନଫୁଲିଣିଆ ସ୍ୱତ ଗୀତ ଐକତାନିକ ସ୍ୱରରେ କଣୋଇମାନଙ୍କ ଭୁଣ୍ଡ ଉଚ୍ଛୁଳା ମଧୁ ସ୍ରାବୀ ଝଙ୍କାରରେ ଗାଁଦାଣ୍ଡ ଉଚ୍ଛୁଳ ପଡ଼ୁଛି । ରଜ ସଜବାଜ

ମଉଜରେ ଯେଉଁ କଶୋରୀ କଣ୍ଠରେ ଉଦ୍ଦାମ ଗୀତ ଫୁଟିଆସ ହୋଇଥିଲ ଆଜ ସେ ପୁଣି ପୂର୍ଣ୍ଣତା ଲଭକର ଆବେଗଭର କଣ୍ଠରେ ପୁଚ ଖେଳରେ ମାତ ସଙ୍ଗିମାନଙ୍କ ମେଳରେ ପ୍ରତଯୋଗିତାର ଆସରରେ ଅବତୀର୍ଣ୍ଣା । ପଦ ଯୁଗଳରେ ତା'ର ଛନ୍ଦ, କଣ୍ଠରେ ତାର କୈଶୋରର ଉତ୍ସୁଥଳ ଅଭିବ୍ୟକ୍ତ । ଗାଁ ଦାଣ୍ଡ, ବାଗ ଅଗଣାରେ ଗୁଳୁଛି ପୁଚ ଖେଳ । ସମସ୍ତେ ସମବୟସୀ । ଏଣୁ ସ୍ୱରର ଏକଯଲହର ମଧୁବର୍ଷୀ । କାହା କଣ୍ଠରୁ ବାହାର ଆସୁଛି । 'ଠିଆପୁଚ'ର ଗୀତ··· ··

"ଠିଆପୁଁଚ ନାରଙ୍ଗ, ଗୋଡ଼ ବଟି ସାରଙ୍ଗ
ସାରଙ୍ଗ ବାଡ଼କ ଯାଇଥିଲ, ନାରଙ୍ଗ ପୁଞ୍ଜିଏ ଆଣିଥିଲ
ଅଧେ କଲ ଭଜା, ଅଧେ କଲ ରାଇ, ମୋ ଭାଇ ରଜା,
ତୋ ଭଉଣୀ ରାଣୀ
କଟକରେ ଅଛି ବଡ଼ ଭଉଣୀ ଦେଇ ପଠାଇବ ପାଣି ।"

ପୁଚ ଖେଳର ଶେଷ ନାହିଁ, ତଳେ ଚନ୍ଦ୍ରକାସ୍ନାତ ପୃଥିବୀ ମାତା, ଉପରେ ଶରଚ୍ଚନ୍ଦ୍ର ଶୋଭିତ ମେଘ ବିମୁକ୍ତ ଶରଦାକାଶ । ସେ ପୁଚ ଗୀତର ଶେଷ ନାହିଁ । ରସିକତାର ସ୍ଥୂଳବ୍ୟଞ୍ଜନା ପିଚ୍ଛିଳ ଏହି ରସୋଦ୍ରେକୀ, ସାରଲ୍ୟଭରା, କୁମାରୀ ମନୋଭାବସ୍ପୃଷ୍ଟ କ୍ଷୁଦ୍ର ଗୀତଗୁଡ଼କ କେଉଁ କାଳରୁ ଚଳ ଆସୁଛି । କୁମାରୀ ଜହ୍ନ ଆଜ ସମସ୍ତଙ୍କୁ ଉତ୍ତଳା କରୁଛି । ନୂଆକୁଳ-ଭୂଆସୁଣୀଠାରୁ ପ୍ରୌଢ଼ା ବୟସ୍କା ପର୍ଯ୍ୟନ୍ତ ସମସ୍ତେ ଟାଣିହୋଇ ଆସୁଛନ୍ତ ବାର ଅଗଣାକୁ । ପିଠାପଣାଖିଆ ସରୁଛି, ଲକ୍ଷ୍ମୀ ପୂଜା ତ ଭୁଟିଛି, ଘର ଜଞ୍ଜାଳ ତ ଶେଷ, ଆଉ ମଠ କାହିଁକ ? ସେମାନେ ବ ପୁଚ ଖେଳର ପ୍ରଚ୍ଛଦପଟ ଗାୟିକା । ଆଜ ସିନା କୁମାରୀ ଜୀବନ ସେମାନଙ୍କର ପଛରେ ପଡ଼ୁଛି, ହେଲେ ସେ ଜୀବନର ମଉଳାଜହ୍ନ, ଛପିଲମଦକ ଏତେ ଶୀଘ୍ର ଯାଉଛି କେଉଁଠି ? ଫଳରେ ସେମାନେ ବ ଆଜର ଉତ୍ସବରେ ମୁଖ୍ୟ ସହାୟିକା, ପ୍ରଧାନ ଉଦ୍ୟୋକ୍ତା । କୁମାରୀମାନେ ଯେଉଁଠି ପ୍ରଥମ ପାଦ ବୋଲ ଅଟକ ଯାଉଛନ୍ତି···

"ପୁଁଚ ଲୋ······ଯା' ଯା' ଭୁ ଘୁଷୁ ଲୋ···
ଗହ୍ୱର ବିଲରେ ମଇଁଷି, ଧାନ କେଣ୍ଡି କେଣ୍ଡି ଖାଉଛ
ଉଡ଼ାଇ ଦେଏରେ ଭାଇ ବେହେରା ବୋହୂ ବାପ ଘର
ଯାଉଛ ।"

ସେଠାରେ ଏମାନେ ପ୍ରଷ୍ଟ ଗାୟିକାର ଆସନ ଜାହିର ରଖି ପଦପୂରଣ ସଂଙ୍ଗେ ସାଙ୍ଗେ କରିଦେଇ ଗାଉଛନ୍ତି—

"ବୋଂହୁ ବାପଘର ଅଠରନଳା ମୁହିଁକୁ ମାଡ଼ିଛ ଖଗ
ପାରି କରିବେ ଖୋଲମଙ୍ଗଳା ଗୋଡ଼ରୁ ଦେଉଛି ବଳା",.....
ଘୁଁଚିଲେ

ରମଣୀମାନଙ୍କ ରମଣୀୟ କଣ୍ଠ ସ୍ୱନରେ ଗାଁ ଦାଣ୍ଡ ଉଚ୍ଛୁଳୁଛି ।

ଚନ୍ଦ୍ରବନ୍ଦନା ଭାରତୀୟଙ୍କ ହୃଦୟରେ କେଉଁକାଳୁ ଆସନ ମାଡ଼ି ବସିଛି । ଚନ୍ଦ୍ରର ଅନ୍ୟ ନାମ 'ସୋମ' ଅର୍ଥାତ୍ 'ସୁନ୍ଦର' ଦେବଭୋଗ୍ୟ ପାନୀୟ । ଭାରତୀୟଙ୍କଠାରେ ସୌରମଣ୍ଡଳର ଅନ୍ୟାନ୍ୟ ଗ୍ରହାପେକ୍ଷୀ ଚନ୍ଦ୍ର ଅଧିକ ଅର୍ଥପୂର୍ଣ୍ଣ ଭାରତୀୟ ଶାସ୍ତ୍ରପୁରାଣରେ ପୁଣି ଏହାର ଏକ ବଶିଷ୍ଟ ସ୍ଥାନ ରହିଛି । ଲୋକର ଜନ୍ମ ସମୟରେ ଆକାଶରେ ଚନ୍ଦ୍ରର ସ୍ଥିତ ଅନୁଯାୟୀ ତାହାର ଭାଗ୍ୟ ନିର୍ଣ୍ଣିତ ହୁଏ । ସେହି ଚନ୍ଦ୍ର-ଉତ୍ସବ ପୁଣି ପୂର୍ଣ୍ଣତା ପ୍ରାପ୍ତି ହୁଏ କୁମାର ପୂର୍ଣ୍ଣିମା ଦିନ । ଓଷେଇତି ମାନଙ୍କର ପୂରା ଆଶ୍ୱିନ ମାସର ପୂଜା ସମାପ୍ତି ଲଭେ ଏଇ ଦିନ । ସେ ଚନ୍ଦ୍ରଙ୍କର ନାଗବନ୍ଦନା ଲାଗି ପୁଣି 'ଜହ୍ନିଫୁଲ', ଲିଆ, ଉଖୁଡ଼ା ଆବଶ୍ୟକ । ଗାଁ ଗହଳି-ମାନଙ୍କରେ ଏବେ ବି ଶୁଣାଯାଏ—

"ଜହ୍ନିଫୁଲ ଠୋ ଠା, କାକୁଡ଼ି ଫୁଲ ଠୋ ଠା
ଗୁଣ୍ଡିଚମୂଷା କହିଯାଇଛି, ଖୁଦଭଜା ମୁଠିଏ ରଖିଥା ।"

ଯେଉଁ ଜହ୍ନିଫୁଲ କୁଆଁରୀ ଜହ୍ନି ପୂଜାର ଏକ ପ୍ରଧାନ ଅଙ୍ଗ, ତାହାର ଫଳର ପୁଣି ସେଠାରେ ପ୍ରବେଶ ନିଷେଧ । ଏହା ଏକ ବିଚିତ୍ର ଲେଖାଅଛି—

ଜହ୍ନିଫୁଲଗୁଡ଼ିଏକ ଆଣିବ, ବୃନ୍ଦାବତୀଙ୍କ ମଣ୍ଡଳ କରିବ
ପୂର୍ଣ୍ଣକୁମ୍ଭ ନେଇଣ ବସାଇବ, ମୁଣ୍ଡିଆ ମାରି ହୁଳହୁଳି ଦେବ
ଆହୁରି କଥାଏ କହିବା ଶୁଣ, ଆମିଷ ଜହ୍ନି ନ ଖାଇବ ପୁଣ
(ଜହ୍ନି ଓଷା-୫ମ ଛାନ୍ଦ)

ବାଳିକାଙ୍କ ମେଳରେ 'ଜହ୍ନିଓଷା'ର ପ୍ରାଧାନ୍ୟ ଗୁରୁତ୍ୱପୂର୍ଣ୍ଣ । ଏହାର ଗୀତଗୁଡ଼ିକ ମଧ୍ୟ ଇଙ୍ଗିତଧର୍ମୀ ଓ ରସବନ୍ତ । ପଦର ସାରାଂଶ

ମଧ୍ୟରେ ବାଳକୁମାରୀମାନଙ୍କର ଭାବୀ ଜୀବନ ଦର୍ଶନର ସ୍ପଷ୍ଟ ସୂଚନା ଏଥିରୁ ମିଳେ ।

'କାନକୁ ସୁନା ଗୋଡ଼କୁ କନା, ବାରବରଷର ଧାନ ପୁରୁଣା
କାଖେ ପୁଅ ପଣତକୁ ଝିଅ, ଜୀବ ଥିଲଯାକ ଅହ୍ୟ ହୁଅ
ମଲେଗଲେ ବୈକୁଣ୍ଠକୁ ନିଅ ।'

ଜନ୍ମିଓଷାର ଏହି ପଦଟିକୁ ଲକ୍ଷ୍ୟକଲେ ଜଣେ ଗ୍ରାମ୍ୟ ବଧୂର ଭାବୀ ସୁଖମୟ ଜୀବନଚିତ୍ର ଏଥିରେ ଅଙ୍କିତ ଥିବାର ଜଣାଯାଏ । ଏକାଧାରରେ ଅଳଙ୍କାର, ବସ୍ତ୍ର, ଖାଦ୍ୟସଞ୍ଚୟ, କୁଳସନ୍ତାନ ପୁଣି ସର୍ବୋପରି ଭାରତୀୟ ନାରୀର 'ଅହ୍ୟ' ବା ସଧବାଚିହ୍ନ ଓ ପରେ ପରେ ପୁଣ୍ୟ ହେତୁ ବୈକୁଣ୍ଠପାଇଁ ପ୍ରାର୍ଥନାରୁ କେବଳ ଜନ୍ମିଳପୂଜା କାହିଁକି ସର୍ବଭାରତୀୟ ନାରୀପ୍ରାଣର ମହନୀୟତା ତଥା କମନୀୟତା ଫୁଟି ଉଠିଛି ।

ଯୁବ ପ୍ରାଣରେ ଆନନ୍ଦ ଉନ୍ମାଦନା ସହ ଗ୍ରାମ୍ୟ ଦାଣ୍ଡରେ ବିବିଧ ଦେଶୀୟ କ୍ରୀଡ଼ା— କଟକଟି ଓ ବୋହୂଚୋରି ମଧ୍ୟରେ ସାମାଜିକ ମିଳନ ମଧ୍ୟ ଏହାର ମୁଖ୍ୟ ଆବେଦନ । ଓଡ଼ିଶୀୟଙ୍କର ଆଶ୍ୱିନ ମାସ ସାରା ଓଷାପର୍ବ ପାଳନରେ ମନୋନିବେଶ ସେମାନଙ୍କର ନିଷ୍ଠା ଓ ଆଧ୍ୟାତ୍ମିକ ଅନୁଚିନ୍ତନର ଗଭୀର ପରିଚୟ ଦିଏ । କୁମାର ଉତ୍ସବ ଦିନ ବିବିଧ ଖେଳ ବାଳକାଙ୍କ ଲଳିତ ଅଙ୍ଗଦେଶରେ ଭାବୀ ଉତ୍ତମ ସ୍ୱାସ୍ଥ୍ୟ ଗଠନର ସହାୟକ ହୁଏ । କୁମାରୀମାନଙ୍କ 'ଶୁନ୍ଦରକନ୍ଦି' ଭୋଗ ମାଧ୍ୟମରେ ଚନ୍ଦ୍ରଙ୍କ ପୁଷ୍ପାଞ୍ଜଳି ଦେବା ଛଳରେ ଲିଆ, ଉଖୁଡ଼ା, କଦଳୀ, କାକୁଡ଼ି ଓ ନଡ଼ିଆର ମଧୁର ସମନ୍ୱୟରେ ବେଶ୍ ଖାଦ୍ୟପ୍ରାଣ ଯୁକ୍ତ ଖାଦ୍ୟର ବନ୍ଦୋବସ୍ତ ସ୍ୱାସ୍ଥ୍ୟସମ୍ମତ ପରି ଜଣାଯାଏ । 'କୁମାରୋତ୍ସବ' କୁମାର ବା କାର୍ତ୍ତିକେୟଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିବାରୁ 'କୁମାର'ଙ୍କ ସୌନ୍ଦର୍ଯ୍ୟ ଓ ବୀରତ୍ୱ ଭାରତୀୟ ଯୁବଗୋଷ୍ଠୀର ଧ୍ୟେୟ ହେବା ଉଚିତ । ଆ ଜହ୍ନମାମୁଁ ଶରଦଶଶୀ ଅବଶ୍ୟ ଆଜି 'ଜହ୍ନ' ହାତରେ ଖସିପଡ଼ି ଧରା ଦେଲେଣି । ଚନ୍ଦ୍ରଶିଳା ପୃଥିବୀର ସର୍ବତ୍ର ପ୍ରଦର୍ଶନୀର ବସ୍ତୁ ହେଲାଣି । ଚନ୍ଦ୍ର ଆଜି ଆପୋଲୋ-ଯାତ୍ରୀମାନଙ୍କର ହାତରେ ଧରା ଦେଲେଣି । "ଇନ୍ଦୁର୍ଦ୍ଦିଲକ୍ଷଂ କୁମୁଦଂ ତୁ ତୋୟେ, ଅର୍ଥାତ୍ ଭଞ୍ଜ ଭାଷାରେ କହିଲେ,'କେତେଦୂରେ ଚନ୍ଦ୍ର, କେତେ ଦୂରେ କୁମୁଦିନୀ ।

ଆଜ ମାତ୍ର ୮/୧୦ ଘରର ବାଟ । ଏହା ମଧ୍ୟରେ ଖେଳା, ବୁଲା, ଖିଆପିଆ ଋହଣି ମଧ୍ୟ ରହିଛି । ତଥାପି 'ଚନ୍ଦ୍ର'ର ଆକର୍ଷଣ ମରି ନାହିଁ । ଶରତ୍‌କାଳୀନ ସେହି ପୁରାତନ ଚନ୍ଦ୍ର, ଚନ୍ଦ୍ରଅଭିଯାତ୍ରୀଦଳଙ୍କୁ ଭାବପ୍ରବଣ କରିଛି । ସେମାନେ ନିଜେ ମାନିଛନ୍ତି—

'ଆମେ ଦେଖିଲୁ ନାନା ବର୍ଣ୍ଣର ସମାବେଶ, ଫିକା ଧୂସରରୁ ଉଜ୍ଜ୍ୱଳ କମଳାରଙ୍ଗ ପର୍ଯ୍ୟନ୍ତ । ଏ ଦୃଶ୍ୟ ଖୁବ୍ ସୁନ୍ଦର ।' ଆଜ ପୁଣି ଲକ୍ଷ୍ମୀପୂଜା । ମୃଣ୍ମୟୀ ପ୍ରତିମା ସବୁ ପୂଜା ପାଉଛନ୍ତି । ଘରଆଡ଼େ ଅନ୍ନପୂର୍ଣ୍ଣା ମା ଲକ୍ଷ୍ମୀଙ୍କ ମାରୁଜନା ଚହଳ ପକାଇ ଦେଇଛି । ଆଜର ଏହିଭଳି ଏକ ଉଜ୍ଜଳା ଦିନରେ ଚନ୍ଦ୍ରଙ୍କ ସମେତ ଲକ୍ଷ୍ମୀ ଠାକୁରାଣୀ ସମୁଦ୍ର ଗର୍ଭରୁ ଜାତ ହୋଇଥିଲେ । ଶ୍ରୀ ଲକ୍ଷ୍ମୀପୂଜା ପଦ୍ଧତି ପୁସ୍ତକରୁ ଜଣାଯାଏ ଲକ୍ଷ୍ମୀଦେବୀ ସାଗର ଗର୍ଭରୁ ଆଶ୍ୱିନ ପୂର୍ଣ୍ଣିମାଦିନ ସନ୍ଧ୍ୟା ସମୟରେ ଆବିର୍ଭୂତା ହେତୁ ଏହି ଆଶ୍ୱିନ ପୂର୍ଣ୍ଣିମାରେ ମହାଲକ୍ଷ୍ମୀ ପୂଜା କରନ୍ତି । ମହାଲକ୍ଷ୍ମୀ ସାଗର ଗର୍ଭରେ ବାଲ୍ୟାବସ୍ଥାରେ କପର୍ଦ୍ଦିଖେଳ କରୁଥିବାରୁ ଏ ପୂଜାକୁ କପର୍ଦ୍ଦିପୂଜା କହନ୍ତି (କଉଡ଼ି ସମ୍ବନ୍ଧରେ ପରବର୍ତ୍ତୀ ପ୍ରବନ୍ଧ ଦେଖନ୍ତୁ) ପ୍ରଦୋଷ-ବ୍ୟାପିନୀ ପୂର୍ଣ୍ଣିମାରେ ଶ୍ରୀ ମହାଲକ୍ଷ୍ମୀଙ୍କର ପୂଜା ହୁଏ । କୁମାରୀ ଅବସ୍ଥା ମହାଲକ୍ଷ୍ମୀଙ୍କର ଥିବାରୁ ଏ ପୂର୍ଣ୍ଣିମାକୁ କୁମାର ପୂର୍ଣ୍ଣିମା ବା କୁଆଁର ପୁନେଇ କହନ୍ତି ।" (କୋଜାଗର ବ୍ରତ ଶ୍ରୀ ଶ୍ରୀ ମହାଲକ୍ଷ୍ମୀ ପୂଜା ପଦ୍ଧତି, ପ୍ରକାଶକ ଧର୍ମଗ୍ରନ୍ଥ-ଷ୍ଟୋର, ପୃଷ୍ଠା-୪୫)

ସେହି କୁଆଁରୀ ଜହ୍ନ ଆଜ କୁମାରୀମାନଙ୍କ କଣ୍ଠରେ ଫୁଲବଉଳ-ବେଣୀର ମାଦକତା ଦୋଳ, କବି କଳ୍ପନାରେ ନୂଆ ସୁରଭିତାଳ, ଧରଣୀଦେବୀଙ୍କ ରସାଳ ତନୁରେ ନୂଆପଉବନର ଗୋଳ ସବୋପରି ପକ୍ଷୀପ୍ରାଣରେ ଅଫୁରନ୍ତ ଆନନ୍ଦ ଓ ଉନ୍ମାଦନାର ରସ ଢାଳି ବରଷକ ପରେ ପୁଣି ଆସିଛି ।



# ଭାରତୀୟ ସଂସ୍କୃତିରେ 'କଉଡ଼'

କଉଡ଼ ଏକ ଶୁଭ ସଙ୍କେତ । ଏହା ଆମ ଦେଶର ବିବାହୋତ୍ସବର କେତେକ କାର୍ଯ୍ୟପଦ୍ଧତି ସହ ସଂଯୁକ୍ତ । ଏହା ଅର୍ଥ ରୂପେ ମଧ୍ୟ ବ୍ୟବହୃତ ହେଉଥିଲା । ଏହା ଦେବୀଙ୍କର ବିଭବ ଅଟେ । ନବ ବିବାହିତ ଦମ୍ପତିଙ୍କୁ କଉଡ଼ ଖେଳିବାକୁ ପଡ଼ିଥାଏ ।

ଆନ୍ଧ୍ରପ୍ରଦେଶର ଏରୁକଳମାନଙ୍କ ଗୋଷ୍ଠୀରେ ବର କନ୍ୟାର ପିତାଙ୍କୁ ଏକ ପାରମ୍ପରିକ ଶର୍ତ୍ତରେ ଅର୍ଥଦାନ କରେ । ଏହି ଦାନରେ କେତେ ଗୁଡ଼ାଏ କଉଡ଼ ଅନ୍ତର୍ଭୁକ୍ତ ଥାଏ । ଠିକ୍ ଏହିପରି ଏକ ଅଭ୍ୟାସ ଆଫ୍ରିକା ଅନ୍ତର୍ଗତ 'ମାଳି'ରେ 'ଡୋଗାନ୍' ଲୋକମାନଙ୍କର ଅଛି । ସେଠାରେ ବର ୮୦ଟି କଉଡ଼ ସମେତ ଅନ୍ୟାନ୍ୟ ସାମଗ୍ରୀ ଦେଇଥାଏ ।

ବେଳେବେଳେ କଉଡ଼ "ପ୍ରାଣଦାତା" (Giver of life) ଆଖ୍ୟା ପାଇଅଛି । ପୃଥିବୀର କେତେକ ସ୍ଥାନରେ ଏହା ଉର୍ବରତା ସହିତ ସଂଯୁକ୍ତ । କେତେକଙ୍କର ମତରେ ବିବାହ ବେଳେ କନ୍ୟା ହସ୍ତରେ କଉଡ଼ଟିଏ ଦେବା ଅର୍ଥ —ସନ୍ତାନ ଲାଭର ସଙ୍କେତ । ଆସାମର କେତେକ ଗୋଷ୍ଠୀରେ ବିବାହବେଳେ ବର କନ୍ୟାକୁ ଏକ କଉଡ଼-ଶାମୁକା ଦେବା ପ୍ରଥା ପ୍ରଚଳିତ । କନ୍ୟା ଏହି ଶାମୁକାକୁ ଏକ ପାତ୍ରରେ ସିନ୍ଦୂର ରଖିବାପାଇଁ ସୁରକ୍ଷିତ ଭାବେ ରଖେ ଏବଂ କେତେକ ସ୍ୱତନ୍ତ୍ର ଘଟଣାରେ ବ୍ୟବହାର କରେ ।

ଆସାମରେ କେତେକ ବୟସ୍କ ବ୍ୟକ୍ତି ହାତରେ କେତୋଟି କଉଡ଼ ନେଇ ବର କନ୍ୟାଙ୍କ କର୍ଣ୍ଣ ପାଖରେ ଧରି ତାଙ୍କର ସୌଭାଗ୍ୟ ଏବଂ ଯୋଗ୍ୟ ସନ୍ତାନ ଲାଭର କାମନା କରିଥାନ୍ତି ।

ରାଜସ୍ଥାନରେ କେତେକ ଜନପଦ ସହିତ ଗୋଟିଏ କଉଡ଼, ଏକ ରୌପ୍ୟ ମୁଦ୍ରା, ଲୁହା ଏବଂ ଲାଖ, ଏକ ନାଲି କନାରେ ବନ୍ଧା ହୋଇଥିବା

ସୋରଷ ଓ ଦୁଇଟି ଘାସ ବିବାହ ବେଦୀ ଉପରେ ରଖାଯାଏ । ସେଗୁଡ଼ିକୁ 'ମୁଞ୍ଜ' ନାମକ ଏକ ତୃଣ ନିର୍ମିତ ରଜ୍ଜୁଦ୍ୱାରା ବାନ୍ଧିଲାଇ ରଖାଯାଏ । ଗୋଟିଏ କଉଡ଼ି-ଶାମୁକା ବର-କନ୍ୟାଙ୍କର କଙ୍କଣରେ ବାନ୍ଧି ଦିଆଯାଏ । ଏହି ପ୍ରଥା ସମ୍ଭବତଃ ଏକ ଯାନ୍ତ୍ରିକ କର୍ମ୍ମ। ଦୁଷ୍ଟ ଭୂତପ୍ରେତଙ୍କଠାରୁ ସଜାଗ ରହିବା ନିମିତ୍ତ ପ୍ରଚଳିତ, ସେ କଥା ଠିକ୍ ଜଣା ପଡ଼ୁନାହିଁ ।

'ମୀନା' ମାନଙ୍କ ଗୋଷ୍ଠୀରେ ( ରାଜସ୍ଥାନ ଅନ୍ତର୍ଗତ ) କନ୍ୟା କଉଡ଼ିରେ ସଜ୍ଜିତ ହୋଇ ପ୍ରଥମ ଥର ସକାଶେ ନିଜର ପ୍ରାଣେଶ୍ୱରଙ୍କ ନିକଟକୁ ଯାଏ । ଫର୍ମୋଜାର ବଧୂମାନଙ୍କର ମସ୍ତକ-ଅଳଙ୍କାର ମଧ୍ୟ କଉଡ଼ିରେ ସଜ୍ଜିତ ହୋଇଥାଏ ।

ପଞ୍ଜାବରେ ଶିଖ୍‌ମାନଙ୍କ ମଧ୍ୟରେ ବଧୂ ମଣିବନ୍ଧରେ ପିନ୍ଧିଥିବା ରଙ୍ଗୀନ ସୂତାଟି କେତେଗୁଡ଼ିଏ କଉଡ଼ିରେ ସଜ୍ଜିତ । ବେଳେବେଳେ କଉଡ଼ି ବଦଳରେ ରୌପ୍ୟମୁଦ୍ରା ମଧ୍ୟ ବ୍ୟବହୃତ ହୁଏ ।

ଆମ ଦେଶର ସମସ୍ତ ବିବାହୋତ୍ସବ ପିତାମାତାଙ୍କ ଦ୍ୱାରା ଆୟୋଜିତ ହୁଏ । ଆମର ବିଶ୍ୱାସ "ବୈବାହିକ ତଥ୍ୟ ବିଷୟରେ ମାଆ ଉତ୍ତମରୂପେ ଜାଣନ୍ତି । ବିବାହ ସମୟରେ ବରକନ୍ୟା ସମ୍ପୂର୍ଣ୍ଣ ଅପରିଚିତ ଥାଆନ୍ତି । ବରକନ୍ୟାଙ୍କୁ ପରିଚିତ କରାଇ ମମତା ଜାଗ୍ରତ କରି ଉତ୍ତମ ବୁଝାମଣା ସୃଷ୍ଟି କରିବା ପାଇଁ ବିବାହ ପରେ କେତେକ ସରଳ ଖେଳ ଖେଳିବାକୁ ହୁଏ । କଉଡ଼ି ଖେଳ ସେଥିଲାଗି ପ୍ରଖ୍ୟାତ ।

ଏହି ଉଦ୍ଦେଶ୍ୟରେ କନ୍ୟା ଦୁଇ ହସ୍ତ ଏବଂ ବର ଏକ ହସ୍ତ ବ୍ୟବହୃତ କରିବାକୁ ଅନୁମତି ପାଇଥାନ୍ତି । ବୋହୂର ସାନ ଭଉଣୀମାନେ ଓ ଉପସ୍ଥିତ ଆଈ ବୁଢ଼ୀମାନେ ବରକନ୍ୟାଙ୍କର ଏହି କଉଡ଼ି ଖେଳରେ ଏକ ମୁଖ୍ୟ ଅଂଶ ଗ୍ରହଣ କରନ୍ତି ।

ଆହୁରି ମଧ୍ୟ ରାଜସ୍ଥାନରେ ବରକନ୍ୟା 'ଯୁବାଯୁବତୀ' ଖେଳ ଖେଳନ୍ତି । ଗୋଟିଏ ବେଲାରେ ଦୁଗ୍ଧ ଓ ଜଳ । ସେଥିରେ ବହୁତ ଗୁଡ଼ିଏ କଉଡ଼ି ଏବଂ ଗୋଟିଏ ସୁନା ବା ରୂପାର ମୁଦି । କେଲା ଭିତରକୁ ହାତ ପୂରାଇ ବରକନ୍ୟା ମୁଠାଏ ମୁଠାଏ କଉଡ଼ି ବାହାର କରନ୍ତି । ଯେ ମୁଦିଟିକୁ କାଢ଼ିଦିଏ ସେ ବିଜୟୀ ହୁଏ ।

ଓଡ଼ିଶାରେ କନ୍ୟା ପ୍ରଥମେ ଏକ କଉଡ଼ିକୁ ଦୃଢ଼ ଭାବରେ ମୁଠାଇ ଧରେ ଏବଂ ବର ସେହି କଉଡ଼ିକୁ ଛଡ଼ାଇ ଆଣିବାକୁ ଚେଷ୍ଟା କରେ । ଏହା ମଧ୍ୟରେ ପ୍ରେମର ଆବେଦନ ଥାଏ । ବରକନ୍ୟାର ହାତ ଖୋଲି କଉଡ଼ି ନେଇଯିବା ମଧ୍ୟରେ କନ୍ୟାର ବର ନିକଟରେ ସମ୍ପୂର୍ଣ୍ଣ ଆତ୍ମସମର୍ପଣର ସଙ୍କେତ ମିଳେ ।

ବଙ୍ଗରେ ନବ ଦମ୍ପତି ପ୍ରତ୍ୟେକ ଅଯୁଗ୍ମ ସଂଖ୍ୟା ବିଶିଷ୍ଟ କଉଡ଼ି ନିଜ ହାତକୁ ନେଇ ତଳକୁ ପକାନ୍ତି । ଯଦି କଉଡ଼ି ଗୁଡ଼ିକ ଯୁଗ୍ମ (ଯୋଡ଼) ହୁଏ ତେବେ ଦମ୍ପତିଙ୍କର ଭବିଷ୍ୟତ ସୁଖମୟ ଏବଂ ଉଜ୍ଜ୍ୱଳ ହୁଏ । ଯଦି କଉଡ଼ି ସଂଖ୍ୟା ଅଯୁଗ୍ମ (ବିଯୋଡ଼) ହୁଏ, ତାହେଲେ ତାଙ୍କର ଭବିଷ୍ୟତ ନିରାନନ୍ଦ ହେବାର ସୂଚନା ମିଳେ ।

ବୈବାହିକ ଯୌତୁକରେ କଉଡ଼ି ଦେବା ପ୍ରଥା ଆମ ଦେଶର କେତେକ ଅଞ୍ଚଳରେ ପ୍ରଚଳିତ । ପଞ୍ଜାବରେ ଯୌତୁକ ସ୍ୱରୂପ ଏକ ବସ୍ତ୍ରଖଣ୍ଡ ମଧ୍ୟ ପ୍ରଦାନ କରାଯାଏ । ଏହା କଉଡ଼ିରେ ସଜ୍ଜିତ ହୋଇଥାଏ ।

ଆମ ଦେଶରେ ଯେତେବେଳେ କନ୍ୟା ପିତାଙ୍କ ଘର ତ୍ୟାଗକରି ଶାଶୁ ଘରକୁ ଯାଏ, ସେତେବେଳେ ପିତାମାତା ଯୌତୁକ ସ୍ୱରୂପ ନିତ୍ୟ ବ୍ୟବହାର୍ଯ୍ୟ ଘରୋଇ ସାମଗ୍ରୀ ପୂର୍ଣ୍ଣ ଏକ ପେଡ଼ି ଦିଅନ୍ତି । ଏହା ଓଡ଼ିଶାରେ ଜଗଥି ପେଡ଼ି ଓ ଆନ୍ଧ୍ରରେ 'କବଜ ପେଟି' ନାମରେ ପରିଚିତ । ଏହି ଯୌତୁକ ଦ୍ରବ୍ୟ ମଧ୍ୟରେ କଉଡ଼ିର ସ୍ଥାନ ମଧ୍ୟ ନିହିତ ଅଛି ।



[ ଭବନ୍ସ ଜର୍ଣ୍ଣାଲ, ସେପ୍ଟେମ୍ବର ୭୬ରେ ପ୍ରକାଶିତ 'Cowries in Marriage'ର ଛାୟାରେ ]

# ନ କାର୍ତ୍ତିକ ସମୋ ମାସୋ

ସଦ୍ୟ-ଶିଶିର-ସ୍ନାତା ଧରଣୀ ବର୍ଷର ପୁଣ୍ୟମାସ କାର୍ତ୍ତିକ ବିଦାୟ ନେବାକୁ ଯାଉଛନ୍ତି । ପ୍ରାତଃସ୍ନାନ, ହବିଷ୍ୟଭୋଜନ, ତୀର୍ଥାଟନ, ତୁଳସୀ ସେବନ, ଦୀପଜ୍ୱଳନ, ଆକାଶଦୀପ ପ୍ରଜ୍ୱଳନ, ଶରତରାସ, ରାଇ-ଦାମୋଦର ପୂଜନ, ବକପଞ୍ଚକ ପ୍ରଭୃତି ମଧ୍ୟର ସ୍ମୃତିଗୁଡ଼ିକ ଅପାସୋରା ହୋଇ ରହିଛନ୍ତି । ଶରତର ଶେଷମାସ ରୂପେ ସୁପରିଚିତ ମହାଧର୍ମ ମାସ କାର୍ତ୍ତିକର ସ୍ମୃତି ସ୍ମରଣ ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

'ଆ, କା, ମା, ବୈ'ରେ ଯେଉଁ ଚାରୋଟି ପୁଣ୍ୟ ମାସର ସୂଚନା ମିଳେ ସେ ଗୁଡ଼ିକ ହେଲା—ଆଷାଢ଼, କାର୍ତ୍ତିକ, ମାଘ ଓ ବୈଶାଖ । ଆଷାଢ଼ରେ ପୁରୁଷୋତ୍ତମଙ୍କ ଶ୍ରୀ ଗୁଣ୍ଡିଚା ହେତୁ ଏ ମାସର ମହତ୍ତ୍ୱ ସୁପ୍ରସାରିତ । କାର୍ତ୍ତିକ ଶରତର ଶେଷମାସ ଓ ଧର୍ମକାର୍ଯ୍ୟ ପାଇଁ ପ୍ରଶସ୍ତ । ଶୀତକାଳର ମାଘ ପ୍ରାତଃସ୍ନାନ ନିମନ୍ତେ, ବୈଶାଖ ବସନ୍ତଋତୁର ଶେଷ 'ମାଧବ' ମାସ ରୂପେ ପରିଚିତ ଓ ଦାନ ପୁଣ୍ୟ ମାସ ନିମନ୍ତେ ସନାତନ ଆର୍ଯ୍ୟମାନଙ୍କ ଦ୍ୱାରା ସ୍ୱୀକୃତ ହୋଇଛି । ପ୍ରାଚୀନ ବହୁ ପୁରାଣ ଶାସ୍ତ୍ରରେ କାର୍ତ୍ତିକ ମାସର ପ୍ରଶସ୍ତି ଗାନ କରାଯାଇଛି ।

ନାରଦୀୟ ପୁରାଣରେ ଉଲ୍ଲେଖ ଅଛି—

'ନ କାର୍ତ୍ତିକ ସମୋ ମାସୋ ନ କୃତେନ ସମଂଯୁଗଂ
ନ ବେଦେନ ସମଂ ଶାସ୍ତ୍ରଂ ନ ତୀର୍ଥଂ ଗଙ୍ଗୟା ସମମ୍'

ଅର୍ଥାତ୍ କାର୍ତ୍ତିକ ମାସପରି ମାସ, ସତ୍ୟ ଯୁଗ ପରି ଯୁଗ, ବେଦ ପରି ଶାସ୍ତ୍ର ଓ ଗଙ୍ଗା ତୁଲ୍ୟ ତୀର୍ଥ ନାହିଁ । ବୈଦିକ ଆର୍ଯ୍ୟଙ୍କଦ୍ୱାରା ଯେଉଁ ଋତୁପର୍ଯ୍ୟାୟ ନିର୍ଣ୍ଣିତ ସେଗୁଡ଼ିକ ହେଲା— ବସନ୍ତରେ ମଧୁ ଓ ମାଧବ (ଚୈତ୍ର ଓ ବୈଶାଖ), ଗ୍ରୀଷ୍ମରେ ଶୁକ୍ର ଓ ଶୁଚି (ଜ୍ୟେଷ୍ଠ ଓ ଆଷାଢ଼), ବର୍ଷାରେ ନଭସ ଓ ନଭସ୍ୟ (ଶ୍ରାବଣ ଓ ଭାଦ୍ର), ଶରତରେ ଈଶ ଓ ଊର୍ଜ

ଆଶ୍ୱିନ ଓ କାର୍ତ୍ତିକ, ହେମନ୍ତରେ—ସହସ୍ ଓ ସହସ୍ୟ (ମାର୍ଗଶିର ଓ ପୌଷ) ଏବଂ ଶିଶିରରେ ତପସ୍ ଓ ତପସ୍ୟ (ମାଘ ଓ ଫାଲ୍‌ଗୁନ), ଏଣୁ କାର୍ତ୍ତିକ ହିଁ ଶାସ୍ତ୍ରୀୟ ବସନ୍ତ ଶରତର ଶେଷଭାଗ ।

ତୁଳା, ମକର ଓ ମେଷ ମାସରେ ପ୍ରାତଃ ସ୍ନାନ କରଣୀୟ । ଯଥା—

"ତୁଳା ମକର ମେଷେଷୁ ପ୍ରାତଃ ସ୍ନାନଂ ବିଧୀୟତେ
ହବିଷ୍ୟଂ ବ୍ରହ୍ମଚର୍ଯ୍ୟଂ ଚ ମହାପାତକ ନାଶନମ୍" (ବାୟୁ ପୁରାଣ)

ଅର୍ଥାତ୍ କାର୍ତ୍ତିକ, ମାଘ ଓ ବୈଶାଖରେ ପ୍ରାତଃସ୍ନାନ କର୍ତ୍ତବ୍ୟ । ସାଧାରଣତଃ ଶରତ୍‌କାଳ ପ୍ରବେଶ ସମୟରେ ଶୈତ୍ୟର ଆରମ୍ଭ ହେତୁ ଶରୀର ଅବଶ ଲାଗେ । ଔଦାସୀନ୍ୟ, ମାନ୍ଦ୍ୟତା ଦେଖାଯାଏ, ଫଳରେ ଜଠରାଗ୍ନିରେ ମାନ୍ଦ୍ୟତା ପ୍ରକାଶ ପାଏ । ଏଣୁ ପ୍ରାତଃ ସମୟରେ ଆଳସ୍ୟ ବର୍ଜନ ପୂର୍ବକ ସ୍ନାନ କରିବା ଦ୍ୱାରା ସ୍ୱାସ୍ଥ୍ୟରକ୍ଷା ବିଜ୍ଞାନାନୁଯାୟୀ ଶରୀର ନବଯୌବନ ଲାଭକରେ, ପୁଣି ହବିଷ୍ୟ ବ୍ରତାଚାରୀମାନେ ଭୋଜନରେ ସଂଯତ ହୋଇଥିବାରୁ ଅଧିକ ଲାଭବାନ୍ ହୁଅନ୍ତି । କାର୍ତ୍ତିକ ମାସରେ ଏହି ହବିଷ ଭୋଜନ ଯେ ନିୟମିତ ମାସସାରା କରନ୍ତି, ତାହା ଦେବ-ଭୋଜନ ତୁଲ୍ୟ ଅମୃତମୟ ହୋଇ ଭାବୀ ଜୀବନକୁ ପୁଷ୍କଳ କରେ । ମହାଭାରତରେ ଲେଖାଅଛି—

'କାର୍ତ୍ତିକେ ତୁ ନରୋ ମାଂସଂ ଯଃ କୁର୍ଯ୍ୟାଦେବ ଭୋଜନଂ,
ଶୂରଶ୍ଚ, ବହୁଭାଗ୍ୟଶ୍ଚ କୀର୍ତ୍ତିମାଂଶ୍ଚୈବ ଜାୟତେ ।।'

ଅର୍ଥାତ୍ ଯେଉଁ ବ୍ୟକ୍ତି କାର୍ତ୍ତିକ ମାସସାରା ହବିଷ୍ୟ ଭୋଜନ କରେ ସେ ଶୂର, ବହୁଭାଗ୍ୟଶାଳୀ ଓ କୀର୍ତ୍ତିମାନ୍ ହୁଏ । ଏ ମାସରେ ମାଛ, ମାଂସ ଆଦି ଆମିଷ ଭକ୍ଷଣ ଉପରେ ପ୍ରାଚୀନ ଶାସ୍ତ୍ରମାନେ ବାରମ୍ବାର ଆଲୋକପାତ କରି ଏହାର 'କୁ' ଦିଗ ଉନ୍ମୋଚନ କରିଛନ୍ତି । ଏପରିକି ମାସ ମାସ ଧରି ମାଂସାହାରୀ ମୃଗୟାସକ୍ତ ନୃପମାନେ ମଧ୍ୟ କେବଳ କାର୍ତ୍ତିକ ମାସରେ ଆମିଷାହାର ତ୍ୟାଗ କରି ବିଷ୍ଣୁ ଆଳୟ ପ୍ରାପ୍ତ ହୋଇଅଛନ୍ତି । ପକ୍ଷାନ୍ତରରେ ରାଜାମାନେ ମଧ୍ୟ ଏହି ମାସରେ ମତ୍ସ୍ୟ-ଭକ୍ଷଣ କରିବା ଅପରାଧରେ ଚଣ୍ଡାଳ ଯୋନିରେ ଜନ୍ମ ହୋଇଛନ୍ତି ।

ଏ ଶୁଭ କାର୍ତ୍ତିକ ମାସରେ ତୈଳମର୍ଦ୍ଦନ ଓ ମୈଥୁନ ମଧ୍ୟ ବର୍ଜନୀୟ । ଏହା ଯେ ମାନନ୍ତି, ସେ ସର୍ବପାପ ମୁକ୍ତ ହୋଇ ବୈକୁଣ୍ଠକୁ ଯାଆନ୍ତି । ଏହାର ବିପରୀତଧର୍ମୀ ପ୍ରତିଜନ୍ମରେ ଶୂକର ଯୋନିରେ ଜନ୍ମନ୍ତି ବୋଲି ପଦ୍ମପୁରାଣ'ରେ ଲେଖାଅଛି—

କାର୍ତ୍ତିକ ମାସରେ ତୈଳ, ମଧୁ, କାଂସ୍ୟପାତ୍ରରେ ଭୋଜନ ଓ ମୈଥୁନ ପରିହାର୍ଯ୍ୟ ବୋଲି ନାରଦୀୟ ପୁରାଣରେ ସ୍ପଷ୍ଟ ଉଲ୍ଲେଖ ଅଛି ।—

'କାର୍ତ୍ତିକେ ବର୍ଜୟେତ୍ ତୈଳଂ 'କାର୍ତ୍ତିକେ' ବର୍ଜୟେନ୍ମଧୁ ।
କାର୍ତ୍ତିକେ ବର୍ଜୟେତ୍ କାଂସ୍ୟଂ କାର୍ତ୍ତିକେ ବର୍ଜୟେତ୍ ସ୍ତ୍ରିୟମ"

କାର୍ତ୍ତିକ ମାସରେ ପ୍ରାତଃସ୍ନାନ ସହିତ ଦାମୋଦର ସ୍ମରଣ ଅନ୍ୟ ଏକ ବିଶେଷତ୍ୱ । ମାଘ ମାସରେ ଠିକ୍ ସ୍ନାନ ସମୟରେ 'ମାଧବ' ନାମ ଉଚ୍ଚାରଣ କରିବାର ବିଧି ଶାସ୍ତ୍ରସମ୍ମତ । ଯଥା—

ଶଉଚ ନିତ୍ୟ କର୍ମସାରି । ଜଳେ ପଶି ମନ୍ତ୍ର ଉଚ୍ଚାରି
ମାଧବ, ମାଧବ ବୋଲିଣ । ଶୀତକୁ ନ ଡରି ପାଇଣ
ମାଧବ ନାମ ଘୋଷୁଥିବ । ତକ୍ଷଣେ ସ୍ନାହାନ କରିବ ।
( ମାଘମାହାତ୍ମ୍ୟ )

ଠିକ୍ ସେହିପରି କାର୍ତ୍ତିକ ମାସରେ ଭକ୍ତମାନେ ଜଳରେ ବୁଡ଼ି ଏବଂ ଦାମୋଦର ବିଗ୍ରହ ଚିନ୍ତନ କରିବା ଦ୍ୱାରା ସମସ୍ତ ପାପ ନାଶ ହୁଏ ବୋଲି ଶ୍ରୀମଦ୍ଭାଗବତ ସମାଗ୍ରରରେ ଉଲ୍ଲେଖ ଅଛି । ଅକ୍ରୂର ମଥୁରାକୁ ଗଲାବେଳେ ଯମୁନାର ସ୍ନାନ ସମୟରେ କୃଷ୍ଣଙ୍କୁ ଏହି ଦାମୋଦର ରୂପରେ ଦେଖିଥିଲେ । 'ମଥୁରାମଙ୍ଗଳ' ରଚୟିତା ଭକ୍ତଚରଣ ମଧ୍ୟ ଏ ମତବାଦୀ । ଏ ମାସଟେ ଦାମୋଦର ପ୍ରିୟମାସ ପ୍ରାଚୀନ ଶାସ୍ତ୍ରମାନଙ୍କରେ ଏହାର ପ୍ରମାଣ ମିଳେ—

'କାର୍ତ୍ତିକେଽହଂ କରିଷ୍ୟାମି ପ୍ରାତଃସ୍ନାନଂ ଜନାର୍ଦ୍ଦନ ।
ପ୍ରୀତ୍ୟର୍ଥଂ ତବ ଦେବେଶ ଦାମୋଦର ମୟା ସହ ।।'
(ଗଦାଧର ପଦ୍ଧତି)

ଦାମୋଦରଙ୍କ ପରେ ରାଧାଙ୍କ ପ୍ରାର୍ଥନା ବିଧି ମଧ୍ୟ ଦେଖାଯାଏ । ଏଇ 'ରାଇ-ଦାମୋଦର' ବ୍ରତମୂଳରେ ଏକ ସରସ ସୁନ୍ଦର ପୌରାଣିକ ଆଖ୍ୟାୟିକା ଦେଖିବାକୁ ମିଳେ । ପୁଣି ମହୋଦଧି କୂଳରେ ବାଲୁକା-ପୂଜା ଓ ରାଇଦାମୋଦର ବ୍ରତ କଥାରୁ ଜଣାଯାଏ, ଦିନେ ପ୍ରଭୁ ରତ୍ନ-ପଲଙ୍କରେ ବିଜେ ହୋଇଥିବାବେଳେ ବଡ଼ପଣ୍ଡା ଆସି ତାହାର ପିତୃଶ୍ରାଦ୍ଧ ହେତୁ ପ୍ରଭୁଙ୍କୁ ତା ନିଜ ଗୃହକୁ ନିମନ୍ତ୍ରଣ କରିନେଲା । ବ୍ରାହ୍ମଣୀ ଗଙ୍ଗା ଜଳରେ ପାଦପ୍ରକ୍ଷାଳନ କରିଦେଲା । ଭୋଜନ ଶେଷରେ ନାରାୟଣ ହିବ୍ୟ ପଲଙ୍କ ପରେ ବିଜେ ହୋଇଛନ୍ତି, ଆଲଟ ଚାମର ପଡ଼ୁଛି । ଷୋଡ଼ଶୋପଚାର ନୈବେଦ୍ୟ ଓ ପାନବିଡ଼ିଆ ଶେଷ ହେଲା । ପ୍ରଭୁ ଦାମୋଦର ବଡ଼ପଣ୍ଡାଙ୍କୁ ବର ମାଗିବାକୁ କହିଲେ । ତାହା ଶୁଣି ବଡ଼ପଣ୍ଡା ହାତଯୋଡ଼ି କହିଲେ, 'ହେ କମଳାକାନ୍ତ, ମୋର ଏକମାତ୍ର କନ୍ୟାକୁ ଆପଣ ଗ୍ରହଣ କରନ୍ତୁ' । କମଳାଅଂଶୀ ସେହି କନ୍ୟାର ବିବାହ ହିସ୍ଥା ସରିଲା । ବଡ଼ପଣ୍ଡା କନ୍ୟା 'ରାଇ'କୁ ସମର୍ପଣ କରି ଶରଣ ପଶିଲା । କିଛିଦିନ ପରେ ସେ ରାଇକନ୍ୟା ଗର୍ଭବତୀ ହେଲା । ଏଣୁ କମଳାଙ୍କ ଉପରେ--

'ଶ୍ୱଶୁରଙ୍କୁ ପ୍ରଭୁ ବୋଲନ୍ତି ତହିଁ, ରାଇକି ଯେବେ ମୁଁ ହେଳା ଯିବଇଁ
ଅତି ଦୁଷ୍ଟ ଅଟେ ସିନ୍ଧୁ ତନୟୀ, ଏହାଠାରେ ଥାଉ ରାଇ ଯେ ତହିଁ
ଜନ୍ମ ହୋଇବ ଏକଇ ନନ୍ଦନ, ମକରଧ୍ୱଜ ନାମ ହେବ ଜାଣ ।'

ଏହାପରେ ପ୍ରଭୁ 'ରାଇ' କନ୍ୟାକୁ ତାର ମନସ୍କାମନା କଣ ବୋଲି ପଚାରନ୍ତେ ସେ ଉତ୍ତର ଦେଲା—

'ତୁମ୍ଭ କୋଳେ ବସି ହେଉବି ପୂଜା, କଦଳୀ ନଡ଼ିଆ ଯେ ମୁଗଭଜା,
ସିନ୍ଧୁକୂଳେ ବସି ହେଉବି ପୂଜା, ସନ୍ତୋଷେ ପୂଜିବ ଦେବାଧିରାଜା ।'

ମହାପ୍ରଭୁ ଏଥିରେ ପ୍ରଥମେ ଶଙ୍କିତ ହୋଇ ପରେ କହିଲେ, ''ଲକ୍ଷ୍ମୀଙ୍କୁ ସେବାକରି ତାଙ୍କଠାରୁ ଏ ବର ମାଗିଆଣ ।''

ରାଇ କନ୍ୟା ଲକ୍ଷ୍ମୀଙ୍କ ସେବାକରି, ତାଙ୍କୁ ମନାଇ ଏ ବର ମାଗନ୍ତେ ଲକ୍ଷ୍ମୀ ଅପ୍ରସ୍ତୁତା ହୋଇ ନିଜ ସ୍ୱାମୀଙ୍କୁ ଛାଡ଼ିବାକୁ ରାଜି ହେଲେ

ନାହିଁ । କିନ୍ତୁ ସ୍ୱ ସତ୍ୟ ରକ୍ଷାର୍ଥେ ଲକ୍ଷ୍ମୀ ରାଇଙ୍କୁ ମାସକ ପରିବର୍ତ୍ତେ ପଚିଶ-ଦିନ ପର୍ଯ୍ୟନ୍ତ ରାଜିହେଲେ ଓ ଶେଷ ପାଞ୍ଚଦିନ ପ୍ରଭୁଙ୍କୁ ତାଙ୍କୁ ଦେବାକୁ କହିଲେ ।

ଶୁଣି ହରଷ ହେଲେ କମଳାକ୍ଷୀ, ଦେଲଇ ରାଇ ଗୋ ସାରଙ୍ଗପାଣି
ମାସକେ ରାଇ-ଗୋ ଦେଉଛି ତୋତେ, ପାଞ୍ଚଦିନ ରାଇ ଦେବୁ ଗୋ ମୋତେ
(ରାଇଦାମୋଦର ବ୍ରତ)

ରାଇଦାମୋଦର ପୂଜା ଲୋକ ଚଳଣିରେ ଗଢ଼ି ଆସୁଛି ଓ ଶେଷ ପାଞ୍ଚଦିନ ମହାଲକ୍ଷ୍ମୀ ପ୍ରଭୁଙ୍କ ସେବାରେ ବ୍ୟସ୍ତ ରହନ୍ତି । ଏଣୁ ଲେଖାଅଛି

"ରାଧାଦାମୋଦର ମୂର୍ତ୍ତି । କାର୍ତ୍ତିକ ମାସେ ଜଳେ ସ୍ଥିତ"

ଆକାଶଦୀପ ଜ୍ୱଳନ କାର୍ତ୍ତିକ ମାସର ଅନ୍ୟ ଏକ ଆକର୍ଷଣୀୟ ବିଶେଷତ୍ୱ । ପିତୃପୁରୁଷ, ଧର୍ମରୂପୀ ବିଷ୍ଣୁ ଓ ପ୍ରେତଲୋକଙ୍କ ଉଦ୍ଦେଶ୍ୟରେ ଏହି ଦୀପ ଜ୍ୱଳନ ଉଦ୍ଦିଷ୍ଟ ବୋଲି ଜଣାଯାଏ । ପ୍ରାଚୀନ ଶାସ୍ତ୍ରରେ ଏହା 'ବ୍ୟୋମାଦୀପ' ନାମରେ ପରିଚିତ । ଯେଉଁ ଲୋକ କାର୍ତ୍ତିକ ମାସସାରା ଏ ଦୀପ ଦାନ କରେ, ତାହାର ସପ୍ତଜନ୍ମକୃତ ପାପ ବିନଷ୍ଟ ହୁଏ । ଦେଉଳକ ସ୍ଥାନ, ବ୍ରାହ୍ମଣ ବସତି, ବୃକ୍ଷମୂଳ, ଗୋଷ୍ଠ, ନିର୍ଜନ ସ୍ଥାନ, ବିଷ୍ଣୁମନ୍ଦିର ଯେ କୌଣସି ସ୍ଥାନରେ ଯେଉଁ ବ୍ୟକ୍ତି ଏହି ଆକାଶଦୀପ ମାସସାରା ଦିଏ ସେ କୋଟି ସୁକୃତ ଲାଭକରେ ବୋଲି ବ୍ରହ୍ମପୁରାଣରେ ଲେଖାଅଛି—

ଏହାର ବୈଜ୍ଞାନିକ ପୃଷ୍ଠଭୂମି ସର୍ବଜନ ବିଦିତ । ଶରତ୍‌କାଳରେ ସୃଷ୍ଟ ମାନବସମାଜର କ୍ଷତିକାରକ ଅଗଣନ ଜୀବାଣୁ ଉର୍ଦ୍ଧ୍ୱସ୍ଥ ଘୃତ ଦୀପ ନିକଟରେ ସମବେତ ହୋଇ କିଛିକ୍ଷଣ ପରେ ଜଳି ନଷ୍ଟ ହୁଅନ୍ତି ।

ଦୀପାବଳୀର ପୌରାଣିକ ଭିତ୍ତିଭୂମି ଓ ଐତିହାସିକ ପୃଷ୍ଠଭୂମି ସମ୍ବନ୍ଧରେ ଅନ୍ୟତ୍ର ଆଲୋଚନା କରାଯାଇଅଛି ।

କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା ଯମ ଦ୍ୱିତୀୟା ରୂପେ ପରିଚିତ । ପୂର୍ବେ ଏ ଦିନ 'ଯମ' ଭଉଣୀ ଯମୁନାଙ୍କ ନିଜ ଗୃହରେ ଭୋଜିତ ଓ ଅଭ୍ୟର୍ଚ୍ଚିତ ହୋଇଥିଲେ । (ଯମୋ ଯମୁନୟା ପୂର୍ବଂ ଭୋଜିତଃ ସ୍ୱଗୃହେଽର୍ଚ୍ଚିତଃ) ଏଣୁ ଏ ଦିନ ନିଜଗୃହରେ ନ ଖାଇ ଭଗିନୀ ଗୃହରେ ସ୍ନେହରେ ଭୋଜନ କରିବ

ଓ ବଡ଼ ଭଉଣୀଙ୍କ ଆଶୀର୍ବାଦ ଭିକ୍ଷାକରିବା ସଙ୍ଗେ ସଙ୍ଗେ ଭଉଣୀମାନଙ୍କୁ ସାଧ୍ୟମତେ ବସନ ଭୂଷଣାଦି ଦାନ କରିବ । ଏହାକୁ କେତେକ ଭ୍ରାତୃ ଦ୍ୱିତୀୟା ବୋଲି କହନ୍ତି ।

କାର୍ତ୍ତିକ ମାସର ଶେଷ ପାଞ୍ଚଦିନ ଏକ ପୁଣ୍ୟୋଜ୍ଜ୍ୱଳ ପଞ୍ଚକ । ଏହା ବକପଞ୍ଚକ ନାମରେ ପରିଚିତ । ଏ ପଞ୍ଚକରେ (ଏକାଦଶୀରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ) ବକ ମଧ୍ୟ ମତ୍ସ୍ୟ ଭକ୍ଷଣରୁ ନିବୃତ୍ତ ହୁଏ । ବ୍ରହ୍ମପୁରାଣରେ ଲେଖାଅଛି—

'ଏକାଦଶ୍ୟାଃ ସମାରଭ୍ୟ ଯାବଂଯାବତ୍ ପ୍ରବୋଧନେ
ବକୋଽପି ତତ୍ର ନାଶ୍ନୀୟାନ୍ମତ୍ସ୍ୟଂ ମାଂସଂ ଚ କେଶବ ।'

ଏହା ଭୀଷ୍ମ ପଞ୍ଚକ ନାମରେ ମଧ୍ୟ ବିଦିତ ।

କାର୍ତ୍ତିକ ପୂର୍ଣ୍ଣିମା 'ରାସ ପୂର୍ଣ୍ଣିମା' ପଦବୀ ପ୍ରାପ୍ତ ହୋଇଛି । ବାସ୍ତବିକ ବ୍ରଜେନ୍ଦ୍ର ନନ୍ଦନ କୃଷ୍ଣଙ୍କ ରାସେଶ୍ୱରୀ ରାଧିକାଙ୍କ ସହ ଶରତ ରାସର ଏହା ଉଦ୍‌ଯାପନ ଦିବସ । ଉତ୍କଳର ପୁରପଲ୍ଲୀରେ ଧର୍ମପ୍ରାଣ ଉତ୍କଳୀୟେ ଏବେ ବି 'ଶରତ ରାସ'ର ଆସର ମେଲୁଛନ୍ତି । ଖୋଳ, କରତାଳ, ସଂକୀର୍ତ୍ତନ ଧ୍ୱନିରେ ପଲ୍ଲୀଭୂମି ଏବେ ଉଦ୍‌ବେଳିତ ହୋଇ ଉଠୁଛି । ତୁଳସୀଚଉରା ମୂଳଠାରୁ ଆରମ୍ଭ କରି ଶିବାଳୟ ପର୍ଯ୍ୟନ୍ତ ସର୍ବତ୍ର ବହୁ ଜନସମାଗମ । ଉତ୍କଳର ବୋଇତ ବନ୍ଦାଣ ଉତ୍ସବ ପ୍ରାଚୀନ ବାଣିଜ୍ୟର ସଂସ୍କୃତିର ବାର୍ତ୍ତାବହ ରୂପେ ପୂର୍ବସ୍ମୃତି ଜାଗରୂକ କରୁଛି ।

ସେହି ପୁଣ୍ୟ ମାସ କାର୍ତ୍ତିକର ଧର୍ମ ପ୍ରଭାବରେ ଜଗତବାସୀ ଅମୃତଲୋକର ଯାତ୍ରୀ ହୁଅନ୍ତୁ ।

•

# ଜାତୀୟପର୍ବ 'ଦୀପାବଳୀ'ର
# ପୌରାଣିକ ପୃଷ୍ଠଭୂମି

ଓଡ଼ିଆ କୃଷିପ୍ରଧାନ, ଦେବପ୍ରଧାନ ଓ ସର୍ବୋପରି ପର୍ବପର୍ବାଣିର ଦେଶ ନାମରେ ପରିଚିତ । ବାର ମାସରେ ବାର ମୌଳିକ ପର୍ବ କେବଳ ଜଗନ୍ନାଥଙ୍କୁ କେନ୍ଦ୍ରକରି ଗଢ଼ି ଉଠି ପରେ ପରେ ଏହା ସହ ଷଢ଼ୋଦଶ ଯାତ୍ରା 'ନୀଳାଦ୍ରି ମହୋଦୟ ମହୋତ୍ସବ' ଯୁକ୍ତହୋଇ 'ବାରମାସେ ତେର ଯାତ୍ରା' ଆଖ୍ୟା ଧାରଣ କରିଛି । ଏହାଛଡ଼ା ୬୨ଟି ଉପଯାତ୍ରା ଓ ୧୦୮ଟି ପର୍ବପର୍ବାଣି ପରବର୍ତ୍ତୀ ସମୟରେ ବିଭିନ୍ନ ରାଜପୁରୁଷ ଓ ଭକ୍ତମାନଙ୍କ ଦ୍ୱାରା ସୃଷ୍ଟହୋଇ ନିଷ୍ଠାର ସହ ପାଳିତ ହୋଇ ଆସୁଅଛି । ଆନନ୍ଦମୁଖର ଭାରତୀୟ ହିନ୍ଦୁ ପର୍ବପର୍ବାଣି ମଧ୍ୟରେ 'ଦୀପାବଳୀ', ଦୀପାବଳୀ ବା ଦିଆଲି, ଓଡ଼ିଶାର ଗାଁ ଗହଳରେ ପୁଣି 'ପିଠୋଇ' ବା 'ପିପେଇ' ଅମାବାସ୍ୟା ଅତ୍ୟନ୍ତ ଲୋକପ୍ରିୟ । ଭାରତରେ ସର୍ବତ୍ର ଦଶହରା ଓ ହୋଲି ପରି ସାର୍ବ-ଜନୀନ ସ୍ୱୀକୃତି ଲାଭ କରିବାକୁ କ୍ଷମ 'ଦୀପାଳୀ' ଶବ୍ଦ ଅପଭ୍ରଂଷ୍ଟ 'ପିପେଇ' ବା 'ପିଠୋଇ' ଅମାବାସ୍ୟା ଭାରତର ପ୍ରତି ଜନପଦରେ ଦିଓ୍ୱାଲି ନାମରେ ଅଭିନନ୍ଦିତ ଓ ଆନନ୍ଦ ତଥା ଆଲୋକର ପର୍ବ ନାମରେ ନାମିତ । ଏହି ଜାତୀୟ ପର୍ବ ଦୀପାବଳୀର ଭାରତୀୟ ପୌରାଣିକ ଭିତ୍ତିଭୂମି ସମ୍ବନ୍ଧୀୟ ସ୍ମୃତିଚାରଣ ସହ ତତ୍ ସମ୍ବନ୍ଧୀୟ ସଂକ୍ଷିପ୍ତ ଆଲୋଚନା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

ପୁରାଣରେ ବର୍ଣ୍ଣିତ ଅଛି ଯେ ମହାପ୍ରତାପୀ ନାରକାସୁରର ଅତ୍ୟାଚାରରେ ଦେବଗଣ ଭୀତତ୍ରସ୍ତ ହୋଇ କୃଷ୍ଣଙ୍କର ଶରଣାପନ୍ନ ହେଲେ । କୃଷ୍ଣ ବକୁଳାଞ୍ଚନ ପର୍ବତରେ ପ୍ରବେଶ କରି ଗଜମର୍ଦ୍ଦ ବିଦ୍ୟା ପାରଙ୍ଗମ ନାରକାସୁରର ପୁତ୍ର ଭଗଦତ୍ତଙ୍କୁ ପ୍ରଥମେ ସଂହାର କରି କୂଟମାୟା ବିଶାରଦ 'ନାରକ' ଶେଷରେ ନାଶ କରି ପୃଥ୍ୱୀ ଭାର ଉଶ୍ୱାସ କଲେ । ଦେବଗଣ ସନ୍ତୁଷ୍ଟ ହେଲେ ମାତ୍ର ପରେ ପୃଥ୍ୱୀଦେବୀଙ୍କ ବିନୟ ଅନୁରୋଧରେ କୃଷ୍ଣ ଭଗଦତ୍ତଙ୍କୁ ପୁନ ଜୀବଦାନ ଦେଇ ତାଙ୍କୁ ସିଂହାସନା-

ରୁଦ୍ଧ କରାଇ 'ନାରକ' ଦ୍ୱାରା ବନ୍ଦିନୀ ଅବସ୍ଥାରେ ଥିବା ଷୋଳସହସ୍ର ସୁନ୍ଦରୀ କନ୍ୟାଙ୍କୁ ମୁକ୍ତଦେଇ ସେମାନଙ୍କୁ ସସମ୍ମାନ ଦ୍ୱାରକାକୁ ପଠାଇଲେ । ସମସ୍ତଙ୍କ ମନରେ ଆନନ୍ଦର ଢେଉ ଖେଳିଗଲା, ଶାନ୍ତି ପ୍ରତିଷ୍ଠିତ ହେଲା । ଏଣୁ ଏହା 'ନରକୋତ୍ସବ' ନାମରେ ମଧ୍ୟ ନାମିତ । ସେହି ନାରକ ଉଦ୍ଦେଶ୍ୟରେ ଲୋକେ ଖଡଗଦାରେ କାଉଁରିଆ କାଠିରେ ଅଗ୍ନିସଂଯୋଗ କରି ଆଲୋକରେ ତାଙ୍କୁ ସମ୍ବର୍ଦ୍ଧନା କରିବା ସଙ୍ଗେ ସଙ୍ଗେ ତାର ପୁତ୍ର 'ଭଗଦତ୍ତ'ର ସିଂହାସନ ଆରୋହଣକୁ ସମ୍ଭବତଃ ଆନନ୍ଦରେ ଅଭିନନ୍ଦନ ଜଣାନ୍ତି । ଏହି ଗୋମୟ ପରେ ସାର ରୂପେ କୃଷିକ୍ଷେତ୍ରରେ ବ୍ୟବହୃତ ହୋଇ କ୍ଷେତର ଉର୍ବରତା ବଢ଼ାଏ ବୋଲି ଧାରଣା । ଗୋବରଗଦା ନାରକାସୁରର ରୂପକଳ୍ପ । କାଉଁରିଆକାଠି ଶରତ୍ ଶେଷ ଭାଗରେ ଗାଁଗହଳରେ ଏକ ସହଜଲଭ୍ୟ ଉତ୍ପନ୍ନ ଅଗ୍ନିଭୋଜ୍ୟ ବସ୍ତୁ । ଗୋମୟ ଗ୍ରାମ୍ୟ କୃଷିକ୍ଷେତ୍ରର ଏକ ସାର୍ଥକ ସାର ଏଣୁ ଏହାର ପଶ୍ଚାତ୍ ଦେଶରେ କ୍ଷେତ୍ରର ଉର୍ବରତା ଜନିତ କୃଷି ଉନ୍ନତି ଭାବନା ପ୍ରଚ୍ଛନ୍ନ । 'ନାରକାସୁର' ପୁଣି କେତେକଙ୍କ ମତରେ 'ଅନ୍ଧକାରର' କଳ୍ପନା । 'ନରକ' ପାପ ତଥା ଅନ୍ଧକାରର ପ୍ରତୀକ । 'ସ୍ୱର୍ଗ' ହିନ୍ଦୁ ସଂସ୍କୃତିରେ ସେହିପରି ପୁଣ୍ୟ ଆଲୋକ ତଥା ମୁକ୍ତିର ଦ୍ୟୋତକ । ଏଣୁ 'ନରକ'ର କଳ୍ପନା ମୂଳରେ ଜୀବସୃଷ୍ଟିର ସ୍ମରଣାତୀତ ଆଦ୍ୟ ଅନ୍ଧକାର ଭାବ ନିହିତ । କ୍ରମେ ଆଲୋକ ରେଖା ଦେଖାଗଲା ଅର୍ଥାତ୍ ଜୀବସୃଷ୍ଟିର ଆଦ୍ୟସଞ୍ଚାର ହେଲା । ନରକାସୁର ରୂପୀ ଅନ୍ଧକାର ପରାଭୂତ ହେଲା, ଆଲୋକ ରୂପୀ ନବଜୀବନ ପ୍ରକାଶ ପାଇଲା । ପୂର୍ବ ବର୍ଣ୍ଣିତ ପୃଥ୍ୱୀଦେବୀ ଆଶ୍ୱସ୍ତା ହେଲେ ଅର୍ଥାତ୍ ଜୀବସୃଷ୍ଟିରେ ପୃଥ୍ୱୀବକ୍ଷ ସ୍ଫୀତ ହେଲା । ନାରକାସୁର ବନ୍ଦିନୀ ଷୋଳସହସ୍ର କନ୍ୟା ମୁକ୍ତି ପାଇ ଦ୍ୱାରକାକୁ ଗଲେ ଅର୍ଥାତ୍ ଅନ୍ଧକାରରୁ ସୁନ୍ଦର ଆକର୍ଷଣୀୟ ଅଗଣନ ଜୀବ ଦ୍ୱାରକା ଅର୍ଥାତ୍ ଆଲୋକମାର୍ଗ ବା ଜୀବନର ନୂତନାଲୋକ ଦେଖିଲେ ।

ଲକ୍ଷ୍ମୀପୂଜା ଏ ପର୍ବର ଅନ୍ୟତମ ଆକର୍ଷଣ ହୋଇଥିବାରୁ ଅନ୍ୟ ଏକ ପୌରାଣିକ ସୂତ୍ର ସ୍ମୃତିକୁ ଆସେ । ଏହି ଦୀପାବଳୀ ଅମାବାସ୍ୟା ତିଥିରେ ସମୁଦ୍ରମନ୍ଥନ ଜାତ କ୍ଷୀରବ୍ଧିତନୟା 'ଲକ୍ଷ୍ମୀ' ଅର୍ଥାତ୍ ସୌଭାଗ୍ୟ ଦେବୀ ଅସୁରରାଜା ବଳିଙ୍କ ଦ୍ୱାରା ସପ୍ତମ ପାତାଳରେ ବନ୍ଦିନୀ ଅବସ୍ଥାରେ

ଥିଲେ । ବାମନ ଅବତାରୀ ବିଷ୍ଣୁ ବଳିଙ୍କୁ ଛନ୍ଦେଇ ଉଭୟ 'ଲକ୍ଷ୍ମୀ' ଓ ବନ୍ଦୀ ଦେବତାମାନଙ୍କୁ ଏହି ତିଥିରେ ମୁକ୍ତ କରିଥିବାରୁ ଏହା ଲକ୍ଷ୍ମୀଙ୍କ ମୁକ୍ତିଦିବସ ରୂପେ ମଧ୍ୟ ପରିଚିତ । ଶାସ୍ତ୍ରରେ ଲେଖାଅଛି—

"ବଳିକାରାଗୃହାଦେଶୀ ଲକ୍ଷ୍ମୀସ୍ତାପି ବିମୋଚିତା
ଲକ୍ଷ୍ମ୍ୟା ସାର୍ଦ୍ଧଂ ତତୋ ଦେବା ନୀତାଃ କ୍ଷୀରୋଦଧିଂ ପୁନଃ"

ପରେ ବିଷ୍ଣୁ କାରାମୁକ୍ତା ଲକ୍ଷ୍ମୀଙ୍କ ସହ କ୍ଷୀରସାଗରକୁ ଗମନ କରିଥିଲେ । 'ଲକ୍ଷ୍ମୀ'ଙ୍କ ସହ ସମୁଦ୍ରମନ୍ଥନ ସ୍ମୃତି ଓ ଅସୁରରାଜ ବଳି ବିଷୟ ସମ୍ପୃକ୍ତ । ଦାନବୀର ବଳି ତାଙ୍କ ଉପଦେଷ୍ଟା ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଉପଦେଶାନୁଯାୟୀ 'ବିଶ୍ୱଜିତ୍' ଯଜ୍ଞର ଆୟୋଜନ କରି ଯଜ୍ଞଫଳ ଦ୍ୱାରା ତ୍ରିପୁରବିଜୟୀ ହେବାକୁ ମନ ବଳାଇଲେ । ବିଷ୍ଣୁ ଯାଚକ ଉପସ୍ଥିତ ହୋଇ ଦାମ୍ଭୀ ବଳିଙ୍କଠାରୁ ସ୍ୱାଭୀଷ୍ଟ ଦାନ ଗ୍ରହଣ କଲେ । ଶେଷରେ ଶୁକ୍ରଙ୍କ ବାରଣ ସତ୍ତ୍ୱେ ସତ୍ୟସନ୍ଧ 'ବଳି' ବାମନରୂପୀ ବିଷ୍ଣୁଙ୍କୁ ତ୍ରିପାଦଭୂମି ଦାନ କରିବାକୁ ପ୍ରତିଶ୍ରୁତି ଦିଅନ୍ତେ ବିଷ୍ଣୁ ସ୍ୱର୍ଗ ମର୍ତ୍ତ୍ୟକୁ ଦୁଇ ପାଦରେ ନେଇ ତୃତୀୟ ପାଦରେ ବଳିଙ୍କି ପାତାଳ-ପୁରର ସପ୍ତମପୁରକୁ ଚାପିଦେଲେ । ମାତ୍ର ତା' ଦାନରେ ମୁଗ୍ଧ ହୋଇ ଓ ବଳି ସ୍ତ୍ରୀ 'ବିନ୍ଧ୍ୟାବଳୀ' ଓ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ ଅନୁରୋଧ କ୍ରମେ ସାବର୍ଣ୍ଣି ମନ୍ୱନ୍ତରରେ ତ୍ରିଲୋକର ଅଧିପତି ହେବାର ବର ପ୍ରଦାନ କଲେ । 'ବଳି' ତାଙ୍କର ପ୍ରିୟ ପରିଜନଙ୍କୁ ହରାଇ ଦୁଃଖିତ, ଏଣେ ପୃଥିବୀର ପ୍ରାଣୀମାନେ ଦାମ୍ଭୀ ଓ ଲୋକପ୍ରିୟ ବଳିରାଜାଙ୍କ ସ୍ନେହ ତଥା ଦର୍ଶନରୁ ବଞ୍ଚିତ ହୋଇ ମର୍ମାହତ ହେଲେ । ଏଣୁ ବିଷ୍ଣୁ ଏହି କାର୍ତ୍ତିକ ଅମାବାସ୍ୟାର ଅର୍ଦ୍ଧରାତ୍ରିରେ ବଳିଙ୍କୁ ଏହି ନିଖିଳ ବିଶ୍ୱରେ ବର୍ଷକେ ଥରେ ଭ୍ରମଣ କରିବାକୁ ଅନୁମତି ଦେଲେ ! ଫଳରେ ପ୍ରଜାଗଣ ଉଲ୍ଲସିତ ହୋଇ ଆଲୋକମାଳାରେ 'ବଳି'ଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିବାକୁ ଲାଗିଲେ ବୋଲି ପ୍ରାଚୀନ ପୁରାଣ ପୃଷ୍ଠାରେ ବର୍ଣ୍ଣିତ । ଏଣୁ ଏହି ଦୀପାବଳୀ ଉତ୍ସବ 'ବଳିରାଜ୍ୟ' ଉତ୍ସବ ନାମରେ ମଧ୍ୟ ନାମିତ । ବିଖ୍ୟାତ ମୁସଲମାନ ପରିବ୍ରାଜକ ଆଲ୍‌ବିରୁଣୀ ମଧ୍ୟ ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣନା କରିଅଛନ୍ତି—

"ବାସୁଦେବଙ୍କ ପତ୍ନୀ ଲକ୍ଷ୍ମୀ ଏହି ପର୍ବର ମୂଳ ପୂଜ୍ୟା ଦେବୀ । ସେ ବର୍ଷକେ ଥରେ ବିରୋଚନ ପୁତ୍ର ବନ୍ଦୀ ବଳିଙ୍କୁ ସପ୍ତମ ପାତାଳରୁ ଏହି

ହିନ ମୁକ୍ତ ହିଅନ୍ତ । ଏଣୁ ଏହ୍ବ ପର୍ବଟି 'ବଳଗଜ୍ୟ' ନାମରେ କଥିତ ।"
ଏଣୁ ସୌଭାଗ୍ୟ ଦେବୀ 'ଲକ୍ଷ୍ମୀ' ସହ ସତ୍ୟସନ୍ଧ ପୁଣ୍ୟଶ୍ଳୋକ 'ବଳ' ଚରିତ ମଧ୍ୟ ଗ୍ରଥିତ ଓ ଏହା ସହ ଅଲକ୍ଷ୍ମୀପୂଜା ( ଲକ୍ଷ୍ମୀ ମାରଜନା ପୂର୍ବରୁ ) ମଧ୍ୟ ଏହ୍ବ ପର୍ବର ଅନ୍ୟ ଏକ ବୈଶିଷ୍ଟ୍ୟ । ଅଲକ୍ଷ୍ମୀ ଲକ୍ଷ୍ମୀଙ୍କର ଜ୍ୟେଷ୍ଠା ଭଗିନୀ ଓ ରଜା ବରୁଣଙ୍କ ରାଣୀ ମାରବତୀ ଗର୍ଭଜାତ । ସେ ଦେଖିବାକୁ କୁତ୍ସିତା, ପିଙ୍ଗଳବର୍ଣ୍ଣା, ଧାନ ଭୁଷୀ ହାଣ୍ଡି ପରି ମୁହଁ, ଆଖି ଗୁଡ଼ିକ ଚକା, ନାକ ଉଚ୍ଚ, କରତ୍ରର ଦାନ୍ତ ପରି ଦାନ୍ତ, ମେଣ୍ଢା ପରି ସ୍ଵର, କୁଲ ପରି କାନ, କଳତ୍ତୁଡ଼ୀ ଶାବଳ ପରି ଆଙ୍ଗୁଳି, ଲମ୍ବା ହାତ, ବ୍ରଣଯୁକ୍ତ, ପେଚ୍ଚୁ ସଦୃଶ ମୁଖ, ଅଳ୍ପଜଙ୍ଘା, ଡାମରକାଞ୍ଜ ପରି ଚେହେରା, ଆଖି ମନ୍ଦାର ଫୁଲ ପରି ଇତ୍ୟାଦି । ଅଲକ୍ଷ୍ମୀର ବଡ଼ମନୋଜ୍ଞ ତଥା ହାସ୍ୟଉଦ୍ଦୀପକ ବର୍ଣ୍ଣନା ଶାରଦାପ୍ରେସ ପ୍ରକାଶିତ ଶ୍ରୀ ଇନ୍ଦ୍ରମଣି ସାହୁଙ୍କ ରଚିତ ମହାଲକ୍ଷ୍ମୀ ପୁରାଣରେ ଦେଖିବାକୁ ମିଳେ । ଏହ୍ବ ଅଲକ୍ଷ୍ମୀଙ୍କୁ ବିବାହ କରିବାକୁ କେହ୍ବ ରାଜି ନ ହେବାରୁ ଲକ୍ଷ୍ମୀଙ୍କ ମିନତିରେ ନୃସିଂହ ଶେଷରେ ମହର୍ଷି 'ଉଦ୍ଦାଳକ'ଙ୍କୁ ଅନୁରୋଧ କଲେ । 'ଅଲକ୍ଷ୍ମୀ' ଋଷିଙ୍କ ପତ୍ନୀ ହେଲେ ମଧ୍ୟ ତାର ବ୍ୟବହାରରେ କୌଣସି ପରିବର୍ତ୍ତନ ଘଟିଲା ନାହିଁ । ଦିନେ ମୁନି ଉଦ୍ଦାଳକ ପତ୍ନୀ ନିବିଡ଼ ବନକୁ ଡାକନେଇ ଗୋଟିଏ ଅଶ୍ବତ୍ଥ ବୃକ୍ଷ ମୂଳରେ ତାକୁ ବସାଇ ଅନ୍ନ ଆଣିବାକୁ କହ୍ବ ଅନ୍ତର୍ଦ୍ଧାନ ହୋଇଗଲେ । ଅଲକ୍ଷ୍ମୀ ଦୁଇ ତିନ ଦିନ ବସି ବସି ଶେଷରେ ଉଚ୍ଚରେ କାନ୍ଦିବାକୁ ଲାଗିଲା । ଲକ୍ଷ୍ମୀ ଓ ନୃସିଂହ ଜାଣିପାରି ଉପସ୍ଥିତ ହୋଇ ତାହାକୁ ସାନ୍ତ୍ୱନା ଦେଲେ ଓ ଲକ୍ଷ୍ମୀ ସହ ଅଲକ୍ଷ୍ମୀଙ୍କୁ ମଧ୍ୟ ସର୍ବ ହୃଦୟରେ ବିରାଜମାନ ହେବାକୁ ବର ଦେଲେ ।

ତେଣୁ ସମ୍ଭବତଃ ଏହ୍ବ ପୌରାଣିକ ପୃଷ୍ଠଭୂମି ଅନୁଯାୟୀ ପାପ ଦାରିଦ୍ର୍ୟ ତଥା ବ୍ୟଭିଚାର ରୂପକଳ୍ପ ଏହ୍ବ ଅଲକ୍ଷ୍ମୀକୁ ପ୍ରଥମେ ପୂଜା କରାଯାଇ ରାତି ସମୟରେ ବୃକ୍ଷରେ ଛାଡ଼ିଦେଇ ସାରିଲା ପରେ ଲକ୍ଷ୍ମୀ ପୂଜା ଅନୁଷ୍ଠିତ ହୁଏ । ହୃଦୟରୁ 'କୁ' କୁ ତ୍ୟାଗ କରି 'ସୁ'କୁ ବରଣ କରିବାକୁ ହେବ ଓ ଏହ୍ବ 'କୁ' କୁ କେବଳ ତ୍ୟାଗ ନୁହେଁ । ରାତିରେ ମଧ୍ୟ ଅଲକ୍ଷ୍ମୀ ଆଶ୍ରୟୀ କୌଣସି ବୃକ୍ଷ ମୂଳରେ ଆଶ୍ରୟ ନେବା ଯେପରି ଶାସ୍ତ୍ରସମ୍ମତ ନୁହେଁ ସେହ୍ବପରି ବୈଜ୍ଞାନିକ ଭାବେ ସମର୍ଥିତ ମଧ୍ୟ ନୁହେଁ ।

ବଙ୍ଗୀୟ ସମାଜରେ ମଧ୍ୟ ଏହି ଅଲକ୍ଷ୍ମୀ ପୂଜା ଏହି ପର୍ବରେ ପ୍ରଥମେ କରାଯିବାର ପ୍ରମାଣ ରହିଛି ।

"କୁଳାଗ୍ରର ମତେ କାହାର କାହାର ନିୟମ ଆଛେ ଯେ ଆଗେ ବାହିରେ ଗୋମୟ ଦ୍ୱାରା ପ୍ରସ୍ତୁତ ଅଲକ୍ଷ୍ମୀର ପାବାଦି ଦ୍ୱାରା ପୂଜା କରିୟା, ତତ୍ପରେ ଲକ୍ଷ୍ମୀ ପୂଜା କରିୟା ଥାକେ ।"

ଅଲକ୍ଷ୍ମୀ ଧ୍ୟାନଂ :—"ଓଁ ଅଲକ୍ଷ୍ମିଣଂ କୃଷ୍ଣବର୍ଣ୍ଣାଂ କ୍ରୋଧାନନାଂ କଳହପ୍ରିୟାମ୍ ।

କୃଷ୍ଣବସ୍ତ୍ର ପରିଧାନାଂ ଲୌହବର୍ଣ୍ଣ ବିଭୂଷିତାଂ
ଭଗ୍ନାସନାସ୍ଥାଂ ଦ୍ୱିଭୂଜାଂ ଶର୍କରାଭିଷ୍ଟ-ଚନ୍ଦନାଂ"
( ଦ୍ୱୀପାନ୍ୱିତା ଲକ୍ଷ୍ମୀପୂଜା—ବଙ୍ଗଳା ପୁରୋହିତ ଦର୍ପଣ )

ଦୀପାବଳୀ ଉତ୍ସବ ସହ ରାବଣାରି ରାମଙ୍କ ଅଯୋଧ୍ୟା ପ୍ରତ୍ୟାଗମନ ସମ୍ବନ୍ଧୀୟ ସୁଖଦ ସ୍ମୃତି ମଧ୍ୟ ଜଡିତ ଥିବାର କେତେକ ପୁରାଣରେ ସୂଚିତ । ଯେଉଁ "ଦଶହରା" ରାମଙ୍କ ବିଜୟ ନିଶାଣ ସ୍ୱରୂପେ "ବିଜୟା ଦଶମୀ" ଆଖ୍ୟା ଲାଭ କରିଥିଲା, ତାହାର ପୂର୍ଣ୍ଣତାପ୍ରାପ୍ତି ଘଟିଲା କାର୍ତ୍ତିକ ଅମାବାସ୍ୟା ଦିନ, ଯେଉଁ ଦିନ ରାମଚନ୍ଦ୍ର ଅଭିଷିକ୍ତ ହେଲେ । ଅଯୋଧ୍ୟାବାସୀ ଉତ୍ସବକୁ ଆନନ୍ଦମୁଖର କରିବା ନିମନ୍ତେ ଦୀପାଲୋକରେ ସମ୍ବର୍ଦ୍ଧନା ଉତ୍ସବ ପାଳନ କରିଥିଲେ ।

ଦୀପାବଳୀ ପର୍ବସହ ଆଦ୍ୟାଶକ୍ତି କରାଳବଦନା କାଳୀପୂଜା ସମ୍ବନ୍ଧାନ୍ୱିତ । ଏଣୁ ଏହାର ଦୀପାବଳୀ ବା ଦିଓ୍ୱାଲି ନାମ ସହ କାଳୀପୂଜା ବା ଶ୍ୟାମାପୂଜା ଦିବସ ରୂପେ ସର୍ବତ୍ରଭାରତୀୟ ସ୍ୱୀକୃତି ଲାଭ କରିଛି । ରାକ୍ଷସ ସେନାପତି ରକ୍ତବୀର୍ଯ୍ୟର ନିଧନ ନିମନ୍ତେ କାଳୀଙ୍କ ଅଭ୍ୟୁଦୟ 'ଚଣ୍ଡୀ'ରେ ବର୍ଣ୍ଣିତ । ଆସୁରିକଶକ୍ତିର ସଂହାର ସହ ପୃଥିବୀରେ ଶାନ୍ତି ସ୍ଥାପନ 'କାଳୀ' ଆବିର୍ଭାବର ଉଦ୍ଦେଶ୍ୟ । ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକ କାଳୀପୂଜା ସମ୍ବନ୍ଧରେ ଲେଖିବାକୁ ଯାଇ ଲେଖିଛନ୍ତି—"ସଂସାରର ଗର୍ବ, ଦମ୍ଭ, ଅଭିମାନ ଓ ଐଶ୍ୱର୍ଯ୍ୟର ନଶ୍ୱରତା ସାଧାରଣ ମନୁଷ୍ୟକୁ ଶିଖାଇବା ନିମିତ୍ତ କାଳୀ ମୂର୍ତ୍ତିର କଳ୍ପନା । ହିନ୍ଦୁର ନୂଆବର୍ଷ ମାର୍ଗଶିର ମାସରେ

ଆରମ୍ଭ ହୁଏ । କାଳୀପୂଜା ପଡ଼େ ବର୍ଷର ଶେଷ କାର୍ତ୍ତିକ ମାସରେ । ଗୋଟିଏ ବର୍ଷ ଶେଷ ହେଲା । କାଳ ଗୋଟିକୁ ଗ୍ରାସିଲା । ଏହିପରି କେତେ କୋଟି ଗ୍ରାସିଛି ଓ ଗ୍ରାସିବ । ଚାଲି ଯାଉଥିବା ବର୍ଷ ବା କାଳକୁ ଅନନ୍ତକାଳ ସ୍ରୋତରେ ମିଶାଇବା ନିମିତ୍ତ ହିନ୍ଦୁ ଦୀପ ଜାଳି ବାଟ ଦେଖାଏ ଓ ଆସୁଥିବା ନୂତନ ବର୍ଷକୁ ମଧ୍ୟ ଅଭିବାଦନ କରେ । ଅନ୍ଧକାର ଅମାବାସ୍ୟାର ରାତି । ପ୍ରଳୟକାଳୀନ ଅନ୍ଧକାରର ସୂଚନା ମାତ୍ର ।"

('ହିନ୍ଦୁ ଆସ୍ଥାର ବନିୟାଦ' ପୃ ୧୭)

ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ଦୀପଦାନ ଓ ଗୟାଶ୍ରାଦ୍ଧ ବ୍ୟବସ୍ଥା ଉତ୍କଳରେ ବେଶି ଗାଁ ଗହଳରେ ଲୋକପ୍ରିୟ । ଆଶ୍ୱିନର ମହାଳୟା ଓ କାର୍ତ୍ତିକର ଦୀପାବଳୀ ଅମାବାସ୍ୟା ପିତୃପୁରୁଷଙ୍କ ନିମିତ୍ତ ପୂଜା ନିମନ୍ତେ ଶ୍ରେଷ୍ଠ ତିଥି । ପ୍ରକାରାନ୍ତରେ ଏହି ପିତୃପୁରୁଷମାନେ ହିଁ ଆମର ଦେବତା । ଏଣୁ ଏମାନଙ୍କୁ ସନ୍ତୁଷ୍ଟ ନ କଲେ ମନୁଷ୍ୟ ନର୍କଗାମୀ ହୁଏ ବୋଲି ଧାରଣା । ପିତୃଲୋକର ଉଦ୍ଧାର ସହ ନିଜର ଶାରୀରିକ ତଥା ଆଧ୍ୟାତ୍ମିକ ଉନ୍ନତି ନିମନ୍ତେ ଦୀପଦାନ କରଣୀୟ । ଶାସ୍ତ୍ରରେ ଅଛି:—

"ନମଃ ପିତୃଭ୍ୟଃ ପ୍ରେତେଭ୍ୟୋ ନମୋ ଧର୍ମାୟ ବିଷ୍ଣବେ
ନମୋ ଯମାୟ ରୁଦ୍ରାୟ କାନ୍ତାର ପତୟେ ନମଃ ।"

ଅର୍ଥାତ୍ ପିତୃଗଣଙ୍କୁ ପ୍ରେତମାନଙ୍କୁ ଧର୍ମରୂପୀ ବିଷ୍ଣୁଙ୍କୁ ଯମରାଜାଙ୍କୁ କାନ୍ତାର ଅର୍ଥାତ୍ ଦୁର୍ଗମ ପଥର ରକ୍ଷାକାରୀ ରୁଦ୍ରଙ୍କୁ ନମସ୍କାର । ଏହା ମୂଳରେ କାର୍ତ୍ତିକ ମାସସାରା "ଆକାଶଦୀପ" ଦେବାର ବ୍ୟବସ୍ଥା ପୁରାଣ-ସମ୍ମତ ଜଣାଯାଏ । ମାସତମାମ୍ ଦୀପଦାନ ବିଧି ଥିଲେ ମଧ୍ୟ ଏହି ପିମ୍ପେଇ ବା ପିପେଇ ଅମାବାସ୍ୟାରେ କାଉଁରିଆ କାଠିରେ ଅଗ୍ନି ସଂଯୋଗ କରି ବଡ଼ବଡ଼ିଆଙ୍କୁ ଆନନ୍ଦ ମନରେ ପରିବାରବର୍ଗ ଐକତାନିକ ସ୍ୱରରେ ଡାକିବା ମୂଳରେ ସ୍ୱର୍ଗତଃ, ପିତୃପୁରୁଷ ରୂପୀ ଦେବତାଙ୍କୁ ଅଭିନନ୍ଦନ ଜଣାଇ ତାଙ୍କଠାରୁ ପରୋକ୍ଷ ଆଶୀର୍ବାଦ ଭିକ୍ଷା କରିବା କେଉଁ ଆବହମାନ କାଳରୁ ସମାଜରେ ଗଢ଼ି ଆସୁଛି । ଯେତେବେଳେ ଅମାବାସ୍ୟାର ଘନ ଅନ୍ଧକାର ମଧ୍ୟରେ ଜ୍ୱଳନ୍ତା କାଉଁରିଆ କାଠି ହାତରେ ଧରି ଉର୍ଦ୍ଧ୍ୱକୁ ଦର୍ଶାଇ ପରିବାରର ମୁଖ୍ୟକର୍ତ୍ତା ସମେତ ବାଳକ ବାଳିକାମାନେ ଉଚ୍ଚ

ସ୍ୱରରେ ଡାକନ୍ତି, "ବଡ଼ ବଡ଼ୁଆ ହୋ, ଅନ୍ଧାରେ ଆସ, ଆଲୁଏ ଯାଅ, ଗଙ୍ଗା ଯାଅ, ଗୟା ଯାଅ, କାଶୀ ଯାଅ; ପୁରୁଷୋତ୍ତମରେ ମହାପ୍ରସାଦ ଖାଇ ବାଇଶି ପାହାଚରେ ଗଡ଼ଗଡ଼ଉ ଥାଅ।" ସେତେବେଳେ ଏହା ମଧ୍ୟରେ ଥିବା ଭାରତୀୟ ପୁଣ୍ୟକ୍ଷେତ୍ର ଗୁଡ଼ିକର ଧର୍ମଯାତ୍ରା ସହ ଉତ୍କଳୀୟ ପୁରୁଷୋତ୍ତମ କ୍ଷେତ୍ରରେ ପିତୃପୁରୁଷଙ୍କର ପୁଣି ବାଇଶି ପାହାଚରେ ଶେଷ ଆଶ୍ରୟ ନେବା ମୂଳରେ ଭାରତୀୟ ସଂସ୍କୃତି ମଧ୍ୟରେ ଉତ୍କଳୀୟ ସାଂସ୍କୃତିକ କ୍ଷେତ୍ର ଜଗନ୍ନାଥଧାମର ମହିମା ପ୍ରାପ୍ତିମାନ ଜଣାଯାଏ । ଅଧୁନା 'ଦୀପାବଳୀ'ର ସବୁଠାରୁ ବିଶେଷ ଆକର୍ଷଣ ହେଉଛି ଆତସବାଜି ପ୍ରଦର୍ଶନ । ଏହି ବାଣମାରୀ ଉତ୍ସବରେ ପ୍ରଚଳିତ ବିବିଧ 'ବାଣ' ଐତିହାସିକଙ୍କ ମତରେ ୧୪୦୦ ମସିହା ପରେ ଭାରତରେ ପ୍ରବେଶ ଲାଭ କରିଛି । ଏହି ଦୀପଦାନ ତଥା ବାଣମାରୀ ମୂଳରେ ସ୍ୱାସ୍ଥ୍ୟ ବିଜ୍ଞାନଦୃଷ୍ଟିରୁ ବିଚାର କଲେ ବର୍ଷାଋତୁ ଶେଷରେ ଉଦ୍‌ଭୂତ ହୋଇଥିବା ନାନାଦି ରୋଗ ଉତ୍ପାଦକ କୀଟପତଙ୍ଗ ଓ ଜୀବାଣୁର ଧ୍ୱଂସ ସାଧନ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ଥିଲେ ମଧ୍ୟ ବାହ୍ୟତଃ ଏହା ଆନନ୍ଦ ତଥା ଆଲୋକର ପର୍ବ । ବାସଗୃହକୁ ପରିଷ୍କାର ଓ ପରିଚ୍ଛନ୍ନ ରଖିବା ବିଧି ଉତ୍ତମ ସ୍ୱାସ୍ଥ୍ୟ ଗଠନର ସହାୟକ ।

ଜାତୀୟ ପର୍ବ, ଆନନ୍ଦ ଓ ଆଲୋକର ମହା ପାବଣ ଦୀପାବଳୀ ଏହିପରି ପ୍ରତିବର୍ଷ ଆସୁଥାଉ ଓ ଭାରତୀୟ ନରନାରୀଙ୍କ ହୃଦୟରେ ଜାତୀୟ ସଂହତି, ପ୍ରଫୁଲ୍ଲତା ସାମାଜିକ ମିଳାମିଶା, ଧର୍ମାବଲମ୍ବନ, ନିଷ୍ଠା, ଦୈହିକ ତଥା ମାନସିକ ସ୍ୱାସ୍ଥ୍ୟ ଗଠନ ଲିପ୍‌ସାକୁ ଉଜ୍ଜୀବିତ କରୁଥାଉ ।



(ଜୀବନରଙ୍ଗ ଅକ୍ଟୋବର-ନଭେମ୍ବର' ୭୯ ଦୀପାବଳୀ ସଂଖ୍ୟାରେ ପ୍ରକାଶିତ)

# 'ଦୀପାବଳୀ'ର ଐତିହାସିକ ପୃଷ୍ଠଭୂମି

ଭାରତବର୍ଷ କେବଳ ସୌନ୍ଦର୍ଯ୍ୟ ବା ଔଦାର୍ଯ୍ୟର ଦେଶ ନୁହେଁ, ଏହା ମଧ୍ୟ ଆଲୋକର ଦେଶ । ଏହା ବାହ୍ୟାଲୋକ ନୁହେଁ, ଜୀବନ ପୁଷ୍ଟିର ସହାୟକ । ଏହାର ପ୍ରତ୍ୟେକ ପର୍ବପର୍ବାଣି ମଧ୍ୟରେ ଏହି ଜୀବନତତ୍ତ୍ୱ ରୂପୀ ଆଲୋକବର୍ତ୍ତିକା ପାଶ୍ଚାତ୍ୟବାସୀଙ୍କୁ କାଳେ କାଳେ ମୁଗ୍ଧ ଓ ଚମତ୍କୃତ କରିଆସିଛି । ତାପାଇଁ ପର୍ବ ଦୀପାବଳୀ ସେହିପରି ଭାରତୀୟ ସାଂସ୍କୃତିକ ଜୀବନର କାର୍ତ୍ତିବାହ, ବହୁ ଇତିହାସର ସ୍ମୃତିଧାରକ, ଆନନ୍ଦ ଓ ଆଲୋକର ମହାପାବନ । ତତ୍‌ସମ୍ବନ୍ଧୀୟ ବିବିଧ ସ୍ମୃତିର ରୋମନ୍ଥନ ସହ ଇତିହାସ ପୃଷ୍ଠାରେ ପର୍ବର ମହତ୍ତ୍ୱ ଅନ୍ୱେଷଣ କଲେ ବୈଚିତ୍ର୍ୟର ନାନା କଳକଲ୍ଲୋଳରେ ଆମର କଳ୍ପନା ଓ ଭାବନାର ସମୁଦ୍ର ଉଚ୍ଛୁଳି ଉଠେ ।

ଐତିହାସିକ ପୃଷ୍ଠଭୂମିର ଏକ କିମ୍ବଦନ୍ତୀରୁ ଜଣାଯାଏ ଯେ, ଉଜ୍ଜୟିନୀର ରାଜା ବିକ୍ରମାଦିତ୍ୟ ଏହିଦିନ ସିଂହାସନାରୂଢ଼ ହୋଇଥିଲେ । ଗୁପ୍ତବଂଶର ଏହି ରାଜା ତାଙ୍କର 'ଗୁପ୍ତାବ୍ଦ' ଏହି ଦିବାଲୀରୁ ପ୍ରବର୍ତ୍ତନ କରିଥିଲେ । ଏଣୁ ଏହା ଜାନୁୟାରୀ ପହିଲି ପରି ଏକ ନୂଆ ବର୍ଷର ଦିନ ।

ଗୁପ୍ତଯୁଗର ଏହି ଇତିହାସ ପୃଷ୍ଠପଟରୁ ହିଁ ଆହୁରି ଏକ ଶାସ୍ତ୍ରବାଣୀ ପାଠକ ସମକ୍ଷକୁ ଆସେ । ତାହା ହେଉଛି 'କାମସୂତ୍ର' । ଗ୍ରନ୍ଥପ୍ରଣେତା ମହର୍ଷି ବାତ୍ସ୍ୟାୟନ ମଧ୍ୟ ଏହି ଦିବାଲୀ ଉପରେ ତାଙ୍କର ଉଲ୍ଲିଖିତ ଗ୍ରନ୍ଥରେ ଆଲୋକପାତ କରିଅଛନ୍ତି । 'କାମସୂତ୍ର'ର ୪ର୍ଥ ଅଧ୍ୟାୟରେ ବାତ୍ସ୍ୟାୟନ ଯେଉଁ ଏକ ନାଗରିକ ବୃତ୍ତ ( ନାଗରିକ ଜୀବନର ) ପ୍ରସ୍ଥ ଉଲ୍ଲେଖ କରି ଅଛନ୍ତି, ସେଥିରେ ସେ ୫ଟି ଜନପ୍ରିୟ ସାମାଜିକ ଉତ୍ସବର ବର୍ଣ୍ଣନା କରି ଅଛନ୍ତି । ସେଗୁଡ଼ିକ ହେଉଛି-୧-ଘଟାନ ବନ୍ଧନ-(ଦେବତାଙ୍କ ଉଦ୍ଦେଶ୍ୟରେ ଏକ ସାରସ୍ୱତ ଭବନରେ ସମସ୍ତଙ୍କର ସମ୍ମେଳନ । ୨-ଗୋଷ୍ଠୀ ସମବାୟ) ( କାବ୍ୟ ଶାସ୍ତ୍ରାଦି ଆଲୋଚନା ) । ୩-ସୋମପାନ ( ସମାପାନ ବା

ପାନଗୋଷ୍ଠୀ )। ୪-ଉଦ୍ୟାନଗମନ । ୫-ସମସ୍ୟା କ୍ରୀଡ଼ା । ଏହି ଶେଷୋକ୍ତ ଉତ୍ସବରେ ସମସ୍ତେ ଅଂଶ ଗ୍ରହଣ କରୁଥିବାର ସେ ଉଲ୍ଲେଖ କରିଅଛନ୍ତି । ବିଶେଷତଃ ଏହି ସମସ୍ୟା କ୍ରୀଡ଼ାର ମୁଖ୍ୟ ପର୍ବ ୩ଟି ହେଲା—ଦିବାଲି ରାତି, କୋଜାଗରୀ ପୂର୍ଣ୍ଣିମା ଓ ମଦନ-ତ୍ରୟୋଦଶୀ । ଦିବାଲି ରାତି କାର୍ତ୍ତିକ ଅମାବାସ୍ୟାରେ, କୋଜାଗରୀ ଉତ୍ସବ ଆଶ୍ୱିନ ପୂର୍ଣ୍ଣିମାରେ ଓ ମଦନ ତ୍ରୟୋଦଶୀ ବସନ୍ତଋତୁର ପ୍ରଥମ ଶୁକ୍ଳପକ୍ଷ ତ୍ରୟୋଦଶୀ ତିଥିରେ ପାଳିତ ହେଉଥିଲା ।

ବାତ୍ସ୍ୟାୟନଙ୍କ 'କାମସୂତ୍ର' ପରବର୍ତ୍ତୀ କବି ସୁବନ୍ଧୁ ଓ କାଳିଦାସଙ୍କୁ ମଧ୍ୟ ପ୍ରଭାବିତ କରିଥିବାରୁ ତାଙ୍କୁ ସମାଲୋଚକମାନେ ଏ ଦୁଇ କବିଙ୍କୁ ପୂର୍ବବର୍ତ୍ତୀ ବୋଲି ମତବ୍ୟକ୍ତ କରିଅଛନ୍ତି । ଏଣୁ ପୂର୍ବ ଗୁପ୍ତାଦି ପ୍ରଚଳନ ସହ ବାତ୍ସ୍ୟାୟନଙ୍କ ଲିଖିତ ଉକ୍ତ କାବ୍ୟ 'ବର୍ଣ୍ଣନାର ସାମ୍ୟ ଦୃଷ୍ଟିରୁ ଦିବାଲିର ଆସନ ସୁପ୍ରତିଷ୍ଠିତ ଜଣାଯାଏ ।

ଦୀପାବଳୀ ଜଳାଇ ତାରି ମାଧ୍ୟମରେ ଆନନ୍ଦ ଲାଭ ସବୁ ଦେଶରେ ସବୁ ସମୟରେ ଉଣା ଅଧିକେ ଦେଖାଯାଏ । ଚୀନଦେଶର ଆନ ୟୋଙ୍ଗସିନ୍ ନାମକ ଜଣେ କବି (୧୦୦୭-୧୦୭୨) ଆମ ଭାରତୀୟ ଦିବାଲି ପରି ତାଙ୍କ ଦେଶରେ ଏକ ଆଲୋକପର୍ବ । ଲଣ୍ଠନ ପର୍ବ (Lantern Festival)କୁ କେନ୍ଦ୍ର କରି ରଚନା କରିଥିବା କବିତାରୁ ସେହି ଆନନ୍ଦ ଓ ଜୀବନ ସ୍ଫୂର୍ତ୍ତିର ପରିଚୟ ମିଳେ ।

ମୋଗଲ ଯୁଗରେ ପ୍ରସିଦ୍ଧ ଐତିହାସିକ 'ଆବୁଲଫାଜଲ୍' ତାଙ୍କର ଆଇନ-ଇ-ଆକବରୀରେ ମଧ୍ୟ ଦୀପାବଳି ସମ୍ବନ୍ଧରେ ଲେଖିବାକୁ ଯାଇ ଏ ପର୍ବର ୪ଟି ବିଶେଷତ୍ୱ ଉଲ୍ଲେଖ କରି ଯାଇଅଛନ୍ତି । ପ୍ରଥମତଃ ବଣିକ ଗୋଷ୍ଠୀ ମଧ୍ୟରେ ଏହା ଏକ ସର୍ବାପେକ୍ଷା ଅଧିକ ଲୋକପ୍ରିୟ ପର୍ବ । ଦ୍ୱିତୀୟତଃ ଆଲୋକ ସଜ୍ଜା । ତୃତୀୟତଃ ମୁସଲମାନଙ୍କ ପର୍ବଗୁଡ଼ିକ ପରି ଏଥିରେ ମଧ୍ୟ ଦୀପାବଳୀର ଜ୍ୱଳନ ଓ ଶେଷତଃ ଅକ୍ଷକ୍ରୀଡ଼ା ସହ ଅନ୍ୟାନ୍ୟ ଦେଶୀୟ କ୍ରୀଡ଼ାଦିର ଆୟୋଜନ । ନାନା ବାଣମାରି କାମ ଇତିହାସରୁ ଯାହା ଜଣାଯାଏ, ସେସବୁ ୧୪୦୦ ମସିହା ପରେ ଦିବାଲିରେ ପ୍ରବେଶ କରିଥିବାର ମନେହୁଏ । କାରଣ ୧୪୦୦ ମସିହା ପରେ ଭାରତୀୟ ଯୁଦ୍ଧ-

କ୍ଷେତ୍ରରେ ଗୁଳିଗୋଳା ବନ୍ଧୁକ ପ୍ରବେଶ କଲା ବୋଲି ଅଧ୍ୟାପକ ଏସ୍. ଆର୍. ସେଗାଲ୍ ତାଙ୍କର ଗୋଟିଏ ଲେଖାରେ ବ୍ୟକ୍ତ କରିଅଛନ୍ତି ।

ବିଖ୍ୟାତ ମୁସଲିମ ପରିବ୍ରାଜକ ଆଲବିରୁଣୀ ମଧ୍ୟ ଭିନ୍ନ ପ୍ରକାରରେ ଏ ପର୍ବ ସମ୍ବନ୍ଧରେ କେତୋଟି ମତ ଲେଖିଛନ୍ତି, "କାର୍ତ୍ତିକ ମାସରେ ଏହି ଦିବାଲି ଦିନ ଲୋକେ ସ୍ନାନ କରି, ନୂଆ ଲୁଗା ପିନ୍ଧି, ପରସ୍ପରକୁ ପାନ ଗୁଆ, ଲଙ୍କା ପ୍ରଭୃତି ଉପହାର ଦିଅନ୍ତି । ଭିକ୍ଷାଦାନ କରିବା ନିମନ୍ତେ ମନ୍ଦିରକୁ ଯାଆନ୍ତି ଓ ମଧ୍ୟାହ୍ନ ସମୟ ପର୍ଯ୍ୟନ୍ତ ଖେଳନ୍ତି । ରାତିରେ ବହୁ ସଂଖ୍ୟାରେ ଦୀପ ଜଳାନ୍ତି । ଫଳରେ ବାୟୁ ନିର୍ମଳ ହୁଏ । ବାସୁଦେବଙ୍କ ପତ୍ନୀ 'ଲକ୍ଷ୍ମୀ' ଏହି ପର୍ବର ପୂଜ୍ୟା ଦେବୀ । ସେ ବର୍ଷକେ ଥରେ ବିରୋଚନ ପୁତ୍ର ବଳୀ 'ବଳି'କୁ ସପ୍ତମ ପାତାଳରୁ ଏହି ଦିନ ମୁକ୍ତ ଦିଅନ୍ତି । ଏଣୁ ଏହି ପର୍ବଟି 'ବଳି ରାଜ୍ୟ' ନାମରେ ମଧ୍ୟ ନାମିତ ।"

ଇତିହାସରୁ ଜଣାଯାଏ ଯେ, ମୋଗଲ ଯୁଗରେ ହିନ୍ଦୁ ମୁସଲମାନମାନଙ୍କର ସଂସ୍କୃତିର ଯେଉଁ ମଧୁର ସମ୍ମିଶ୍ରଣ ହୋଇଥିଲା, ଏହାର ପ୍ରଭାବ ପର୍ବପର୍ବାଣି ଉପରେ ମଧ୍ୟ ପଡ଼ିଥିଲା । ସାଂସ୍କୃତିକ ମିଳନମଯୁ ଫଳରେ ହିନ୍ଦୁ ପର୍ବରେ ମୁସଲମାନ ଓ ମୁସଲିମ ପର୍ବରେ ହିନ୍ଦୁମାନେ ସକ୍ରିୟ ଅଂଶ ଗ୍ରହଣ କରି ଆନନ୍ଦ ମନରେ କିଷ୍ଠାର ସହ ଆନ୍ତରିକତା ରଖି ପାର୍ବଣ ବିଧି ନିର୍ବାହ କରୁଥିଲେ । ମହରମରେ ହିନ୍ଦୁମାନେ ଓ ହୋରି ଖେଳରେ ମୁସଲମାନମାନେ ଭାଗ ନେଉଥିଲେ । ବଙ୍ଗର ନବାବ ମିରଜାଫର କିରୀଟେଶ୍ୱରୀଙ୍କ ପାଦୁକ ପିଇ ଶେଷ ନିଃଶ୍ୱାସ ତ୍ୟାଗ କରିଥିବାର ପ୍ରମାଣ ଏ ଯୁଗ ପାଇଁ ଏକ ଆହ୍ୱାନ ଏବଂ ଧର୍ମନିରପେକ୍ଷ ଭାରତୀୟ ରାଷ୍ଟ୍ରର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ।

ମୋଗଲ ସମ୍ରାଟ ଆକବର ଏହି ଦିବାଲି ପର୍ବ ପ୍ରତି ବିଶେଷ ଆଗ୍ରହ ପ୍ରକାଶ କରୁଥିବାର ଆଇନ-ଇ-ଆକବରୀରୁ ଜଣାଯାଏ । ତାଙ୍କ ଦୌଲତଖାନା ସମ୍ମୁଖରେ ୪୦ ଫୁଟ ଲମ୍ବ ବିଶିଷ୍ଟ ଗୋଟିଏ ବାଉଁଶ ରଖାଯାଏ । ଏଥିରେ ୧୬ଟି ଦଉଡ଼ି ଖଞ୍ଜାଯାଏ । ବାଉଁଶର ଅଗ୍ରଭାଗରେ ଗୋଟିଏ ମାଟିପାତ୍ର ମଧ୍ୟରେ ଦୀପ ଜଳେ । ଏହାକୁ 'ଆକାଶଦୀପ' କୁହାଯାଏ । ବରୋଦା ମିଉଜିୟମରେ ମୋଗଲ ଯୁଗର ତତ୍କାଳୀନ

ଆକାଶଦୀପ ଏ ପର୍ଯ୍ୟନ୍ତ ସୁରକ୍ଷିତ ହୋଇ ଆମର ଦୀପାଳି ସ୍ମୃତିକୁ ଉଜ୍ଜୀବିତ କରୁଛି ।

ଅଧ୍ୟାପକ ଏସ. ଆର୍‌. ଯେଗାଲଙ୍କ ଲେଖାରୁ ଜଣାଯାଏ ଯେ, ହିନ୍ଦୁ ରାଜତ୍ୱ କାଳରେ (ଚାଲୁକ୍ୟ ବଂଶ) ଭାରତରେ ସର୍ବତ୍ର ଏହି ପର୍ବ ପାଳିତ ହୋଇଥିଲା । ଚାଲୁକ୍ୟ ରାଜା ତ୍ରିଭୁବନମାଳଙ୍କ ରାଜତ୍ୱ ସମୟରେ ଏହି 'ଦୀପାଳି' ପର୍ବ ସମ୍ବନ୍ଧରେ ୧୧୯୯ ମସିହାର ଏକ ଶିଳାଲିପିରେ ଲିଖିତ ହୋଇଥିବାର ଜଣାଯାଏ । ସଂସ୍କୃତ ସାହିତ୍ୟରେ ମଧ୍ୟ 'ଦୀପାଳି'କୁ କେନ୍ଦ୍ରକରି ବହୁ ଚମତ୍କାର କବିତା ରଚିତ ହୋଇଛି । ସୋମଦେବ ସୁରୀଙ୍କ ଏହି କବିତାଟି 'ଯଶସ୍ତିଲକଚମ୍ପୂ' ନାମରେ ନାମିତ ଓ ଦୀପାଳୀକୁ 'ଦୀପୋତ୍ସବ' ନାମରେ ସେ ବର୍ଣ୍ଣନା କରିଛନ୍ତି । ଏହି ପର୍ବ ଶରତ ଋତୁରେ ପାଳିତ ହେଉଥିଲା । ଘରଦ୍ୱାରକୁ ଲିପାପୋଛା କରି ସଜ୍ଜିତ କରାଯାଉଥିଲା । ମଜଲିସ ମଜଲିସ ଓ ନାଚ, ପଶାଖେଳ ଏକ ସର୍ବସାଧାରଣ ବିଶେଷତ୍ୱ । ଘରର ଛାତ ସବୁ ଆଲୋକମାଳାରେ ଉଜ୍ଜ୍ୱଳ ଉଠିଥିଲା ।

କନୌଜର ରାଜା ହର୍ଷବର୍ଦ୍ଧନ ତାଙ୍କର ଗୋଟିଏ ନାଟକ 'ନାଗାନନ୍ଦ'ରେ ଏହି ଉତ୍ସବକୁ ନାମ ଦେଇଛନ୍ତି-"ଦୀପ ପ୍ରତି ପଦୁତ୍ସବ" । ଠିକ୍ ସେହିପରି କାଶ୍ମୀରୀ ଲୋକକଥାମୂଳକ 'ନୀଳମତପୁରାଣ' ଏକ ଲେଖାରେ ଏହି ଉତ୍ସବ ପାଳନ ସମ୍ବନ୍ଧରେ ଠିକଣା ବିବରଣୀ ଦିଆ-ଯାଇଛି । ଅନ୍ୟ ପୁରାଣମାନଙ୍କରେ ଏହି ପର୍ବ 'ଯକ୍ଷରାତ୍ର' (ଯକ୍ଷଙ୍କ ରାତ୍ର) ନାମରେ ବର୍ଣ୍ଣିତ । କାରଣ ଏହି ପର୍ବରେ ଯକ୍ଷ, କୁବେରଙ୍କୁ ମଧ୍ୟ ପୂଜା କରାଯାଏ । କୁବେର ଧନର ଦେବତା । ଏଣୁ ନାନାଦି ଜୁଆଖେଳ ମାଧ୍ୟମରେ କୁବେରଙ୍କ ମାହାତ୍ମ୍ୟର ପ୍ରଚ୍ଛନ୍ନ ସ୍ମରଣ ଏହି ପର୍ବର ଏକ ସର୍ବସାଧାରଣ ଉଲ୍ଲେଖଯୋଗ୍ୟ ବିଶେଷତ୍ୱ ।

ବାତ୍ସ୍ୟାୟନଙ୍କ କାମସୂତ୍ରରେ କୁମାର ପୂର୍ଣ୍ଣିମା ଉତ୍ସବ କୌମୁଦୀ ଜାଗର ଉତ୍ସବ ନାମରେ ଉଲ୍ଲେଖ ଥିବା ପରି ଦୀପାଳି ରାତି ମଧ୍ୟ ଯକ୍ଷରାତ୍ର ନାମରେ ନାମିତ ହୋଇଛି । 'ଯକ୍ଷ' ଏହି ଶବ୍ଦ ସହ 'ଜୈନ' ସ୍ମୃତି ମନକୁ ଆସେ । ଜୈନ ସାହିତ୍ୟରେ ଯକ୍ଷମାନଙ୍କର ବହୁ ଉଲ୍ଲେଖ ଦେଖାଯାଏ । ପୁତ୍ର କାମନା ପୂରଣ ବ୍ୟତୀତ

ଅନ୍ୟାନ୍ୟ ବହୁ ଶୁଭପ୍ରଦାୟକ ଏହି ଯକ୍ଷମାନେ । ଏଣୁ ଏମାନଙ୍କର ମାଗଜନା ଭାରତୀୟ ସଂସ୍କୃତିରେ ଏକ ବଳିଷ୍ଠ ପୃଷ୍ଠପଟ । ବିଶେଷତଃ ଧନୋପାର୍ଜନପିପାସୁ ବଣିକମାନେ ନାନା ପୈଶାଚିକ ଉପଦ୍ରବରୁ ରକ୍ଷା ପାଇବା ନିମନ୍ତେ ନାନା ଯକ୍ଷମାନଙ୍କୁ ଆଶ୍ରୟ କରି ସେମାନଙ୍କ ଆରାଧନା କରୁଥିଲେ । ଜୈନ ସାହିତ୍ୟରେ 'ଇନ୍ଦ୍ରମହ, 'ସ୍କନ୍ଦମହ' 'ଯକ୍ଷମହ' ଓ 'ଭୂତମହ' ନାମରେ ସୂଚେଇଛି ଉତ୍ସବ 'ମହାମହ' ବା 'ମହୋତ୍ସବ' ବୋଲି ଗୃହୀତ ଏବଂ ଏ ପର୍ବଗୁଡ଼ିକ ପୁଣି ଆଷାଢ଼, ଆଶ୍ୱିନ, କାର୍ତ୍ତିକ ଓ ଚୈତ୍ରମାସମାନଙ୍କରେ ପାଳିତ ହେଉଥିବାରୁ ଜଣାଯାଏ । ଏଣୁ ପୂର୍ବୋକ୍ତ ଯକ୍ଷରାତ୍ର ସହ ଉପରବର୍ଣ୍ଣିତ 'ଯକ୍ଷମହ' ଉତ୍ସବ, ପୁଣି କାର୍ତ୍ତିକ ମାସରେ ଏ ସବୁ ଯେପରି ଏକ ସୂତ୍ରରେ ଗ୍ରଥିତ ହେବାପରି ଜଣାଯାଏ । ଏଣୁ ପୁରାଣବର୍ଣ୍ଣିତ ଦୀପାଳି ଉତ୍ସବର ନାମାନ୍ତର 'ଯକ୍ଷରାତ୍ର' ମଧ୍ୟ ଯୁକ୍ତି-ସମ୍ମତ ତଥା ଇତିହାସଭିତ୍ତିକ ।

ଯକ୍ଷରାତ୍ରିର ଉତ୍ସବ ସହ ଜୈନମାନଙ୍କର ସମ୍ପର୍କ ପୂର୍ବରୁ ଉଲ୍ଲେଖ କରାଯାଇଛି । ଏଣୁ ଦୀପାଳିର ପ୍ରଭାବ ବଣିକଗୋଷ୍ଠୀ ବିଶେଷତଃ ଜୈନ ସମ୍ପ୍ରଦାୟଙ୍କ ମଧ୍ୟରେ ଅଧିକ ଅନୁଭୂତ ହୁଏ । ଏଣୁ ଧନର ଅଧିଷ୍ଠାତ୍ରୀ ଦେବୀ 'ଲକ୍ଷ୍ମୀପୂଜା' ମହାସମାରୋହରେ ଏହି ବଣିକଗୋଷ୍ଠୀଙ୍କ ଦ୍ୱାରା ସମାହିତ ହୋଇଥାଏ । କଥିତ ଅଛି, ଯେତେବେଳେ ମହାବୀର ନିର୍ବାଣ ବା ମୋକ୍ଷଲାଭ କଲେ, ସେତେବେଳେ ତାଙ୍କ ନିକଟରେ ୧୮ ଜଣ କରଦ ରାଜା ଓ ଅନ୍ୟମାନେ ଉପସ୍ଥିତ ଥିଲେ ଓ ସେମାନେ କହିଲେ, "ବର୍ତ୍ତମାନ ପ୍ରଜ୍ଞାର ଆଲୋକ ନିର୍ବାପିତ, ଏଣୁ ଚାଲ, ବସ୍ତୁର ଆଲୋକ-ସଜ୍ଜା କରିବା ।" ଏଣୁ ଏହି ଦୀପାଳି ସହ ମହାବୀରଙ୍କ ମୋକ୍ଷଲାଭ ସ୍ମୃତି ମଧ୍ୟ ବିଜଡ଼ିତ । ଜୈନ ସମାଜରେ ଶ୍ୱେତାମ୍ବର ଜୈନମାନେ ପ୍ରଥମ ଦିନ ଲକ୍ଷ୍ମୀଙ୍କ ସମ୍ମାନାର୍ଥେ ଅଳଙ୍କାର ପରିଷ୍କୃତ ପରିଚ୍ଛନ୍ନ କରି ରଖନ୍ତି । ଦ୍ୱିତୀୟ ଦିନ ସ୍ତ୍ରୀଲୋକମାନେ ଦୁଇଟି ରାସ୍ତାର ଛକ ଜାଗାରେ ଗୋଲେଇ ହୋଇ ବସି ତିଆରି କରିଥିବା ସ୍ୱହସ୍ତପ୍ରସ୍ତୁତ ନାନା ପିଷ୍ଟକ ଓ ମିଷ୍ଟଦ୍ରବ୍ୟ ପ୍ରଥମେ ପ୍ରେତମାନଙ୍କ ଉଦ୍ଦେଶ୍ୟରେ ସମର୍ପଣ କରନ୍ତି । କାରଣ ସେମାନଙ୍କର ଧାରଣା ଯେ, ଭୂତପ୍ରେତମାନେହିଁ ସନ୍ତୁଷ୍ଟ ହେଲେ ସେମାନଙ୍କର ପରିବାର ଓ ସନ୍ତାନବର୍ଗ ବର୍ଷସାରା ଯେକୌଣସି

ଅମଙ୍ଗଳ ମୁଖରୁ ରକ୍ଷାପାଇ ପାରିବେ । ତୃତୀୟ ଦିବସ ଭୋଜଘରର ଦିବସ ଓ ଆନନ୍ଦର ଦିନ । କାରଣ ଏ ଦିନ ମହାବୀର ମୋକ୍ଷଲାଭ କରିଥିଲେ ଓ ଗୌତମ 'ଇନ୍ଦ୍ରଭୂତି'ଙ୍କର କୈବଲ୍ୟ' ପ୍ରାପ୍ତି ହୋଇଥିଲା । ଜୈନମାନଙ୍କର ଏହି ଦିନଟିରେ ଆଲୋକମାଳାରେ ଗୃହସଜ୍ଜା, ହିସାବ-ଖାତାର ପୂଜାବିଧି ଅତ୍ୟନ୍ତ ଚିତ୍ତାକର୍ଷକ । ସକାଳେ ଏମାନେ ଦଳ ଦଳ ହୋଇ ମଠକୁ ଯାଆନ୍ତି । ପ୍ରଧାନ ମଠାଧୀଶଙ୍କୁ ପୂଜାକରି ତାଙ୍କଠାରୁ ମହାବୀରଙ୍କ ଜୀବନୀ ସମ୍ବନ୍ଧୀୟ ସଦୁପଦେଶ ଶ୍ରବଣ କରନ୍ତି । ଗୀତ ଗାଆନ୍ତି । ସନ୍ଧ୍ୟାରେ ବ୍ରାହ୍ମଣଙ୍କଦ୍ୱାରା 'ଶାରଦ-ପୂଜା—ଲକ୍ଷ୍ମୀପୂଜା' କରି ସେମାନଙ୍କ ହିସାବ ଖାତାକୁ ମଧ୍ୟ ସମ୍ମାନ ଦେଖାନ୍ତି । ଏହି ନୂଆ ଖାତାର ଗୋଟିଏ ପୃଷ୍ଠାରେ 'ଶ୍ରୀ' ଶବ୍ଦକୁ ୫।୭ ବା ୯ ଥର ପିରାମିଡ୍ ଆକାରରେ ସଜାଇକରି ଲେଖନ୍ତି । ସେ ବହି ବା ଖାତା ଉପରେ ଗୋଟିଏ ଟଙ୍କା ରଖାଯାଏ ଓ ଏହି ଟଙ୍କାଟି ଲକ୍ଷ୍ମୀଦେବୀଙ୍କ ପ୍ରତିନିଧିତ୍ୱ କରୁଥିବାର ଜଣାଯାଏ ।

ବର୍ଷ ତମାମ୍ ଦୋକାନର ମାଲିକ ସେହି ମୁଦ୍ରାଟି ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥାଏ । କାରଣ ଏହା ତାହାର ଭାଗ୍ୟୋଦୟସୂଚକ । ଏହା ପର ଦିବାଲିରେ ମଧ୍ୟ ବ୍ୟବହୃତ ହୁଏ । ଏହିପରି ଭାବରେ ଏହି ମୁଦ୍ରା ସବୁ ଜୈନ ପରିବାର ମଧ୍ୟରେ ବର୍ଷ ବର୍ଷ ଧରି ସାଇତା ହୋଇ ରଖାଯାଏ ।

ଏହାଛଡ଼ା ହିସାବଖାତା ଉପରେ କୌଣସି ଲତାର ପତ୍ର ମଧ୍ୟ ସତର୍କତାର ସହିତ ସୁରକ୍ଷିତ ହୋଇଥାଏ ଏବଂ ଜୈନମାନେ କର୍ପୂର ଧୂଆଁ ଦେଇ ଧୂପଜାଳି ଏହାର ପୂଜା କରିବା ସଙ୍ଗେ ସଙ୍ଗେ ଖାତା ଆଗରେ କିଛି ଫଳ, ପାନ ଓ ହଳଦୀ ରଖି ସମ୍ମାନ ପ୍ରଦର୍ଶନ କରନ୍ତି । ଶେଷରେ ମିଷ୍ଟାନ୍ନ ବଣ୍ଟନ ହୁଏ । କେତେଘଣ୍ଟା ଧରି ଏହି ନୂଆ ହିସାବ ଖାତା ଖୋଲିରହେ ଓ ଶେଷରେ ଏଥିରେ 'ଲକ୍ଷ—ଲାଭ' ଇତ୍ୟାଦି ଲେଖାଯାଏ ।

ଦିବାଲିର ୪ର୍ଥ ଦିବସଟି ଅଧ୍ୟାପକ ସୈଗାଲଙ୍କ ମତାନୁସାରେ କାର୍ତ୍ତିକ ମାସର ପ୍ରଥମ ଦିନ ଓ ବ୍ୟବସାୟ ବର୍ଷର ଶେଷ ଦିନ ।

ଜୈନମାନେ ଆମର ନୂଆବର୍ଷ ଉତ୍ସବ ପର ଏ ଦିନଟିରେ ଆପଣା ଆପଣା ମଧ୍ୟରେ ଅଭିନନ୍ଦନ ଜଣାନ୍ତି ଓ ଆନନ୍ଦ ଲାଭ କରନ୍ତି ।

ଭାରତ ବାହାରେ ରହୁଥିବା ଭାରତୀୟମାନେ ମଧ୍ୟ ଜାକଜମକରେ ଏହି ପର୍ବ ପାଳନ କରି ନିଜ ନିଜ ବନ୍ଧୁ ଗହଣରେ ମିଷ୍ଟାନ୍ନ ବଣ୍ଟନ କରନ୍ତି । ଏହିପରି ଭାବରେ ଆନନ୍ଦ ଓ ଆଲୋକର ପର୍ବ— ଦିବାଲି ପୃଥିବୀରେ ସର୍ବତ୍ର ପାଳିତ ହୁଏ ।



( ଏ ପ୍ରବନ୍ଧର ମୁଖ୍ୟ ସହାୟ—The festival of light by S. R. Segal )

[ ସମାଜ ଓ ସ୍ୱରାଜ୍ୟରେ ୧୮.୧୦.୭୧ରେ ପ୍ରକାଶିତ ]

# 'ଆଲୋକ'ର ପର୍ବ

ବହୁ ପଣ୍ଡିତଙ୍କ ମତରେ ଦୁର୍ଗାପୂଜା 'ମନ୍ଦ' ଉପରେ 'ଭଲ'ର ଓ ପଶୁବଳ ଉପରେ ଆତ୍ମବଳର ବିଜୟ । ଠିକ୍ ସେହିପରି ଆଲୋକର ପର୍ବ ଦୀପାବଳୀ ଅନ୍ଧାର ଉପରେ ଆଲୋକର ବିଜୟ ରୂପେ ବିଦିତ । ଏହା ଭାରତ ଛଡ଼ା ପୃଥିବୀର ବିଭିନ୍ନ ପ୍ରାନ୍ତରରେ ମଧ୍ୟ ବିଭିନ୍ନ ରୂପରେ ପାଳିତ ହୁଏ । ଏହା ଆଦିମାନବର ମନ ମଧ୍ୟରୁ ଉତ୍ପତ୍ତି ଲାଭ କରିଛି । ଆଦିମାନବ ପୃଥିବୀ ଉପରେ ଅନିଷ୍ଟ କରୁଥିବା ଭୂତ ପ୍ରେତମାନଙ୍କର ରାତିରେ ଭ୍ରମଣ ଭୟରୁ ରକ୍ଷା ପାଇବା ପାଇଁ ନିଆଁ ଓ ଆଲୁଅ ଜାଳି ଏମାନଙ୍କୁ ତଡ଼ି ଦେଉଥିଲା । ଏହା ବର୍ତ୍ତମାନ ସମାଜର ସବୁସ୍ତରର ଲୋକମାନଙ୍କ ଦ୍ୱାରା ସମ୍ମାନ ପାଇ ଆସୁଅଛି । ଶିକ୍ଷିତ ଓ ସଭ୍ୟ ଲୋକମାନେ ଅନ୍ଧକାର ଉପରେ ଆଲୋକର ବିଜୟ ରୂପେ ଏହାକୁ ନିର୍ଣ୍ଣୟ କରୁଥିଲାବେଳେ ନିମ୍ନସ୍ତରର ଲୋକମାନେ ଭୟ ଓ ହତାଶର ବିତାଡ଼ନ ନିମନ୍ତେ

ଏହାର ଉତ୍ପତ୍ତି ବୋଲି ଧରନେଇଛନ୍ତି । ଏପରିକି ଇଉରୋପରେ ମଧ୍ୟ ବିଶେଷତଃ 'କେଲ୍‌ଟିକ୍' ଲୋକମାନେ ବାସ କରୁଛନ୍ତି । ଆଜିପର୍ଯ୍ୟନ୍ତ ମଧ୍ୟ ଏହି ପର୍ବ ପାଳିତ ହୋଇ ଆସୁଅଛି । ଅକ୍ଟୋବର ୩୧ ତାରିଖରେ 'ହାଲୋଇନ୍' ପର୍ବ ପାଳିତ ହୁଏ । ଏହା ସର୍ବସାଧୁ ଦିବସର (All Saints Day) ପୂର୍ବ ଦିବସ ରୂପେ ପରିଗଣିତ ହୁଏ । ଏହା ଦୀପାବଳୀର ସ୍ମୃତି ଜାଗ୍ରତ କରେ । ହାଲୋଇନମାନେ ନିଆଁ ଜାଳି ମଉଜ ମଜଲିସ୍‌ରେ ମାତୁଥିଲେ ଓ ଅପ୍‌ସରା ଓ ଡାଆଣୀମାନଙ୍କର କୁ ପ୍ରଭାବରୁ ରୋକିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ସମୁଦ୍ରର ଏତେ ବ୍ୟବଧାନ, ହିନ୍ଦୁ ଓ କେଲଟିକ୍ ଲୋକମାନଙ୍କ ମଧ୍ୟରେ ଥିବା ସାମଞ୍ଜସ୍ୟ ସତ୍ତ୍ୱେ ସେମାନଙ୍କର ଏହି ପର୍ବଟି କେଲଟିକ୍ ଓ ହିନ୍ଦୁ ଉଭୟ ଜାତିର ସାଂସ୍କୃତିକ ପୃଷ୍ଠଭୂମିରେ ମୂଳ ବିସ୍ତାର କରୁଛି ।

ଏହା ଉଲ୍ଲେଖଯୋଗ୍ୟ ଯେ, ହିନ୍ଦୁମାନଙ୍କର ଦୀପାବଳୀ ଓ କେଲ୍‌ଟିକ୍‌ମାନଙ୍କର ହାଲୋଇନ୍ ପ୍ରାୟ ପାଖାପାଖି ପଡ଼େ । ଉଭୟ ପର୍ବର ଲକ୍ଷ୍ୟ ଭୂତ, ଡାଆଣୀ ଓ ରାକ୍ଷସଙ୍କର କୁ ପ୍ରଭାବକୁ ନିଆଁ ଓ ଦୀପ ଜଳାଇ ବାରଣ କରିବା । ଏହା ଆହୁରି ମଧ୍ୟ ଉଲ୍ଲେଖଯୋଗ୍ୟ ଯେ, କାର୍ତ୍ତିକ କୃଷ୍ଣପକ୍ଷ ଚତୁର୍ଦ୍ଦଶୀଟି (ଦୀପାବଳୀର ପୂର୍ବଦିନ) ଭୂତ-ଚତୁର୍ଦ୍ଦଶୀ ନାମରେ ପରିଚିତ । ଭାରତର ବହୁ ସ୍ଥାନରେ ଏହି ଦୀପାବଳୀ ରାତିଟି କାଳରାତ୍ରି ନାମରେ ପରିଚିତ । କାରଣ ଏହା ସବୁ ରାତି ମଧ୍ୟରେ ବେଶୀ ଭୟଙ୍କର ଓ କରାଳବଦନା କାଳୀ ତାଙ୍କର ପିଶାଚ ଓ ଭୈରବମାନଙ୍କ ସହ ରାତି ଅଧରେ ପୃଥିବୀ ପୃଷ୍ଠରେ ବୁଲନ୍ତି । ଏହି ରାତିରେ ଭୂତ, ପ୍ରେତ, ଡାଆଣୀମାନେ ପୃଥିବୀର ଉପରିଭାଗରେ ବୁଲୁଥିବାରୁ ଦୀପ ଜଳାଇ, ଓ ନିଆଁ ଜାଳି ବିଧାନ ଅନୁଯାୟୀ ପୂଜାକର୍ମ କରି ଏମାନଙ୍କୁ ପୂଜା କରାଯାଏ । ଏଣୁ ଆଲୋକ ଜ୍ୱଳନ ଦୀପାବଳୀର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଏହା ଭାରତର ଏକ ଜାତୀୟ ପର୍ବ । ଦୁର୍ଗାପୂଜା ଓ ଦଶହରା ଭାରତର ମାତ୍ର କେତେକ ସ୍ଥାନରେ ପାଳିତ ହେଉଥିଲେ ସୁଦ୍ଧା ଦୀପାବଳୀ ଉପମହାଦେଶ ଭାରତର କାଶ୍ମୀରରୁ କାମୋରିନ୍ ଓ ଦିଲ୍ଲୀରୁ ଦାର୍ଜିଲିଂ ପର୍ଯ୍ୟନ୍ତ ସର୍ବତ୍ର ପାଳିତ ହେଉଛି ।

ଦୀପାବଳୀ ରାତ୍ରରେ ଭିଲ ଓ ଗଣ୍ଡ ପ୍ରଭୃତି ଆଦିବାସୀ ଓ ନିମ୍ନ-ସ୍ତରର ଲୋକମାନେ ମଧ୍ୟ ମାଟିର ଦୀପ କରି ସେଥିରେ ତେଲ ପକାଇ ରାତିସାରା ଘରେ, ଗୁହାଳରେ, ଏପରିକି ଶସ୍ୟ ଜମିରେ ମଧ୍ୟ ରଖନ୍ତି । ଗୁଣିଆମାନେ ରାତିରେ ମଶାଣି ଭୂଇଁକି ଯାଇ ଏ ଅନ୍ଧକାର ରାତିରେ ଛେଳି ଓ କୁକୁଡ଼ା ବଳି ଦେଇ ସେମାନଙ୍କର ଇଷ୍ଟ ଦେବତାଙ୍କୁ ସନ୍ତୁଷ୍ଟ କରନ୍ତି । ଯେଉଁ ବଙ୍ଗଳାଦେଶରେ ବହୁ ଶାକ୍ତ ଅଛନ୍ତି, ସେଠାରେ ଦୀପାବଳୀ ଦୁର୍ଗାପୂଜା ପରେ ମହାକାଳୀ ପୂଜାରୂପେ ଅନୁଷ୍ଠିତ ହୁଏ ଏବଂ ଲୋକମାନଙ୍କର ବିଶ୍ୱାସ ଯେ, ଏହି ମହାକାଳୀ ଦୁର୍ଗାଙ୍କର ଅନ୍ୟତମ ଅବତାର ଓ ସକଳ ଶକ୍ତିର ଆଧାର । ମାଟିରେ କୃଷ୍ଣବର୍ଣ୍ଣର ଭୟଙ୍କର ଦେବୀ ମୂର୍ତ୍ତି ତିଆରି ହୁଏ । ଦେବୀଙ୍କର ଲହଲହ ଜିହ୍ୱା, ଗଳଦେଶରେ କଙ୍କାଳର ମାଳ ଓ ଶ୍ୱେତବର୍ଣ୍ଣ ଶିବଙ୍କ ଉପରେ ଏକପାଦ ଏହିପରି ବିକଟାଳ ମୂର୍ତ୍ତି ଭକ୍ତମାନଙ୍କ ଦ୍ୱାରା ପୂଜିତ ହୁଏ ।

କାଥିଆୱାର୍ଡରେ ଆଶ୍ୱିନ ଓ କାର୍ତ୍ତିକର କୃଷ୍ଣପକ୍ଷ ତ୍ରୟୋଦଶୀ, ଚତୁର୍ଦ୍ଦଶୀ ଓ ଅମାବାସ୍ୟା ଏହି ତିନିଦିନ ଧରି ପାଳିତ ହୁଏ ।

ଏହି ତିନି ଦିବସ ଯଥାକ୍ରମେ ଧନ ଦିବସ, ରୂପ ଚତୁର୍ଦ୍ଦଶୀ ବା ସୌନ୍ଦର୍ଯ୍ୟ ଦିବସ ଓ କାଳରାତ୍ରି ବା ସବୁଠାରୁ ଭୟଙ୍କର ଦିବସ ରୂପେ ପରିଗଣିତ । କାଥିଆୱାର୍ଡର ଉଚ୍ଚଶ୍ରେଣୀର ବ୍ରାହ୍ମଣମାନେ ମନ୍ତ୍ର ବୋଲି, ବୃତ୍ତ ଆଙ୍କି ଦେବୀଙ୍କର ପୂଜା କରନ୍ତି । ବିହାର, ଉତ୍ତରପ୍ରଦେଶରେ ଦିୱାଲି, ରାମ ନବମୀ ପରି ବିଶେଷ ସ୍ଥାନ ଅଧିକାର କରେ ଓ ମାସେ ପର୍ଯ୍ୟନ୍ତ ବର୍ଷର ଶ୍ରେଷ୍ଠ ପର୍ବ ରୂପେ ପାଳିତ ହୁଏ ।

ଯେଉଁ ବମ୍ବେରେ ଶକ୍ତିର ଉପାସକ ନାହାନ୍ତି; ସେଠାରେ ଦିୱାଲି ରାତିରେ ଭାଗ୍ୟଦେବୀ ଲକ୍ଷ୍ମୀଙ୍କର ପୂଜା କରାଯାଏ । ଘରର ଭଣ୍ଡାରଘରେ ଟଙ୍କାମୁଣି ଗୁଡ଼ିକ ପୂଜା ହୁଏ । ନାନାପ୍ରକାର ପଣା ଓ କଉଡ଼ିଖେଳ ହୁଏ । କଉଡ଼ି ଭାରତୀୟ ସଂସ୍କୃତିରେ ଏକ ଉଲ୍ଲେଖଯୋଗ୍ୟ ସ୍ଥାନ ହାସଲ କରିଛି । ( ଏତଦ୍ ସମ୍ପର୍କୀୟ ଲେଖା ଅନ୍ୟତ୍ର ଦ୍ରଷ୍ଟବ୍ୟ ) ଗୁଜୁରାଟ ପାଞ୍ଜିରେ ଦିୱାଲି ପୁରୁଣାବର୍ଷର ଶେଷ ଦିବସ ଓ ନୂତନ ବର୍ଷର ପ୍ରଥମ ଦିବସ ରୂପେ ସମ୍ମାନିତ ହୁଏ । ବ୍ୟବସାୟୀମାନେ ପୁରୁଣା

ହିସାବଖାତା ବନ୍ଦ କରନ୍ତି ଓ ନୂଆ ଖାତା ଖୋଲନ୍ତି । ବଙ୍ଗଳାଦେଶର ବଣିକମାନେ ଏହିଭଳି 'ହାଲ୍' ଖାତା ଉତ୍ସବ ପାଳନ କରୁଥିବାର ଦେଖାଯାଏ । ସାଧାରଣତଃ ଦିଓ୍ୱାଲିରେ ସାରା ଦେଶରେ କାଳୀପୂଜା ହେଉ କି ଲକ୍ଷ୍ମୀପୂଜା ହେଉ, ସବୁ ଅଲୋକମାଳାରେ ବିଭୂଷିତ ହୁଏ । ବହୁପ୍ରକାରର ବାଣ ଫୁଟେ ।

ନେପାଳରେ ଦିଓ୍ୱାଲି ଏକ ପାଞ୍ଚଦିନିଆ ଉତ୍ସବ । ବାସ୍ତବିକ୍ ଏହି ପାଞ୍ଚଦିନ ଧରି ପଶୁମାନଙ୍କର ପୂଜା କରାଯାଏ । ଏଣୁ ଏହା 'ପଶୂତ୍ସବ' ନାମରେ ପରିଚିତ । ନେପାଳରେ ତିନୋଟି ଜଣାଶୁଣା ନଗର କାଠମାଣ୍ଡୁ, ଲଳିତପୁର ଓ ଭକ୍ତପୁର ଆଲୋକମାଳାରେ ହସି ଉଠେ । ଏପରିକି ସାରା ଉପତ୍ୟକା ଓ ଗିରିକନ୍ଦର ମଧ୍ୟ ଆଲୋକମାଳାରେ ଉଦ୍‌ଭାସିତ ହୁଏ । ଦୂରରୁ ଏହା ଏକ ଆଲୋକର ରାଜ୍ୟ ରୂପେ ଦେଖାଯାଏ । ଏହି ଉତ୍ସବର ପ୍ରଥମ ଦିନଟିରେ କାଉମାନଙ୍କୁ ପୂଜା କରାଯାଏ । ସେମାନଙ୍କୁ ରନ୍ଧାଖାଦ୍ୟ, ମିଷ୍ଟାନ୍ନ ଓ ଦହି ସବୁ ଘରର କେନ୍ଦ୍ରସ୍ଥଳରେ, ଝରକା ପାଖରେ, ଦ୍ୱାରଦେଶରେ ତାଙ୍କ ଉଦ୍ଦେଶ୍ୟରେ ରଖାଯାଏ । ଫୁଲମାଳ ସବୁ କାଉମାନଙ୍କ ଉପରକୁ ସମ୍ମାନର ଚିହ୍ନ ସ୍ୱରୂପ ଫିଙ୍ଗାଯାଏ । ଏହି ପଞ୍ଚକ ଉତ୍ସବର ପ୍ରଥମ ଦିବସରେ 'କାଉ' ଯେ କି ସବୁ ପକ୍ଷୀଙ୍କ ମଧ୍ୟରେ ଘୃଣ୍ୟ ଓ ଯମ ଦେବତାଙ୍କ ଦୂତରୂପେ ପ୍ରସିଦ୍ଧି ଲାଭ କରିଛି, ସେ ପ୍ରଥମେ ପୂଜାଯାଏ । କାଉ ମୃତ୍ୟୁଦେବତାଙ୍କ ଡାହାଣ ହାତ ରୂପେ ପରିଚିତ ହେତୁ ତାଙ୍କୁ ପ୍ରଥମେ ପୂଜା କରାଯାଏ । ତେଣୁ ପ୍ରଥମ ଦିବସଟି ( କାକ-ଦିବସ ) ( Crows' Day ) ରୂପେ ପରିଚିତ ।

ଦ୍ୱିତୀୟ ଦିବସଟି ଶ୍ୱାନ ଦିବସ ( Dogs' Day ) ରୂପେ ପରିଚିତ । ଏହି ଦିବସଟିରେ କୁକୁରମାନଙ୍କ ବେକରେ ଗେଣ୍ଡୁଫୁଲର ମାଳ ଝୁଲାଇ ଦିଆଯାଏ । ମାଂସ, କ୍ଷୀର ସ୍ୱତନ୍ତ୍ର ପାତ୍ରରେ ଅର୍ପଣ କରାଯାଏ । ସେମାନଙ୍କର ବିଶ୍ୱାସ ଶ୍ୱାନ ହେଉଛି ଧର୍ମଙ୍କ ଅବତାର ଏବଂ ଏହି ଶ୍ୱାନ ଯୁଧିଷ୍ଠିରଙ୍କ ସହ ସ୍ୱର୍ଗରେ ପ୍ରବେଶ ଲାଭ କରିଥିଲେ ।

ତୃତୀୟ ଦିବସଟି ଗୋ ଦିବସ ( Cows' Day ) ରୂପେ ପରିଚିତ । ଗାଈ ଭାଗ୍ୟଦେବୀ ବା ଲକ୍ଷ୍ମୀଙ୍କ ଅବତାର, ଏଣୁ ବିଶ୍ୱାସରେ

ଏହାର ପୂଜା ଅଗ୍ରଗଣ୍ୟ । ନେପାଳ ଦେଶରେ ନିୟମାନୁଯାୟୀ ଗୋବଧ ନିଷେଧ, ଏଣୁ ନେପାଳର ଗିରିରାଜ୍ୟରୁ ବର୍ତ୍ତମାନ ଉତ୍ପତ୍ତି ଲାଭ କରିଥିବା ଶାସକମାନଙ୍କୁ ଗୋରକ୍ଷ, ବା ଗୋରକ୍ଷ ଭୂମି ବୋଲି କୁହାଯାଉଥିଲା । ଏହି ଗୋ-ଦିବସ ଦିନ ଗୋପାଳମାନେ ସମ୍ମାନିତ ହୁଅନ୍ତି ।

ଚତୁର୍ଥ ଦିବସଟି ବଳଦ ଦିବସ ବା ( Bullocks' Day ) ଭାବରେ ପରିଚିତ । ଏହିଦିନ ବଳଦ ଓ ଅନ୍ୟ ପ୍ରାଣୀମାନଙ୍କୁ ପେଟପୂରି ଭୋଜନ ଦିଆଯାଏ ଓ ମଦ ମିଶା କୁଣ୍ଡା, ନଡ଼ା ଯଥେଷ୍ଟ ପରିମାଣରେ ବଳଦମାନଙ୍କୁ ଅର୍ପଣ କରାଯାଏ । ବଳଦ ଓ ମଇଁଷିମାନଙ୍କ ଶିଙ୍ଗସବୁ ଲହୁଣୀରେ ମଖାଯାଏ, ସିନ୍ଦୂର ବୋଳାଯାଏ । ସେମାନଙ୍କ ଶରୀରସବୁ ଅଳଙ୍କାରରେ ମଣ୍ଡନ କରାଯାଏ ।

ପଞ୍ଚମ ବା ଶେଷ ଦିବସଟି ଭାଇଟିକା ଭ୍ରାତୃଦ୍ୱିତୀୟା ପର୍ବ । ଏହିଦିନ ଭାଇମାନେ ଭଉଣୀମାନଙ୍କ ଦ୍ୱାରା ସମ୍ମାନିତ ହୁଅନ୍ତି । ଭଉଣୀମାନେ ଚନ୍ଦନ ବିନ୍ଦୁ ଓ ସିନ୍ଦୂରଟୋପା ଭାଇମାନଙ୍କ କପାଳରେ ସ୍ନେହରେ ଅର୍ପଣ କରନ୍ତି ଏବଂ ମିଷ୍ଟାନ୍ନ ଓ ଫଳସବୁ ଖାଇବାକୁ ଦିଅନ୍ତି । ଭାଇ ଓ ଭଉଣୀମାନଙ୍କ ମଧ୍ୟରେ ଉପହାର ଓ ଶୁଭେଚ୍ଛାର ବାର୍ତ୍ତାବିନିମୟ କରାଯାଏ । ବାସ୍ତବିକ୍ ତିହାର ନେପାଳରେ ବର୍ଷକେ ଥରେ ଆସି ପଶୁପକ୍ଷୀ ଜଗତସହ ମାନବର ନିକଟତର ବିଶେଷତଃ ଘୃଣିତ କାଉ ମଧ୍ୟ ନିକଟତର ସମ୍ମାନ ପାଇବା କଥା ତାହା ସ୍ମରଣ କରାଇଦିଏ ।



मार्गशिर

# ଗୁରୁବାର 'ମାଣବସା'

**ଲକ୍ଷ୍ମୀ** କହୁଛନ୍ତି "ହେ ଶିରିପତି, ସତ୍ୟ ସତ୍ୟ ତ୍ରିବାର ସତ୍ୟ କର । ଚଣ୍ଡାଳକୁ ବ୍ରାହ୍ମଣ ଯାଏ ସମସ୍ତେ ଖିଆଖୋଇ ହେବେ । ସମସ୍ତେ ଖାଇ ଜଳରେ ହାତ ଧୋଇବେ ନାହିଁ । ଚଣ୍ଡାଳ ହାତରୁ ବ୍ରାହ୍ମଣ ଓ ବ୍ରାହ୍ମଣ ହସ୍ତରୁ ଚଣ୍ଡାଳ ଛଡ଼େଇ ଖାଇବେ । ଅନ୍ନ ଖାଇ ସମସ୍ତେ ମୁଣ୍ଡରେ ହାତ ପୋଛିବେ । ଯଦି ଏଥିରେ ତୁମର ସମ୍ମତି, ତେବେ ବଡ଼ ଦେଉଳକୁ ଯିବି ।" କାହାରି ଗଞ୍ଜନକର ନାହିଁ କରିବାର ସାହସ ନ ଥିଲା । ଲକ୍ଷେ ଚନ୍ଦ୍ରଉଦୟଆର ଅଧନଆ ବର୍ଣ୍ଣବିଭାସ ଝଲସି ଉଠିଲା । ଦେବଲୋକରୁ ବନ୍ଦାଣଥାଳ ଲକ୍ଷ୍ମୀ ଜଗନ୍ନାଥଙ୍କ ପାଦତଳେ ଲୋଟିଗଲା । ଇନ୍ଦ୍ର 'ମଣିମା' 'ମଣିମା' ଡାକରେ ନିଜକୁ ହଜାଇ ଦେଲେ । ବ୍ରହ୍ମାବିଷ୍ଣୁ ବରୁଣ କୁବେର ଆତ୍ମ-ବିଭୋର । ରମ୍ଭା, ମେନକା, ଶଶିରେଖା, ତୁଳସୀ, ମାଳତୀ,ଚଞ୍ଚଳା, ମଦାଳସୀ, ସୁଶୀଳା ସ୍ୱର୍ଗାପ୍ସରାଗଣ ନୃତ୍ୟରତା । ଗୃହଆଡ଼େ ପୁଲକର ନିର୍ଝର । ଲକ୍ଷ୍ମୀଠାକୁରାଣୀ ବାହୁଡ଼ା ବିଜେ କରୁଛନ୍ତି । ପୁଣି ଶ୍ରୀମନ୍ଦିର ହସି ଉଠିବ । ଲକ୍ଷ୍ମୀଛଡ଼ା ଦୁଇଭାଇ ମୁଣ୍ଡକୁ ତଳକୁ କରି ଆସୁଛନ୍ତି । ଜଗନ୍ନାଥ ତ ଆଗରୁ ଯାଇ ହାତ ଧରିଛନ୍ତି ଓ ଭାବପ୍ରବଣ ହୋଇ କହି ପକାଇଛନ୍ତି—

"ବଡ଼ ହେଲେ କସ ହେଲା ଗରବ ଗଞ୍ଜିଲ
ରତ୍ନତଳେ ସବୁବେଳେ ସୁଯଶ ରଖିଲ,
ତୁମ୍ଭ ଯୋଗେ ଆମ୍ଭେ କଷ୍ଟ ପାଇଲୁ ବହୁତ
ଆମ୍ଭେ ଭିକ୍ଷା ମାଗିବାର ଜାଣିଲା ଜଗତ ।"
ବର୍ତ୍ତମାନ ବଡ଼ ଭାଇଙ୍କର ପାଳି । ସ୍ୱତଃପ୍ରବୃତ୍ତ ହୋଇ-
"ବଳରାମ କହୁଛନ୍ତି ଶୁଣ ରେ କହ୍ନାଇ
ଘରକୁ ଘରଣୀ ବିନା ସୁନ୍ଦର ଦିଶଇ !

ଯେତେବେଳେ ଦାଣ୍ଡେ ଯାଇଥିଲେ ଦୁଇଭାଇ
ଶ୍ରୀଖଣ୍ଡ ବୋଲି ଦେଉଥିଲେ ଘଉଡ଼ାଇ
ଅଦ୍ଭୁତ କଥାଏ ଶୁଣ ଜଗନ୍ନାଥ ଭାଇ
ଲକ୍ଷ୍ମୀ ଏଡେ ବଡ଼ ବୋଲି ଏବେ ଜାଣିଲଇଁ ।"

ଦୁଇଭାଇଙ୍କର ଚୈତନ୍ୟ ଉଦୟ ହୋଇଛି । ଲକ୍ଷ୍ମୀଙ୍କ ମହିମା ସାରା ସଂସାରରେ ବ୍ୟାପ୍ତ ହୋଇଛି ଓ ଲକ୍ଷ୍ମୀ, ପଦ୍ମାଳୟା, ପଦ୍ମା, କମଳା ଶ୍ରୀହରିପ୍ରିୟା, ଇନ୍ଦିରା, ଲୋକମାତା, ମା, କ୍ଷୀରୋଦ୍‌ଧି ତନୟା, ରମା, ରୂପେ ସେ ହୋଇଛନ୍ତି ନିପୁରବନ୍ଦିତା । ବଳରାମ ଦାସଙ୍କ ରଚିତ, ଉତ୍କଳୀୟ ପ୍ରତି ଗୃହେ ଗୃହେ ସୁପରିଚିତ ସେହି ପବିତ୍ର ମାଣବସା ଲକ୍ଷ୍ମୀ ପୁରାଣ ଉପରେ କିଞ୍ଚିତ୍ ଆଲୋକପାତ କରିବା ସହ, ଧନର ଅଧିଷ୍ଠାତ୍ରୀ ଦେବୀ ଲକ୍ଷ୍ମୀଙ୍କ ସମ୍ବନ୍ଧୀୟ ଅନ୍ୟାନ୍ୟ ବିଷୟର ସଂକ୍ଷିପ୍ତ ଅବତାରଣା ଏ ପ୍ରବନ୍ଧର ଉଦ୍ଦେଶ୍ୟ । ମାର୍ଗଶିର ମାସର ଗୁରୁବାର । ଚଣ୍ଡାଳୁଣୀ ସେ, ନଗର ବାହାରେ ତାହାର ସ୍ଥାନ । ଗୁଣ୍ଡିଗୃ ନଗର ଖରିକବା ତାର କାମ । ମନ ଭିତରେ ତାର ଭକ୍ତି । ରାତି ଦୁଇଘଡ଼ି ଥାଉ, ସେଦିନ ଉଠିଛି । ଏକବର୍ଣ୍ଣୀ ଗାଈର ଗୋବର ଆଣି ଦୁଆର ଲିପିଛି । ଦୁଆରେ ମନ୍ଦାଏ ଛଡ଼ା ପାଣି ପକାଇଛି । ଅରୁଆଚାଉଳ ବାଟି ଝୋଟି ଦେଇଛି । ପଦ୍ମ ଫୁଲଟିଏ ପକାଇଛି ସେଥିରେ ପୁଣି ଷୋଳକୋଠୀ, ଦଶମୁଖ ଦୀପାବଳୀ, ଦଶବର୍ଣ୍ଣ ଫଳମୂଳ, ସୂତା ଦଶଖିଅ ନେଇ ମଣ୍ଡଳରେ ରଖିଛି । ଅରୁଆ ଚାଉଳ, ଦୁବ ଦାଣ୍ଡି କରି ମଣ୍ଡଳରେ ସାଇତିଛି । ଧୂପ ଦୀପ ନଇବେଦ୍ୟର ଆସର ଖୋଲି ଦେଇଛି । ସ୍ତ୍ରୀଙ୍କ ଘରେ ଏକ ବିପୁଳ ଆୟୋଜନ, ଭୁଣ୍ଡରେ ଖାଲି ବିଷ୍ଣୁ ପାଟରାଣୀ ଲକ୍ଷ୍ମୀଙ୍କ ସ୍ତୁତି । ପଦ୍ମାଳୟାଙ୍କର ପଦ୍ମଫୁଲ ଦେଖି ଶରଧା ବଳିଛି । ତାଙ୍କ ଆଗରେ ଉଚ୍ଚମିତ ଭାବ ଉଦ୍ଭେଇ ଯାଇଛି । ଚଣ୍ଡାଳୁଣୀର ଦୁଆରେ ସେ ପୁଣି ଆପେ ଆପେ ଉଭାହୋଇ ବର ଯାଚିଛନ୍ତି । ଚଣ୍ଡାଳୁଣୀର ବଳୁଆର ବାସ ଚନ୍ଦନ ଉଆସରେ ଝଳି ଉଠିଛି । ଅନ୍ନହୀନା ଆଜି ହୋଇଛି ଅଜସ୍ର ଶୁଦ୍ଧ ସୁବର୍ଣ୍ଣର ଅଧିକାରିଣୀ । ପୁତ୍ରହୀନା ପଞ୍ଚପୁତ୍ରର ଜନନୀ ସାଜିଛି । ତାହାର ଭାଗ୍ୟୋଦୟ ହୋଇଛି । ପକ୍ଷାନ୍ତରରେ ମହାଲକ୍ଷ୍ମୀ 'ଚଣ୍ଡାଳ ସଂସ୍ପର୍ଶ' ହେତୁ ଶ୍ରୀମନ୍ଦିରରୁ ଦୁଇ ଭାଇଙ୍କ ନିଷ୍ପତ୍ତିକ୍ରମେ ହୋଇଛନ୍ତି ବିତାଡ଼ିତା । ତଥାପି ବିଶ୍ୱସ୍ତରଣ ପୂର୍ବରୁ

ଲକ୍ଷ୍ମୀ ଜଗନ୍ନାଥଙ୍କୁ ହିନ୍ଦୁଧର୍ମର ବୈବାହିକ ସଂସ୍କୃତି ବିଷୟରେ ସଚେତନ କରାଇ ଦେଉଛନ୍ତି । ଜଗନ୍ନାଥ ପୂର୍ବର ସତ୍ୟ ଲଙ୍ଘନ କରୁଛନ୍ତି । ବିବାହ ସମୟରେ ହୋଇଥିବା କଉଡ଼ି ଖେଳରେ ଜଗନ୍ନାଥ ହାରି ଯାଇଛନ୍ତି । ସୁବର୍ଣ୍ଣ କଉଡ଼ି ଛଡ଼ାଇ ନେଇ ପାରି ନାହାନ୍ତି । ଏଣୁ ପ୍ରୀତ ହୋଇ ନବବଧୂ ଲକ୍ଷ୍ମୀଙ୍କୁ ସେ ଆପେ ଆପେ ବର ଦେଇ କହିଛନ୍ତି—

"ଯାହା ମନେ ମନେ ବାଞ୍ଛା ଗୋ କରିବୁ ବଇଦେହି
ତାହା ଅବଶ୍ୟ ଦେବି ମୁଁ ଶୁଣ ପ୍ରାଣସହି ।"

ଫଳରେ ଜଗନ୍ମାତା ସେହି ମୁହୂର୍ତ୍ତରୁ ନିଜର ହରି ପନ୍ଥାର ମାର୍ଗ ସୁଗମ କରି ନେଇଛନ୍ତି—

"ଅଷ୍ଟଦିନେ ପଡ଼ିବ ମୋହର ଗୁରୁବାର
ଯିବି ଚରିତିବ ମୁହିଁ ସବୁଙ୍କର ଘର
ଯିବି ଚରିତିବ ଜାତି ବ୍ରହ୍ମ ପରିଯନ୍ତେ
ଏହି ଦୋଷ ମୋର ପ୍ରଭୁ ନ ଧରିବ ଚିତ୍ତେ ।" (ଲକ୍ଷ୍ମୀ ପୁରାଣ)

ଜଗନ୍ନାଥଙ୍କ 'ଅସ୍ତୁ' ବାକ୍ୟରେ ଲକ୍ଷ୍ମୀଙ୍କ ହାତରେ ଗୃହକାଠି ଧରାଦେଇଛୁ । ଲକ୍ଷ୍ମୀଙ୍କ 'ବାଟଠାକୁରାଣୀ' ନାମ ସାର୍ଥକ ହୋଇଛୁ । ଚଞ୍ଚଳା ସର୍ବତ୍ର ଗମନ କରିଛନ୍ତି । ଆବ୍ରାହ୍ମଣ ଚଣ୍ଡାଳ କେହି ତାଙ୍କ ଦାନ ଦୟାରୁ ବଞ୍ଚିତ ହୋଇ ନାହାନ୍ତି । ଯେ ଭଜିଛୁ ସେ ପାଇଛୁ । ପାଇଥିବା ଲୋକେ ଲକ୍ଷ୍ମୀବନ୍ତ ପୁରୁଷରେ ପରିଣତ ହୋଇଛନ୍ତି । ଆଉ ହୀନକପାଳିଆ ଗୁଡ଼ିକ 'ଲକ୍ଷ୍ମୀଛଡ଼ା' ହୋଇଛନ୍ତି ।

ଯୁଗ ଯୁଗର କଥା ମନେ ପଡ଼ିଯାଉଛୁ । ସ୍ୱର୍ଗର ରାଜା ଇନ୍ଦ୍ର ଏହିପରି ଦିନେ ସ୍ୱର୍ଗ ଲକ୍ଷ୍ମୀଙ୍କୁ ହରାଇ ହୀନବୀର୍ଯ୍ୟ ହେଲେ । ମହର୍ଷି ଦୁର୍ବାସା ବୈକୁଣ୍ଠପୁରରୁ କୈଳାସ ଶିଖରକୁ ଗମନ କରୁଥିଲେ ବେଳେ ଦେବରାଜ ଇନ୍ଦ୍ରଙ୍କ ପ୍ରଣାମ ଗ୍ରହଣ କରି ତାଙ୍କୁ ଗୋଟିଏ ପାରିଜାତ ପୁଷ୍ପ ପ୍ରଦାନ କଲେ । ମାତ୍ର ଇନ୍ଦ୍ର ମଦମତ୍ତ ହୋଇ ସେ ଦୁର୍ଲ୍ଲଭ ପୁଷ୍ପଟି ତାଙ୍କର ପ୍ରିୟ ବାହନ ଐରାବତର ମସ୍ତକରେ ଦେଲେ । ମାତ୍ର ଗଜ ତ ସହଜେ ମୂର୍ଖ, ସେ ଏହି ପୁଷ୍ପଟିକୁ ଭୂମିରେ ପକାଇ ଦେଲା । ସେହି ଦିନୁ 'ଗଜମୂର୍ଖ'

ଶୀ ପ୍ରସ୍ଥିତ ହେଲା । ଦୁର୍ବାସା ଶିରୋଭୂଷା ପୁଷ୍ପର ଏପରି ଦହନୀୟ ଅବସ୍ଥା ଦେଖି ଇନ୍ଦ୍ରଙ୍କୁ 'ଲକ୍ଷ୍ମୀଭ୍ରଷ୍ଟ' ହୁଅ ବୋଲି ଅଭିଶାପ ଦେଲେ । ସ୍ୱର୍ଗ ଶ୍ରୀହୀନ ହେଲା । ଦେବଗଣ ଶ୍ରୀହୀନ ଓ ଅଶୋଭନୀୟ ଦେଖାଗଲେ । ଇନ୍ଦ୍ରଙ୍କ ତେଜ ମଉଳିଗଲା । ଦେବଲୋକଙ୍କର ଘନେଣି ପଡ଼ିଲା । ବିଷ୍ଣୁ ପୁଣି ଅଭୟ ଦେଲେ । ସ୍ୱର୍ଗଲକ୍ଷ୍ମୀ କୁପିତା ହୋଇ ମହାଲକ୍ଷ୍ମୀଙ୍କ ସଙ୍ଗରେ ମିଶିଯାଇଥିବାରୁ ବିଷ୍ଣୁ ପୁଣି ଲକ୍ଷ୍ମୀ ପ୍ରାପ୍ତିର ଆଶା ଇନ୍ଦ୍ରଙ୍କୁ ଦେଲେ । ତା ସହିତ ଲକ୍ଷ୍ମୀଙ୍କ ପ୍ରକୃତ ବାସସ୍ଥାନ ସମ୍ବନ୍ଧରେ ଦେବଗଣଙ୍କୁ ଯେଉଁ ନୈତାବଳୀ ଶୁଣାଇଛନ୍ତି, ଭକ୍ତ ବଳରାମ ଦାସ ତାହାର ପ୍ରକୃତ ମର୍ମ ମନ୍ଥନ କରି ଗୁରୁବାର ମାଣବସା ପୁରାଣରେ ଆଭାସ ଦେଇଛନ୍ତି ।

× × × ×

ଯେଉଁ ନାରୀ ଗୁରୁବାର ଦିନରେ ଆମିଷ
ଭୁଞ୍ଜଇ ଲୋଭରେ କିବା ନ ପଖାଳେ କେଶ ।
ଖଟର ଗୁମ୍ଫାରେ ଯେହୁ କରଇ ଶୟନ
ରାତିକାଳେ ଦଧିଅନ୍ନ ଯେ କରେ ଭୋଜନ,
କ୍ଷୌର ହୁଏ ଯେହୁ ଯାଇ ନାପିତର ଦ୍ୱାରେ
ଭୋଜନ ସମୟେ ଅନ୍ନ ପକାଏ ଭୂମିରେ ।

ଏହାଛଡ଼ା ଗୁରୁବାର ପୋଡ଼ାଦ୍ରବ୍ୟ ଭକ୍ଷଣ, ଶାଶୁ ଶ୍ୱଶୁରଙ୍କୁ ଅମାନ୍ୟ, ଧର୍ମସଭାରେ ମିଥ୍ୟା ଭାଷଣ, ବିନା ହସ୍ତପଦ ଧୌତରେ ଭୋଜନ, ଅମାବାସ୍ୟା ସନ୍ଧ୍ୟାନ୍ତରେ ରାତିଭୋଜନ, ବାସୀଶେଯରେ ଶୟନ ଇତ୍ୟାଦିର ଏକ ବିଶଦ ତାଲି ଦିଆଯାଇଛି । ସୁସ୍ଥ ତଥା ସୁଖମୟ ପାରିବାରିକ ଜୀବନ ଯାପନ ସହ ସମାଜକୁ ଗତିଶୀଳ କରିବାରେ 'ଗୁରୁବାର ମାଣବସା'ରେ ଏହି ଯେଉଁ ନୈତିକ ଆହ୍ୱାନ ଦିଆଯାଇଛି, ବାସ୍ତବିକ୍ ମାନସିକ ଧର୍ମର ପରିପ୍ରକାଶ ନିମନ୍ତେ ଏହା ଏକାନ୍ତ ଅପରିହାର୍ଯ୍ୟ । ମନୁଷ୍ୟର ଧର୍ମାନୁମୋଦିତ ଆଚାର ବ୍ୟବହାର ହିଁ 'ଲକ୍ଷ୍ମୀ' । ଏଣୁ ଯଥାର୍ଥରେ କୁହାଯାଏ 'ଆଚାରରେ ଲକ୍ଷ୍ମୀ, ବିଚାରରେ ପଣ୍ଡିତ' ।

ଲକ୍ଷ୍ମୀ ବିଭିନ୍ନ ସ୍ଥାନରେ ବିଭିନ୍ନ ରୂପେ କଳ୍ପିତା । ସ୍ୱର୍ଗରେ ସେ ଇନ୍ଦ୍ରଙ୍କ ସମ୍ପତ୍ତି ରୂପେ ସ୍ୱର୍ଗଲକ୍ଷ୍ମୀ । ମର୍ତ୍ତ୍ୟ ଓ ପାତାଳରେ ରାଜଗୃହରେ 'ରାଜଲକ୍ଷ୍ମୀ', ଗୃହସ୍ଥମାନଙ୍କ ଗୃହରେ 'ଗୃହଲକ୍ଷ୍ମୀ' 'ଗୋରାଣର ପ୍ରସୂତ

ରୂପେ 'ସୁରଭି', କ୍ଷୀରୋଦ ସାଗରଙ୍କ କନ୍ୟା ରୂପେ, ପଦ୍ମମାନେ ଶ୍ରୀରୂପିଣୀ ଏବଂ ଚନ୍ଦ୍ରମଣ୍ଡଳରେ, ବିଭୂଷଣରେ, ରତ୍ନରେ, ଫଳରେ, ରାଜରାଣୀରେ ସମସ୍ତ ଶସ୍ୟରେ, ବସ୍ତ୍ରରେ, ଦେବପ୍ରତିମାରେ, ମଙ୍ଗଳ ଘଟରେ, ହୀରକଚନ୍ଦନ ଓ ନୂତନ ମେଘର ଶୋଭା ରୂପେ ଅବସ୍ଥାନ କରିଥିଲେ । ଲକ୍ଷ୍ମୀଦେବୀ ହିଁ ଏକମାତ୍ର ଶୋଭାର ଆଧାର ।

( ଚରିତ ଚିନ୍ତାମଣି-ଶ୍ରୀ ନୀଳକଣ୍ଠ ରଥ )

ସେହି ଲକ୍ଷ୍ମୀଙ୍କ ଏକ ଅଂଶ ବିଷ୍ଣୁଙ୍କ ନିର୍ଦ୍ଦେଶରେ ସାଗରରୁ ଜନ୍ମ ହେଲେ । ନାମ ହେଲା 'ସାଗରସମ୍ଭବା', ବରୁଣ ଦୁଲଣୀ ଓ କ୍ଷୀରାବ୍ଧିତନୟା । ଦେବ ଦାନବଙ୍କର ସାଗର ମନ୍ଥନ ଜାତ ଲକ୍ଷ୍ମୀଙ୍କ ସର୍ବବ୍ୟାପକତା ସମ୍ବନ୍ଧ ରେ ଶ୍ରୀବିଷ୍ଣୁ ପୁରାଣର ପ୍ରଥମ ଅଂଶରେ ବିସ୍ତୃତ-ଭାବେ ବର୍ଣ୍ଣନା କିଆଯାଇଛି ।

ବିଷ୍ଣୁ 'ଅର୍ଥ' ଏବଂ 'ଲକ୍ଷ୍ମୀ' ବାଣୀ, ହରି 'ନ୍ୟାୟ' ଓ ଏ 'ନୀତି' ଭଗବାନ୍ ବିଷ୍ଣୁ 'ବୋଧ' ହେଲେ ଏ 'ବୁଦ୍ଧି' ସେ ଧର୍ମ ଏ 'ସତ୍କ୍ରିୟା' ପରାଶର କହୁଛନ୍ତି, ହେ ମୈତ୍ରେୟ, ଭଗବାନ୍ 'ଜଗତ୍ସ୍ରଷ୍ଟା' ଓ ଲକ୍ଷ୍ମୀ 'ସୃଷ୍ଟି' । ଶ୍ରୀଧର 'ଭୂଧର' ଓ ଲକ୍ଷ୍ମୀ 'ଭୂମି', ଭଗବାନ୍ 'ସନ୍ତୋଷ' ଓ ଲକ୍ଷ୍ମୀ 'ନିତ୍ୟତୁଷ୍ଟି', ଭଗବାନ୍ 'କାମ' ଓ ଏ 'ଇଚ୍ଛା', ସେ 'ଯଜ୍ଞ' ଓ ଏ 'ଦକ୍ଷିଣା', ଶ୍ରୀଜନାର୍ଦ୍ଦନ 'ପୁରୋଡ଼ାଶ' ଓ ଲକ୍ଷ୍ମୀଦେବୀ 'ଆଜ୍ୟାହୁତି', (ଘୃତର ଆହୁତି) ହେ ମୁନି; ମଧୁସୂଦନ 'ଯଜମାନ ଗୃହ' ଓ ଲକ୍ଷ୍ମୀ 'ପତ୍ନୀଶାଳା', ଶ୍ରୀହରି 'ଯୂପ' ଓ ଏ 'ଚିତି', ଭଗବାନ୍ 'କୁଶ' ଓ ଲକ୍ଷ୍ମୀ 'ଇଧ୍ମ', ଭଗବାନ୍ 'ସାମସ୍ୱରୂପ' ଓ କମଳଦେବୀ 'ଉଦ୍‌ଗୀତି', ଜଗତ୍‌ପତି ଭଗବାନ୍ ବାସୁଦେବ "ହୁତାଶନ" ଓ ଲକ୍ଷ୍ମୀ ଦେବୀ 'ସ୍ୱାହା', ଭଗବାନ୍ ବିଷ୍ଣୁ 'ଶଙ୍କର' ଓ ଏ 'ଗୌରୀ' । ହେ ମୈତ୍ରେୟ, ଶ୍ରୀ କେଶବ 'ସୂର୍ଯ୍ୟ' ହେଲେ ଲକ୍ଷ୍ମୀ ଏହାଙ୍କ 'ପ୍ରଭା', ଶ୍ରୀବିଷ୍ଣୁ 'ପିତୃଗଣ' ଓ କମଳା 'ନିତ୍ୟ ପୁଷ୍ଟି ଦାୟିନୀ ସ୍ୱଧା', ବିଷ୍ଣୁ ଅତି ବିସ୍ତୀର୍ଣ୍ଣ ସର୍ବାତ୍ମକ ଅବକାଶ ଅଟନ୍ତି ଓ ଲକ୍ଷ୍ମୀ 'ସ୍ୱର୍ଗଲୋକ', ଭଗବାନ୍ ଶ୍ରୀଧର, ଚନ୍ଦ୍ରମା, ଓ ଲକ୍ଷ୍ମୀଦେବୀ ଏହାଙ୍କ 'ଅକ୍ଷୟକାନ୍ତି' । ହରି ସର୍ବଗାମୀ 'ବାୟୁ' ଏବଂ ଲକ୍ଷ୍ମୀ 'ଜଗତ୍ ଚେଷ୍ଟା', ( ଜଗତରେ ଗତି ) ଓ ଧୃତି ଅଟନ୍ତି । ହେ ମହାମୁନେ, ଶ୍ରୀ ଗୋବିନ୍ଦ 'ସମୁଦ୍ର'ହେଲେ ଲକ୍ଷ୍ମୀ ତାହାଙ୍କ ତରଙ୍ଗ)

ଭଗବାନ୍ ମଧୁସୂଦନ ଇନ୍ଦ୍ର ଓ ଏ ଇନ୍ଦ୍ରାଣୀ । ଚକ୍ରପାଣି ଭଗବାନ୍ 'ଯମ' ଓ କମଳା ଯମପତ୍ନୀ 'ଧୂମାର୍ଣ୍ଣା' । ସେ କୁବେର ହେଲେ ଏ ଋଦ୍ଧି । ଶ୍ରୀ କେଶବ ସ୍ୱୟଂ 'ବରୁଣ' ଓ ଲକ୍ଷ୍ମୀ 'ଗୌରୀ' । ଶ୍ରୀହରି ଦେବ ସେନାପତି କାର୍ତ୍ତିକେୟ ଏବଂ ଲକ୍ଷ୍ମୀ 'ଦେବସେନା' । ଭଗବାନ ଗଦାଧର 'ଆଶ୍ରୟ' ଓ ଲକ୍ଷ୍ମୀ 'ଶକ୍ତି' ଭଗବାନ୍ 'ନିମେଷ' ଓ ଲକ୍ଷ୍ମୀ 'କାଷ୍ଠା' ସେ 'ମୁହୂର୍ତ୍ତ' ଏ 'କଳା' । ସର୍ବେଶ୍ୱର ସର୍ବରୂପ ଶ୍ରୀହରି 'ଦୀପକ' ଏ 'ଜ୍ୟୋତି' । ଶ୍ରୀହରି 'ବୃକ୍ଷ' ରୂପ, ଏ 'ଲତା' । ସେ 'ଦିନ' ଏ 'ରାତ୍ରି' । ବରଦାୟକ ଶ୍ରୀହରି 'ବର' ଓ ଏ 'ବଧୂ । ସେ 'ନଦ' ଏ 'ନଦୀ' କମଳନୟନ ଭଗବାନ୍ 'ଧ୍ୱଜା' ଓ ଏ 'ପତାକା' । ଜଗଦୀଶ୍ୱର 'ଲୋଭ' ଓ ଏ 'ତୃଷ୍ଣା' ସର୍ବଶେଷରେ ପରାଶର ମହର୍ଷି ଲକ୍ଷ୍ମୀଙ୍କ ଗୁଣକୀର୍ତ୍ତନ କରିବାକୁ କହିଛନ୍ତି ସଂକ୍ଷେପରେ ଦେବ ତିର୍ଯ୍ୟକ ଓ ମନୁଷ୍ୟଙ୍କ ମଧ୍ୟରେ ପୁରୁଷବାଚୀ ଭଗବାନ୍ ହରି ଓ ସ୍ତ୍ରୀ 'ବାଚୀ' ଶ୍ରୀଲକ୍ଷ୍ମୀ ଏହାଙ୍କ ପରି କେହି ନାହାନ୍ତି ।

ଅମୃତ କମଣ୍ଡଳୁହସ୍ତ 'ଧନ୍ୱନ୍ତରି' ସମୁଦ୍ରରୁ ଜାତ ହୋଇ ସାରିଲା ପରେ ବିକଶିତ କମଳ ସଦୃଶ ଶୋଭାଙ୍ଗୀ, ସ୍ଫୁରିତକାନ୍ତି—ମତୀ ଶ୍ରୀଲକ୍ଷ୍ମୀ ଯେତେବେଳେ ସମୁଦ୍ର ମନ୍ଥନରୁ ଜାତ ହେଲେ ତାହାର ଏକ ଅତି ମଞ୍ଜୁଳ ବର୍ଣ୍ଣନା ଶ୍ରୀ ବିଷ୍ଣୁ ପୁରାଣରେ ଦେଖିବାକୁ ମିଳେ ।

"ତତଃ ସ୍ଫୁରତ୍‌କାନ୍ତିମତୀ ବିକାସିକମଳେ ସ୍ଥିତା
ଶ୍ରୀ ଦେବୀ ପୟସଃ ସ୍ନାନାଦୁତ୍‌ଥିତା ଧୃତପଙ୍କଜା ।"

ଏହି ସମୟରେ ମହର୍ଷିଗଣ ପ୍ରସନ୍ନଚିତ୍ତ ପୂର୍ବକ ଶ୍ରୀସୂକ୍ତ ଦ୍ୱାରା ଏହାଙ୍କ ସ୍ତୁତି କରିବାକୁ ଆରମ୍ଭ କଲେ । ବିଶ୍ୱାବସୁ ଆଦି ଗନ୍ଧର୍ବଗଣ ଏହାଙ୍କ ସମ୍ମୁଖରେ ଗାନ କରିବାକୁ ଲାଗିଲେ । ଘୃତାଚୀ ପ୍ରଭୃତି ଅପ୍‌ସରାଗଣ ନୃତ୍ୟକଲେ, ଏହାଙ୍କୁ ନିଜର ଜଳରେ ସ୍ନାନ କରାଇବା ପାଇଁ ଗଙ୍ଗାଆଦି ନଦୀଗଣ ସ୍ୱୟଂ ଉପସ୍ଥିତ ହେଲେ ଏବଂ ଦିଗ୍‌ଗଜଗଣ ସୁବର୍ଣ୍ଣ କଳସଯୁକ୍ତ ହୋଇ ଏହାର ନିର୍ମଳ ଜଳରେ ସର୍ବଲୋକ ମହେଶ୍ୱରୀ ଶ୍ରୀ ଲକ୍ଷ୍ମୀଦେବୀଙ୍କୁ ସ୍ନାନ କରାଇଲେ ।

କ୍ଷୀରସାଗର ନିଜେ ମୂର୍ତ୍ତିମାନ୍ ହୋଇ ଲକ୍ଷ୍ମୀଙ୍କୁ ବିକଶିତ କମଳର ମାଳ ଦେଲେ ଓ ବିଶ୍ୱକର୍ମା ଏହାଙ୍କ ଅଙ୍ଗପ୍ରତ୍ୟଙ୍ଗରେ

ବିଭିନ୍ନ ଆଭୂଷଣ ଭରିଦେଲେ । ଏ ପ୍ରକାର ଦିବ୍ୟମାଳା ଓ ବସ୍ତ୍ରପରିଧାନ କରି, ଦିବ୍ୟ ଜଳରେ ସ୍ନାନ ସାରି, ଦିବ୍ୟାଲଙ୍କାର ଭୂଷିତା ହୋଇ, ଲକ୍ଷ୍ମୀ ଦେବତାମାନେ ଦେଖୁ ଦେଖୁ ଶ୍ରୀ ବିଷ୍ଣୁ ଭଗବାନଙ୍କ ବକ୍ଷସ୍ଥଳରେ ବିରାଜମାନ ହେଲେ । ଏହିପରି ଭାବରେ ଲକ୍ଷ୍ମୀଦେବୀ ସାଗରଗର୍ଭରୁ ଆଶ୍ୱିନପୂର୍ଣ୍ଣିମା ଗୁରୁବାର ଦିନ ସନ୍ଧ୍ୟା ସମୟରେ ଆବିର୍ଭୂତା ହେତୁ ଆଶ୍ୱିନ ପୂର୍ଣ୍ଣିମାରେ ମହାଲକ୍ଷ୍ମୀ ପୂଜା କରାଯାଏ । (କୁମାର ପୂର୍ଣ୍ଣିମୀ ପ୍ରବନ୍ଧ ଦ୍ରଷ୍ଟବ୍ୟ) । ଏ ଗୁରୁବାର ସପ୍ତବାର ମଧ୍ୟରେ ଅଧିକ ପବିତ୍ରତର ଦିବସ ରୂପେ ସ୍ୱୀକୃତି ଲାଭ କରିଛି ।

ମାର୍ଗଶିର ମାସର ପ୍ରତ୍ୟେକ ଗୁରୁବାର ପୁଣି ଗୋଟିଏ ଗୋଟିଏ ଉଜ୍ଜ୍ୱଳ ଦିବସ । ମା ଲକ୍ଷ୍ମୀ ଠାକୁରାଣୀ ଏ ଦିନ ପ୍ରତି ଘରେ ଖାଦ୍ୟ ଖାନ୍ତି । ନୂଆ ଧାନ ଅମଳ ହୋଇଥାଏ । ଖଳାବାଡ଼ି, ଅଗଣା, ଦାଣ୍ଡଦ୍ୱାରଠାରୁ ଗର୍ଭିଘରର ପର୍ଯ୍ୟନ୍ତ ଧାନ୍ୟ—ଲକ୍ଷ୍ମୀ ବିରାଜମାନ କରିଥାନ୍ତି । ପୂର୍ବଦିନ ରାତିରୁ ଘରର ଚାରିଆଡ଼େ ଚିତା ପଡ଼ିଥାଏ । ଲକ୍ଷ୍ମୀପାଦ, ପଦ୍ମଫୁଲ ଚିତା ପକାଇବାରେ ଓଡ଼ିଆଣୀଙ୍କ ବିଶେଷତ୍ୱ ଏ ଦିଗରେ ଅଦ୍ୱିତୀୟ । 'ଶୁକ୍ଳଧାନ'ର ଏହି ଓଷାରେ ବିଶେଷ ପ୍ରାଧାନ୍ୟ ଥିବାରୁ ଧାନମପା 'ମାଣ' ଏ ଓଷାରେ ଖଟୁଲିରେ ଥୁଆ ହୋଇ ଲକ୍ଷ୍ମୀଙ୍କ ଚଳନ୍ତି ପ୍ରତିମା ରୂପେ ପୂଜା ପାଉଥିବାରୁ ଏହାର ଅନ୍ୟ ନାମ 'ଧାନମାଣିକା ଓଷା' । ଚଷାପୁଅ ଧାନ କାଟିଲା ବେଳକୁ ଧାନ ବିଲରୁ ଯେଉଁ ଧାନମେଣ୍ଡା ରଖିଥାଏ, ଆଜି ତାହା ପୂଜାଘରେ ଟଙ୍ଗାଯାଏ । ଗଉଣୀ, ମାଣ, ନାଲିକନାରେ ଆବୃତ ହୋଇ ଧୂପଦୀପ ନୈବେଦ୍ୟରେ ପୂଜା ହୁଏ । ଗୋମୟରେ ଘରଦ୍ୱାର ଲେପନ, ଗୃହମାର୍ଜନ, ଶୁକ୍ଳବସ୍ତ୍ର, ଶୁକ୍ଳଧାନ୍ୟର ପୂଜା, ମାଣବସା ପୁରାଣ ପାଠସହ, ପିଠାପଣାର ଆଦର ଏ ଓଷାର ପ୍ରଧାନ ବିଶେଷତ୍ୱ । ଏହାଛଡ଼ା 'ଗୁରୁବାର ଓଷା' ବା 'ଧାନ ମାଣିକା'କୁ ନିମ୍ନ ପ୍ରକାରେ ପୂଜା କରିବାର ବିଧି ଜଣାଯାଏ—

"ଦାସ ଯେ କରଣ୍ଡି ପୁଷ୍ପ ବଦରୀ ପଲ୍ଲବ
ଅର୍ପିଲା ପୁଷ୍ପ ଚନ୍ଦନ ଧୂପ ଦୀପ ଦେବ ।
ନଡ଼ିଆ କଦଳୀ ଶର୍କରା ଯେ ଦଧି ଗୁଡ଼
ପଞ୍ଚାମୃତ କରଣ ଭୁରିତେ ଆଗ ବାଡ଼ ।

ଗୃହ ଅଗଣାରେ ଆଗ ଗୋମୟ ଲେପିବୁ
ଶୁକଳ ସୁସଞ୍ଜ ଧାନ ମାଣେ ପକାଇବୁ ।
କାକ ବେ-ପରୁଆ ତାହା ଖାଉଥିବେ ପଡ଼
କ୍ରୋଧଭର ହୋଇ ତାଙ୍କୁ ନଦେବୁ ଘଉଡ଼ ।
ତାହାଙ୍କ ଭୋଜନ ଧାନ ଯେତେ ଉବୁରିବ
କୁଟି କାଣ୍ଡି ଅତି ଯତ୍ନେ ଚାଉଳ କରିବ ।"

(ଗୁରୁବାର ଓଷା—ପୃଷ୍ଠା ୩)

ମାସର ପ୍ରତି ପାଳିରେ ଲକ୍ଷ୍ମୀ ପୂରାଣ ବୋଲାଯାଏ । କେତେକ ମାର୍ଗଶିରରେ 'ମାଣ' ବସାଇ 'ମାଘ'ରେ ଏହାର ଉଦ୍‌ଯାପନ କରନ୍ତି । କାରଣ ମାର୍ଗଶିର ପରି 'ମାଘ' ମଧ୍ୟ ଗୁରୁ ପୁଣ୍ୟ ମାସରୁ (ଆ, କା, ମା, ବୈ) ଅନ୍ୟତମ । ମାଘମାସ ଓ ଅଗ୍ନ୍ୟୁତ୍ସବ ପ୍ରବନ୍ଧରେ ଏହାର ଆଲୋଚନା କରାଯାଇଅଛି ।

'ଗୁରୁବାର ମାଣବସା' ଉତ୍କଳରେ ଅତି ପବିତ୍ର ଓ ସମ୍ମାନିତ ପର୍ବ । ଏପରିକି ଏହି ପର୍ବର ଉଦ୍‌ଯାପନ ଦିବସର 'ମାଣଧାନ ଯଜ୍ଞ' ଆଡ଼ୁରି ପରିଚିତମ, ଏପରିକି ବିବାହିତ ଝିଅଙ୍କୁ ମଧ୍ୟ ଏଥିରେ ନିମନ୍ତ୍ରଣ କରାଯାଏ ନାହିଁ । ମାସ ବ୍ୟାପୀ ଏହି ପର୍ବଟି ଓଡ଼ିଶାରେ ଏକ ଆନନ୍ଦମୁଖର ପର୍ବ । ମାର୍ଗଶିର ମାସ ପ୍ରବେଶ କଲା ମାତ୍ରେ ସମସ୍ତେ ସଂଯତ ଓ ଶୁଚିବନ୍ତ ହୋଇ ମନ ଦେଇ 'ମା' ଲକ୍ଷ୍ମୀଙ୍କ ଆବାହନ ଲାଗି ପ୍ରସ୍ତୁତ ହୁଅନ୍ତି ।

ଏହି ପର୍ବ ମୂଳରେ ସ୍ୱାସ୍ଥ୍ୟ ବିଜ୍ଞାନ କାର୍ଯ୍ୟକ୍ରମ ଜଡ଼ିତ । ନିଜେ ପରିଷ୍କାର ପରିଚ୍ଛନ୍ନ ରହି ଘରଦ୍ୱାର ସଫା ସୁତୁରା ରଖିବା ଏକ ସ୍ୱାସ୍ଥ୍ୟରକ୍ଷା ବିଧି । ସପ୍ତାହକ ମଧ୍ୟରେ ଅନ୍ତତଃ ପ୍ରତି ଗୁରୁବାର ଏ ନୀତିଶିକ୍ଷା ଏବେ ବି ସ୍ମରଣ କରାଇଦିଏ । ଗୃହର ପ୍ରତ୍ୟେକ ଜିନିଷକୁ ଯଥାସ୍ଥାନରେ ରଖି ଘର ସଜାଡ଼ିବା ପ୍ରତି ହିନ୍ଦୁ ନରନାରୀଙ୍କ ମୁଖ୍ୟ କର୍ତ୍ତବ୍ୟ । ଏଣୁ ପରିଚ୍ଛନ୍ନତା ସୌନ୍ଦର୍ଯ୍ୟର ଦ୍ୱିତୀୟ ନାମ ବୋଲି କୁହାଯାଏ । ଏହି ସୌନ୍ଦର୍ଯ୍ୟ ଓ ନିର୍ମଳତା ହିଁ ଲକ୍ଷ୍ମୀ । ଏଣୁ ଇଂରାଜୀରେ କଥିତ ଅଛି (Cleanliness is next to godliness) ଏହି ପର୍ବରେ ପୁଣି ଶୁକ୍ଳଧାନ ମାଣ ବସେ । ସ୍ତ୍ରୀ ଲୋକମାନେ ଶୁକ୍ଳବସ୍ତ୍ର ପରିଧାନ କରିବାର ବିଧି । ଶାଢ଼ୀ ଓ ଧୋତି ସବୁ

ଶୁକ୍ଳ । ଏଣୁ ଶୁକ୍ଳମା ବା ଶୁକ୍ତିମାଣ୍ଡି ଜୀବନରେ ସାରସ୍ୱତ, ଲକ୍ଷ୍ମୀ ହିଁ ଜନେ ଶ୍ରୀବୃଦ୍ଧିଡନସ୍ତ୍ୱା ।

ଗାଁ ଗହଳର ଭାଗବତ ଟୁଙ୍ଗୀର ସାନ୍ଧ୍ୟ ଆସର ସମବେତ ପୁରୁଷମାନଙ୍କୁ ଯେପରି ଉଦବୁଦ୍ଧ କରି ଧର୍ମଚେତନା ଆଣେ, ମାଣବସା ଲକ୍ଷ୍ମୀ ପୁରାଣ ନାରୀଜାତି ମଧ୍ୟରେ ସେହିପରି ବେଶୀ ମାତ୍ରାରେ ସମାଜ ବନ୍ଧନକୁ ସୁସ୍ଥ ସୁନ୍ଦର କରି ପାରିବାରିକ ମର୍ଯ୍ୟାଦା ଅକ୍ଷୁଣ୍ଣ ରଖି ଆସୁଛି । ସାଧାରଣତଃ ପୁରୁଷ 'ବାହାର' ସ୍ତ୍ରୀ 'ଭିତର' । ଅର୍ଥାତ୍ ଗୃହର ଦାୟିତ୍ୱ ନେଇଥାଏ । ସକାଳୁ ସ୍ନାନସାରି ଘର ଗୋବରରେ ଲିପିବା ଫଳରେ ଗୃହର ପବିତ୍ରତା ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଗୋମୟ ଲେପନ ଫଳରେ ବହୁ ଅନିଷ୍ଟକାରୀ ଜୀବାଣୁ ନଷ୍ଟ ହୁଅନ୍ତି । ସ୍ତ୍ରୀ ଜାତିକୁ ଅଳସେଇ ମଠୋଇରେ ପରିଣତ ନ କରି 'ଲକ୍ଷ୍ମୀ ପୁରାଣ' ଅନ୍ତତଃ ସେମାନଙ୍କୁ ଚଞ୍ଚଳ, କର୍ମନିପୁଣା, କାମିକା କରି ପାରୁଛି । ଗୁରୁବାର ଦିନ ଆମିଷ ଭକ୍ଷଣ ନ କରିବା ପ୍ରଥା ଏବେ ବି ବହୁ ହିନ୍ଦୁଗୃହୀ ଗୃହିଣୀକୁ ପ୍ରଭାବିତ କରିଛି । 'ଗୁରୁବାର ଦିନ' ଅନ୍ତତଃ ଖର୍ଚ୍ଚ କାଟ ବ୍ୟବସ୍ଥା ଏକ ସୁସ୍ଥ ବିଧି । ବହୁଲୋକ ଏବେ ବି 'ଗୁରୁବାର ଦିନ' ଖର୍ଚ୍ଚ କରିବାକୁ ପଶ୍ଚାତ୍‌ପଦ । ବିନା ଆସନରେ ଭୂମି ଶୟନ, ସକାଳୁ ଉଠି ମୁଖ ଅପ୍ରକ୍ଷାଳନ, ଦକ୍ଷିଣ-ପଶ୍ଚିମାମୁଖୀ ଭୋଜନ, ସନ୍ଧ୍ୟାରେ କେଶପ୍ରସାଧନ, ଭୋଜନାନ୍ତେ ଅମୋଧନ, ଅନ୍ଧକାର ଗୃହରେ ଭୋଜନ, ସ୍ନାନାନ୍ତେ ତୈଳମର୍ଦ୍ଦନ, ନଖ ମୂନରେ ଭୂମି ବିଦାରଣ ମୂଳରେ ସ୍ୱାସ୍ଥ୍ୟରକ୍ଷା ବିଧି ପ୍ରଚ୍ଛନ୍ନ ନାହିଁ କି ? ଉତ୍ତମ ରୂପେ ତନ୍ନ ତନ୍ନ କରି ଦେଖିଲେ ଜାଣି ହେବ ଯେ ଗୃହବିଜ୍ଞାନ (Domestic science)ରେ ଏସବୁ ଅନ୍ତର୍ଭୁକ୍ତ । ଆଜିର ପାଠ-ପଢ଼ୁଆଣି ଝିଅ ଆସନ୍ତା କାଲିର ଗୃହକର୍ତ୍ତ୍ରୀ । ଏଣୁ ସୁସ୍ଥ ପରିବାର ବିଧିରେ ପରିଚର୍ଯ୍ୟା ନିମନ୍ତେ ଅନ୍ତତଃ ପ୍ରତ୍ୟେକ ହିନ୍ଦୁ ପ୍ରାପ୍ତବୟସ୍କା ବାଳିକା, ନାରୀ ଏହି ପୁରାଣଟି ପାଠ କରିବା ବିଧେୟ । 'ପୁରାଣ'ଟି ଏକାଧାରରେ ପାତିବ୍ରତ୍ୟ, ଅତିଥିସେବା, କୁଳାଚାର, ଜାତିଭେଦ, ଲୋକାଚାର, ସଂସାରନୀତି, ସ୍ୱାସ୍ଥ୍ୟ ନୀତିର ଏକ ଅପୂର୍ବ ସମାହାର ।

ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକ 'ମାଣବସା ଗୁରୁବାର' ସମ୍ପର୍କରେ ଅତି ସୁନ୍ଦର ଓ ପ୍ରାଞ୍ଜଳଭାବେ ଓଡ଼ିଆଣୀଙ୍କ ପ୍ରସ୍ତୁତ ଦଗଡ଼ା ଭାତର ମହିମା

ବର୍ଣ୍ଣନା କରି 'ଲକ୍ଷ୍ମୀ ବିଳାସ' ଶ୍ଳୋକରେ (ଗୁଡ଼ ଓ କାଣ୍ଡିଆ କୁଣ୍ଡାରେ ପ୍ରସ୍ତୁତ)ର ଅନ୍ତର୍ନିହିତ ଜୀବନୀକା ଉପରେ ଆଲୋକପାତ କରିଅଛନ୍ତି । 'ମାଣବସା'ର ପ୍ରତ୍ୟେକ ପାଳରେ ଯେଉଁ ଭିନ୍ନ ଭିନ୍ନ ପିଠାପଣା, କ୍ଷୀର, ଖେଚୁଡ଼ି, କଳମ ଶାଗ ଓ ଦହିପଖାଳ ପ୍ରଭୃତି ପୂଜା ଦିଆଯାଏ, ତା ମୂଳରେ ମଧ୍ୟ ଏହି ବିଜ୍ଞାନ ସମର୍ଥିତ ଚିନ୍ତା ଓ ଚେତନା ଲୁକ୍କାୟିତ ।

ଓଡ଼ିଶା ଭାରତର ଅନ୍ୟତମ କୃଷିପ୍ରଧାନ ରାଜ୍ୟ ହୋଇଥିବାରୁ ଓ ବିଶେଷତଃ ମାର୍ଗଶିର ମାସରେ ଧାନ ଅମଳ ହୋଇଥିବାରୁ 'ଧାନ୍ୟ ଲକ୍ଷ୍ମୀ' ପ୍ରତି କୃଷୀର ଘରକୁ ଆଗମନ କରନ୍ତି । ଓଡ଼ିଆ ଗୃହିଣୀ ତତ୍କାଳୀନ ଉତ୍ପନ୍ନଜାତ ଫୁଲ ଫଳରେ ଶସ୍ୟ ଲକ୍ଷ୍ମୀର ଆରାଧନା କରିଆସୁଛି । ଅଁଳା, ହରିଡ଼ା, ବାହାଡ଼ା, ମୂଳା, ଆଖୁ, କଣ୍ଟେଇକୋଳି, ଖୁଦ, ମନ୍ଦୁଆ, ମୂଳା ପ୍ରଭୃତି ସହଜଲଭ୍ୟ ଅନାବନା, ଅଜାଡିଆ ପଦାର୍ଥଗୁଡ଼ିକ ହିଁ ଲକ୍ଷ୍ମୀଙ୍କ ନୈବେଦ୍ୟ ଓ ଏଗୁଡ଼ିକରେ ହିଁ ବୈଜ୍ଞାନିକଙ୍କ ମତରେ ଜୀବନୀକା ବା ଶରୀର ଗଠନ ଉପାଦାନ ଭରି ରହିଛି ।

'ଗୁରୁବାର ମାଣବସା' ଏହିପରି ତାହାର ସୁଦୂରପ୍ରସାରୀ ପ୍ରଭାବ ଦ୍ୱାରା ଉତ୍କଳୀୟ ଗୃହୀ ଗୃହିଣୀମାନଙ୍କୁ ଉଦ୍‌ବୁଦ୍ଧ କରୁଥାଏ ।



# ପ୍ରଥମାଷ୍ଟମୀ

**ମାର୍ଗଶିର** ମାସ ମାସ-ଚକ୍ରର ଆଦ୍ୟ ମାସ ରୂପେ ପ୍ରାଚୀନ କାବ୍ୟଶାସ୍ତ୍ରରେ ବର୍ଣ୍ଣୀତ । ଓଡ଼ିଶାରେ ବାରମାସୀ କୋଇଲି, ବାରମାସୀ ଭାବନା ଓ ଚଉତିଶା ମୁଖ୍ୟତଃ ଏହି 'ମାର୍ଗଶିର'ରୁ ହିଁ ଆରମ୍ଭ । ବୈଦିକ ଆର୍ଯ୍ୟମାନେ ମଧୁମାସ ଚୈତ୍ରରୁ ବର୍ଷାରମ୍ଭର ପ୍ରମାଣ ରଖିଥିଲେ ମଧ୍ୟ ପରବର୍ତ୍ତୀ ଯୁଗରେ ମାର୍ଗଶିର ଏହାର ସ୍ଥାନ ଆରମ୍ଭ କରିଛି । ଅବଶ୍ୟ ଏ ସମ୍ବନ୍ଧରେ 'ନାନା ମୁନୀନାଂ ମତୟୋ ଭବନ୍ତି' ପରି ସମ୍ବତ୍ସର ଆରମ୍ଭ ମାସ ନେଇ ନାନା ମତ ପ୍ରକାଶ ପାଏ । ବାଗ୍‌ଭଟ୍ଟ ଓ ଭାବ-ପ୍ରକାଶଙ୍କ ଗଣନା ଶରତ୍ ଋତୁରୁ ଆରମ୍ଭ । 'ଜୀବେମ ଶରଦଃ ଶତମ୍'ରେ 'ଏହି ଭାବନା ସ୍ପଷ୍ଟ' ସୁଶ୍ରୁତରେ ଗଣନା ବର୍ଷାଋତୁଠାରୁ ଆରମ୍ଭ । 'ଚରକ' ସମୟରେ 'ହେମନ୍ତ' ଋତୁରୁ ଅର୍ଥାତ୍ ମାର୍ଗଶିର ମାସରୁ ବର୍ଷାରମ୍ଭ ହେଉଥିଲା ବୋଲି କେତେକ ପଣ୍ଡିତ ମତବ୍ୟକ୍ତ କରିଅଛନ୍ତି । ବିଶେଷତଃ ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ 'ମାସାନାଂ ମାର୍ଗଶୀର୍ଷୋଽହମ୍, ଋତୂନାଂ କୁସୁମାକରଃ' ମାସ ମଧ୍ୟରେ ମୁଁ ମାର୍ଗଶିର ଓ ଋତୁଙ୍କ ମଧ୍ୟରେ 'ବସନ୍ତ' ଉକ୍ତି ମାର୍ଗଶୀର୍ଷରୁ ମହିମାମୟ ଶୀର୍ଷ ସ୍ଥାନୀୟ କରି ପାରିଛି । ଏଣୁ ରକ୍ଷଣଶୀଳ ହିନ୍ଦୁ ମାର୍ଗଶିରକୁ ସମ୍ବତ୍ସରର ପ୍ରଥମ ମାସ ଭାବେ ଗ୍ରହଣ କରି ତାହାର ଅଷ୍ଟମୀକୁ 'ପ୍ରଥମାଷ୍ଟମୀ' ରୂପେ ସମ୍ମାନ ଦେଇ ଆସୁଅଛି । ପଣ୍ଡିତ ରତ୍ନାକର ଗର୍ଗବଟୁଙ୍କ ଦ୍ୱାରା ସମ୍ପାଦିତ 'ଗଦାଧର ପଦ୍ଧତି'ରେ ଥିବା ଅଷ୍ଟମୀ ପ୍ରକରଣରେ ଯେଉଁ ଅଷ୍ଟମୀ ଗୁଡ଼ିକର ନାମୋଲ୍ଲେଖ ରହିଛି, ସେଗୁଡ଼ିକ ହେଲା ଅଶୋକାଷ୍ଟମୀ, ଜନ୍ମାଷ୍ଟମୀ, ଶ୍ରେହିଣୀ ରହିତାଷ୍ଟମୀ, ଦୁର୍ଗାଷ୍ଟମୀ ବା ମହାଷ୍ଟମୀ । ଗୋଷ୍ଠାଷ୍ଟମୀ (କାର୍ତ୍ତିକ) ଓ ପ୍ରଥମାଷ୍ଟମୀ ( ମାର୍ଗଶିର )

ପ୍ରଥମାଷ୍ଟମୀ **ଉତ୍କଳର** ଏକ ସୁପରିଚିତ ଜନପ୍ରିୟ ପର୍ବ । ପରିବାରର ଜ୍ୟେଷ୍ଠ ପୁତ୍ରକନ୍ୟାଗଣ ଏ ଦିବସରେ ନୂତନବସ୍ତ୍ର ପରିଧାନ କରି ପିଠାପଣା ଖାଇ ଆନନ୍ଦରେ କଟାନ୍ତି । ମା' ମାନେ ପ୍ରାତଃ-କାଳରୁ ଜ୍ୟେଷ୍ଠ ସନ୍ତାନମାନଙ୍କୁ ନଡ଼ିଆତେଲ ଲଗାଇ ସ୍ନାନ କରାଇ

ଢଅନ୍ତି । ନବବସ୍ତ୍ର ପିନ୍ଧି ଆଦ୍ୟଜାତ ସନ୍ତାନଗଣ ପିଢ଼ା ଉପରେ ପୂର୍ଣ୍ଣକୁମ୍ଭ ସମ୍ମୁଖରେ ବସି ପୂଜା ପାଆନ୍ତି । ପୂର୍ଣ୍ଣକୁମ୍ଭ ତଳେ ନୂଆଧାନ ଓ ତା'ପରେ ଆମ୍ବଡାଳ ଏବଂ ନଡ଼ିଆ ଥାଏ । ମା'ମାନେ ଅରୁଆଚାଉଳ ଓ ନଖୁଣ୍ଣ ଗଜଗୁଆ ରଖି ମାତୃରୂପିଣୀ ତଥା ଶିଶୁ ମଙ୍ଗଳକାରିଣୀ ଷଷ୍ଠୀ-ଦେବୀଙ୍କୁ ପୂଜା କରନ୍ତି । ପିଲମାନେ ଚନ୍ଦନ ଓ ସିନ୍ଦୂର ଲଗାଇ ଭୋଗ ହୋଇଥିବା ଏଣ୍ଡୁରିପିଠା ଖାଆନ୍ତି । ଏଥିରେ ସାନବଡ଼ର ପାର୍ଥକ୍ୟ ନାହିଁ । ଏପରିକି ବୟସ୍କ ଲୋକେ ମଧ୍ୟ କେତେକ ସ୍ଥାନରେ ଜ୍ୟେଷ୍ଠ ସନ୍ତାନ ଜନିତ ପ୍ରାପ୍ୟ ଲାଭ କରୁଥିବାର ଦେଖାଯାଏ । ଜ୍ୟେଷ୍ଠ ପୁତ୍ର, କନ୍ୟା ସମସ୍ତେ ସମ୍ମାନର ଅଧିକାରୀ ହୋଇ ଥାଆନ୍ତି । ଏହି ପ୍ରଥମା-ଷ୍ଟମୀରେ 'ପଢୁଆଁ' ପୃଅଝିଅମାନଙ୍କର ଆଦର ହେଉଥିବାରୁ ଗାଁ ଗଣ୍ଡାରେ ଏହା 'ପଢୁଆଁ ଅଷ୍ଟମୀ' ନାମରେ ପ୍ରସିଦ୍ଧ ଓ 'ପଢୁଆଁ' ଶବ୍ଦ 'ପ୍ରଥମ' ଶବ୍ଦରୁ ଆଗତ ।

ପ୍ରଥମ ଜାତ ପୁତ୍ର-କନ୍ୟା ଯେ କାହିଁକି ଏତେ ସମ୍ମାନିତ ହୁଅନ୍ତି ଓ ଏହା ମୂଳରେ ଥିବା ମନୋବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଏକ ଯଥାର୍ଥ ବିଶ୍ଳେଷଣ ପରବର୍ତ୍ତୀ ଏକ ଇଂରାଜୀ ଲେଖାର, ମର୍ମାନୁସରଣରେ ଲିଖିତ ଲେଖାରେ ଦିଆଯାଇଛି । ବର୍ତ୍ତମାନ 'ମନୁସଂହିତା'ର ନବମ ଅଧ୍ୟାୟର କେତୋଟି ଶ୍ଳୋକରେ ଜ୍ୟେଷ୍ଠ ସନ୍ତାନମାନଙ୍କ ବୈଶିଷ୍ଟ୍ୟ ସମ୍ପର୍କରେ କିଞ୍ଚିତ୍ ଆଲୋଚନା କରାଯାଉଅଛି ।

ଜ୍ୟେଷ୍ଠ ସନ୍ତାନଗଣ ପିଣ୍ଡଦାନର ଅଧିକାରୀ, ପରିବାରର ପରି-ପୋଷକ, ପିତାମାତାଙ୍କର ହିତକାରୀ । ଏ ସମ୍ପର୍କରେ ଲେଖିବାକୁ ଯାଇ ମନୁ ପୁନଶ୍ଚ ଲେଖିଛନ୍ତି—ପ୍ରଥମ ପୁତ୍ର ଜାତ ହେବାମାତ୍ରେ ମନୁଷ୍ୟ ପୁତ୍ର ଯୁକ୍ତ ହୁଏ ଓ ପିତୃଋଣରୁ ମୁକ୍ତ ହୁଏ । ଯଥା—

"ଜ୍ୟେଷ୍ଠେନ ଜାତମାତ୍ରେଣ ପୁତ୍ରୀ ଭବତି ମାନବଃ
ପିତୃଣାମନୃଣଶ୍ଚୈବ ସତସ୍ମାତ୍ସର୍ବ-ମର୍ହତି"

ଯେ ଉତ୍ପନ୍ନ ହେବାରୁ ପିତୃଋଣରୁ ମୁକ୍ତି ଓ ମୋକ୍ଷ ଲାଭ ହୁଏ, ସେହି ଏକା 'ଧର୍ମଜ' ପୁତ୍ର, ଅନ୍ୟ ପୁତ୍ରମାନଙ୍କୁ 'କାମଜ' ବୋଲାଯାଏ । ଏଠାରେ ପୁତ୍ରଙ୍କର ଶ୍ରେଣୀ ବିଭାଗରୁ ଜ୍ୟେଷ୍ଠ ପୁତ୍ର ସନ୍ତାନଙ୍କୁ 'ମନୁ'

ପଟଅଷ୍ଟ ଗୌରବମୟ କରଅଛନ୍ତି । ଜ୍ୟେଷ୍ଠ କୁଳ ବଢ଼ାଏ, ଜ୍ୟେଷ୍ଠ ଲୋକଠରେ ପୂଜ୍ୟତମ ଓ ସଜ୍ଜନ ସମାଜରେ ଅଭିନନ୍ଦନୀୟ । ଯେ ଜ୍ୟେଷ୍ଠଭାଇ ଜ୍ୟେଷ୍ଠ ବୃତ୍ତି (ପିତୃବତ୍ ପୋଷଣାଦି) କରିବ, ସେ ମାତା ପରି ଏବଂ ପିତାପରି ପୂଜ୍ୟ, ମାତ୍ର ଜ୍ୟେଷ୍ଠ ବୃତ୍ତି ନ କଲେ ସେ ବନ୍ଧୁପରି ପୂଜନୀୟ । ଏପରିକି ଅନ୍ୟ ଭାଇମାନଙ୍କ ମଧ୍ୟରେ ଜ୍ୟେଷ୍ଠର ଶ୍ରେଷ୍ଠତ୍ୱ ପ୍ରକାଶ କରିବାକୁ ଯାଇ ସେ ଲେଖିଛନ୍ତି—'ସକଳ' ଦ୍ରବ୍ୟ ମଧ୍ୟରୁ ଯାହା ଶ୍ରେଷ୍ଠ ତାହାକୁ ବାହାର କରି ନେଇ ତହିଁରୁ କୋଡ଼ିଏ ଭାଗରୁ ଭାଗେ ଜ୍ୟେଷ୍ଠ, ତହିଁର ଅଧେ (ଅର୍ଥାତ୍ ୪୦ ଭାଗରୁ ଭାଗେ) ମଧ୍ୟମ ଓ ଚତୁର୍ଥ ଭାଗ (ଅର୍ଥାତ୍ ୮୦ ଭାଗରୁ ଭାଗେ) କନିଷ୍ଠ ପାଇବ । ସବୁ ଧନ ଭିତରେ ଯେଉଁଟି ଶ୍ରେଷ୍ଠ, ତାହା ଜ୍ୟେଷ୍ଠ ଗ୍ରହଣ କରିବ ଏବଂ ଯାହା କିଛି ଅଧିକ ହେବ ଓ ଦଶ ଗୋଟି (ଗୋରୁ ପ୍ରଭୃତି) ମଧ୍ୟରେ ଶ୍ରେଷ୍ଠ ଗୋଟିକ ଜ୍ୟେଷ୍ଠ ପାଇବ । ଛେଳି, ମେଣ୍ଢା ଏକକ୍ଷୁରବିଶିଷ୍ଟ ପଶୁମାନେ ବିଷମସଂଖ୍ୟା ହେଲେ କେବେ ହେଁ ବାଣ୍ଟିବ ନାହିଁ । ସମାନ ବାଣ୍ଟରୁ ଯାହା ବିଷମ (ଅର୍ଥାତ୍ ଅଧିକା) ହେବ ତାହା ବଧିରେ ବଡ଼ଭାଇର ।

'ପ୍ରଥମାଷ୍ଟମୀ' ପର୍ବ ଉତ୍କଳର ଅନ୍ୟତମ କ୍ଷେତ୍ରାଧିପତି ଲିଙ୍ଗରାଜ ମହାପ୍ରଭୁଙ୍କ ଚତୁର୍ଦ୍ଦଶ ଯାତ୍ରା ମଧ୍ୟରୁ ଅନ୍ୟତମ ଓ ପର୍ବତାଲିକାର ପ୍ରଥମ । ଏକାମ୍ର ଚନ୍ଦ୍ରିକାର ୧୦ମ ଅଧ୍ୟାୟରେ ଶିବଙ୍କ ଯେଉଁ ଚତୁର୍ଦ୍ଦଶ ଯାତ୍ରାର ଉଲ୍ଲେଖ ଅଛି ସେଥିରେ ମାର୍ଗଶୀର୍ଷ ଯେ ଶୁଭମାସ ଓ ତାହାର ଅଷ୍ଟମୀ ଯେ ଶିବଙ୍କ ଅତି ପ୍ରିୟ ନିମ୍ନୋକ୍ତ ଶ୍ଳୋକରୁ ଜଣାଯାଏ—

'ଚତୁର୍ଦ୍ଦଶ ଇମା ଯାତ୍ରାଃ କୁରୁଷ୍ୱାଦ୍ୟ ମହୀପତେ,
ଯାସାଂ ଦର୍ଶନ ମାତ୍ରେଣ ପ୍ରସନ୍ନୋଽହଂ ସଦାନୃଣାଂ
ମାର୍ଗଶୀର୍ଷେ ଶୁଭେ ମାସି ଆଦୌ ଚ ପ୍ରଥମାଷ୍ଟମୀ
ତସ୍ୟେବ ମାସି ଷଷ୍ଠ୍ୟାଂ ତୁ ମହାପ୍ରାବରଣୋତ୍ସବଃ'

ଗଦାଧର ପଦ୍ଧତିର ଶିବ ଯାତ୍ରା ସଂଗ୍ରହ ତାଲିକାରେ ମଧ୍ୟ ପ୍ରଥମାଷ୍ଟମୀ, ପ୍ରଥମ ସ୍ଥାନ ଲାଭ କରିଛି, ଯଥା—

"ଯାତ୍ରାଦ୍ୟା ପ୍ରଥମାଷ୍ଟମୀ ଜଗଦିତା ପ୍ରାବ୍ୟର ଷଷ୍ଠୀତଥା ।
ପୁଷ୍ୟସ୍ନାନ ମଥାଜ୍ୟକମ୍ବଳ ବିଧିର୍ମାଘେ ଶିତା ସପ୍ତମୀ ।"

ଏହି ପ୍ରଥମାଷ୍ଟମୀରେ ଜପ, ଦାନ କଲେ ଅକ୍ଷୟ ମୁକ୍ତି ମିଳେ ଓ ପାପ ନାଶ ହୁଏ । ଏହି ପର୍ବରେ ଶିବଙ୍କ ଚଳନ୍ତି ପ୍ରତିମାକୁ ପାପ ବିନାଶିନୀଙ୍କ ନିକଟକୁ ନିଆଯାଏ । ଘଣ୍ଟି, ଶଙ୍ଖ, କାହାଳୀ, ମୃଦଙ୍ଗର ଗହ ଗହ ଧ୍ୱନିରେ ଶିବଙ୍କ ପ୍ରତିମାକୁ ଶିବିକାରେ ସ୍ଥାପନ କରି ନିର୍ଦ୍ଦିଷ୍ଟ ସ୍ଥାନକୁ ନେବାକୁ ହୁଏ । ଦିବ୍ୟ ଚନ୍ଦନ ମିଶ୍ରିତ ଜଳରେ ସ୍ନାନ କରାଇ ଶିବଙ୍କୁ ଭକ୍ତି ସହକାରେ ପୂଜିଲେ ତାହାର ଫଳ ସ୍ୱରୂପ ଶିବାଳୟ ପ୍ରାପ୍ତି ହୁଏ । ଏଣୁ ଏହି ପ୍ରଥମାଷ୍ଟମୀ ବାସ୍ତବିକ୍ ମହାପାପହରା ।

ଏକାମ୍ର ପୁରାଣ ଅନୁଯାୟୀ ଭୁବନେଶ୍ୱରରେ ଯେଉଁ ପୁଷ୍କରିଣୀ ଗୁଡ଼ିକ ଅଛି ସେଗୁଡ଼ିକ ହେଲା—ବିନ୍ଦୁ ହ୍ରଦ, ପାପନାଶିନୀ, ଗଙ୍ଗାଯମୁନା, କୋଟିତୀର୍ଥ, ବ୍ରହ୍ମକୁଣ୍ଡ, ମେଘତୀର୍ଥ, ଅଲାବୁତୀର୍ଥ, ରାମହ୍ରଦ (ଅଶୋକ କୁଣ୍ଡ) । ସ୍ୱର୍ଗୀୟ ମହୋଦୟ ପ୍ରଣେତାଙ୍କ ମତାନୁଯାୟୀ ୯ ଗୋଟି ତୀର୍ଥ ଥିବାର ଜଣାଯାଏ । ସେ ମହାଶୟ ଦେବୀ ପାଦହରାକୁ ନବମ ସ୍ଥାନ ଦେଇଅଛନ୍ତି । ପ୍ରଥମାଷ୍ଟମୀ ଦିନ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମାକୁ ଲିଙ୍ଗରାଜ ମନ୍ଦିରର ପଶ୍ଚାତ୍ ଦିଗରେ ଓ ଯମେଶ୍ୱରଙ୍କ ପର୍ବରେ ଥିବା 'ପାପନାଶିନୀ' ନିକଟକୁ ନିଆଯାଏ । ଏ ପୁଷ୍କରିଣୀର ପାର୍ଶ୍ୱଦର୍ଶନର ମୈତ୍ରେଶ୍ୱର ଓ ବରୁଣେଶ୍ୱର ମହାଦେବ ଅଧିଷ୍ଠିତ ।

ଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରେ 'ପ୍ରଥମାଷ୍ଟମୀ' ନ ଥିଲେ ସୁଦ୍ଧା ମାର୍ଗଶିର ମାସ ପ୍ରବେଶ କଲାମାତ୍ରେ ଲକ୍ଷ୍ମୀଦେବୀ ଆଚଣ୍ଡାଳ ବ୍ରାହ୍ମଣଙ୍କ ଘରକୁ ଗମନ କରନ୍ତି । ସ୍ୱାମୀ ଜଗନ୍ନାଥଙ୍କ ଖାଦ୍ୟ ସମ୍ପର୍କରେ ସଚେତନା ହୋଇପାରନ୍ତି ନାହିଁ । ଏଣୁ ଆଦରଣୀୟ ପୁତ୍ରର କ୍ଷୁଧା ଶାନ୍ତ କରିବାରେ ଅସୁବିଧା ହେବ ଭାବି ମା' ଯଶୋମତୀ ନିଜେ ପ୍ରତ୍ୟୁଷରୁ ପୁତ୍ର ଜଗନ୍ନାଥଙ୍କୁ ଲଘୁ ଖାଦ୍ୟ ପରିବେଷଣ କରନ୍ତି ବୋଲି ଶ୍ରୀମନ୍ଦିର ସମାଚାରରୁ ଜଣାଯାଏ । ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଏଣୁ ପହିଲି ଭୋଗ ଆଚରିତ ହୁଏ । ପ୍ରତ୍ୟୁଷରେ ମହାପ୍ରଭୁଙ୍କ ନିଦ୍ରାଭଙ୍ଗ ଲାଗି ଯେଉଁ ୧୬ ପ୍ରକାର ବାଜା ବାଜେ, ଯଥା—ଜୟଶଙ୍ଖ, ମହୁରୀ, ବୀଣା, ଭେଟ, ରାବା, ତାଳ, ଶିଙ୍ଗା, ଘଣ୍ଟା, ଭେରୀ, ମୃଦଙ୍ଗ ଓ ଡମ୍ଫ ପ୍ରଭୃତି ଏ ସମୟରେ ବାଜେ ନାହିଁ ଓ ସେବକମାନେ ସାମାନ୍ୟ 'ମଣିମା' ସୂଚନା ଦେଇ ଦୁଆର ଫିଟାନ୍ତି, କାରଣ ପତିପତ୍ନୀଙ୍କ ମଧ୍ୟରୁ ପତ୍ନୀ ଲକ୍ଷ୍ମୀ ମାର୍ଗଶିର ମାସ ସାରା

ଧାନ୍ୟ ରୂପରେ ପ୍ରତି ଘରରେ ଭ୍ରମଣ କରୁଥାନ୍ତି । ମାତା 'ଯଶୋମତୀ' ହସ୍ତରୁ ପ୍ରଭୁ ନୈବେଦ୍ୟ ରୂପେ ଚୁଡ଼ାପୁଆ, ଖରବଡ଼, ମୁଆଁ କଡ଼ମା ପ୍ରଭୃତି ଗ୍ରହଣ କରନ୍ତି । ଏହି ପହିଲ ଭୋଗ ମୂଳରେ ବାତ୍ସଲ୍ୟ ମମତା ଥିବାର ଜଣାଯାଏ ।

ଯେଉଁ ଦେଶର ଠାକୁରଙ୍କର ଶୀତକାଳରେ ଜଠରାଗ୍ନି ପ୍ରବଳ ହୁଏ ଓ ଜାଙ୍କ ସ୍ଥାନରେ ନିଜେ ଜନନୀ ଆଗଭର ହୋଇ ତାହାର ବ୍ୟବସ୍ଥା କରନ୍ତି, ସେ ଦେଶରେ ଜ୍ୟେଷ୍ଠ ସନ୍ତାନମାନେ ତାଙ୍କ ମାଆ, ଖୁଡ଼ୀ, ବୁଢ଼ୀମା ଓ ମାଉସୀଙ୍କ ଆଦର ଓ ସ୍ନେହରୁ ବଞ୍ଚିତ ହେବେ କିପରି ? ମାର୍ଗଶିର ଆସିଛି, ଏହାପରେ ପୁଷ ଆସିବ ଓ ପରେ ପରେ ବାଘପରି 'ମାଘ' ପାଦ ପକାଇ ଡଗ ଡଗ ମାଡ଼ି ଆସିବ । ଏଣୁ ଶରୀରମାଦ୍ୟଂ ଖଳୁ ଧର୍ମ ସାଧନମ୍" ମନ୍ତ୍ରରେ ଆଜ ନିଜ ସ୍ୱାସ୍ଥ୍ୟର ଯତ୍ନ ନେବାକୁ ହେବ । ଏଣୁ ଓଡ଼ିଆ ଘରର ମା, ବୋହୂମାନେ ନାନାଦି ପିଠାପଣାର ବ୍ୟବସ୍ଥା କରିଥାନ୍ତି । ଏ ପ୍ରଥମାଷ୍ଟମୀରେ ଯେଉଁ ପିଠାର ବେଶୀ ଆଦର ତାହା ପୁଣି ଏଣ୍ଡୁରିପିଠା । ଏ ପୁଣି ଖିରି ଓ ଗୁଡ଼ର୍କରେ ତିଆରି । ଏ ଦେଶର ସାଧାରଣ ଲୋକ ଯାହା ଖାଏ, ଠାକୁରମାନଙ୍କୁ ମଧ୍ୟ ତାହା ଭୋଗ କରାଯାଏ । ମଣିଷକୁ ଜଠରାଗ୍ନି ବାଧେ, କାରଣ ଶୀତ ସମୟରେ ସାଧାରଣତଃ (ସ୍ୱାସ୍ଥ୍ୟବିଜ୍ଞାନ ଦୃଷ୍ଟିରୁ) ଜୀବନକାର ଅଭାବ ଶରୀରରେ ଦେଖାଦିଏ । ଏଣୁ ଶୀତଦିନେ ପୁଷ୍ଟିସାର ଖାଦ୍ୟ ଗ୍ରହଣର ପ୍ରୟୋଜନୀୟତା ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ ଯୁକ୍ତିଯୁକ୍ତ । ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକ ହିନ୍ଦୀର ଗୋଟିଏ ପ୍ରବଚନ ଉଦ୍ଧାର କରି ତାଙ୍କ ପ୍ରଣୀତ ପୁସ୍ତକ ଉତ୍କଳୀୟ ପର୍ବ ଓ ତାହାର ଉଦ୍ଦେଶ୍ୟ ପୁସ୍ତକରେ ଲେଖିଛନ୍ତି—

'ପୁଷମାଘମେ ଯୋ ନଜାଂଖାତା ଓ ନହାଂଖାତା
ବର୍ଷ ପଚାଶ ମେ ଯୋ ନହାଂପୋତା ଓ ନହାଂପୋତା'

ଅର୍ଥାତ୍ ପୁଷ ମାଘରେ ଯେ ଭଲ ଖାଇ ନାହାଁନ୍ତି, ସେ ବର୍ଷତମାମ୍ ପ୍ରକୃତ ଖାଇ ନାହାଁନ୍ତି, ବାପର କୋଡ଼ିଏ ପଚାଶ ବର୍ଷ ସମୟରେ ଯଦି ପୁଅ ଜନ୍ମ ନ ହୋଇ ପରେ ହୁଏ, ସେ ପୁଅ ପୁଅ ନୁହେଁ, କାରଣ × ×

ଯୌବନର ଶେଷ ଆଡ଼କୁ ଯେଉଁ ପିଲା ଜନ୍ମନ୍ତି, ସେମାନେ ବାପ ମା'ଙ୍କର ସଂସାରଯାତ୍ରାରେ ସେତେଦୂର ସାହାଯ୍ୟ କରିପାରନ୍ତି ନାହିଁ ।

ଏଣ୍ଡୁରିପିଠା-ନୂଆ ଚାଉଳ ଓ ବିରିର ମିଶ୍ରଣ । ଏ ଉଭୟ ମାନବ ଶରୀର ଗଠନ ନିମନ୍ତେ ପୁଷ୍ଟିକାରକ । ସ୍ୱର୍ଗତ ପଟ୍ଟନାୟକଙ୍କ ମତରେ ଯବ, ଗହମ, ଚଣା, ବିରି ପ୍ରଭୃତି ନୂଆ ଅବସ୍ଥାରେ ହିତକର । ପଞ୍ଜାବୀମାନଙ୍କର ବିରି, ଡାଲି ଭୋଜନ, ଦକ୍ଷିଣାଞ୍ଚଳର ଚାଉଳ ଓ ବିରିମିଶା ଏଣ୍ଡୁରିପିଠା, ବିବାହ, ବ୍ରତ ପ୍ରଭୃତି ମାଙ୍ଗଳିକ କାର୍ଯ୍ୟରେ ବଢ଼ାଇ ଅନୁକୂଳ ମୂଳରେ ଓଡ଼ିଆଣୀମାନେ ପ୍ରଚ୍ଛନ୍ନଭାବେ ସ୍ୱାସ୍ଥ୍ୟ ବିଜ୍ଞାନ ସମ୍ମତ ଉପକରଣ ରଖି ଯାଇଛନ୍ତି । କଳାମିଚ୍‌ମିଚ୍ ଗୁଡ଼ରେ ମଧ୍ୟ ଲୌହାଂଶ ଅଧିକ ଓ ଏହା ମଧ୍ୟ ଶରୀର ଗଠନ ନିମନ୍ତେ ଉପଯୋଗୀ । ବିଶେଷତଃ ପରିବାରର ଜ୍ୟେଷ୍ଠ ସନ୍ତାନ, ଯିଏ କି ଭବିଷ୍ୟତର ପିଣ୍ଡଦାତା, ପରିବାରର ଆଗାମୀ ଦିନରେ ପୋଷକ ଓ ଭର୍ତ୍ତା ରୂପେ ଧୃତିମାନ୍ ହୋଇ ଉଠିବ, ତାହାର ସୁସ୍ୱାସ୍ଥ୍ୟ ଗଠନର ପ୍ରଥମ ଭିତ୍ତି ସ୍ଥାପନ ଏହି ପ୍ରଥମାଷ୍ଟମୀରୁ ହିଁ ଆରବ୍ଧ ହୁଏ । ପୁଣି, ଅମାଳୁ ମିଠେଇ ବଦଳରେ ଓଡ଼ିଆଘରର ଆଈ, ମା'ମାନଙ୍କ ହାତପରଷା ପିଠାପଣା ମାଧ୍ୟମରେ ଏପରି ଯେଉଁ ସ୍ୱାସ୍ଥ୍ୟବର୍ଦ୍ଧକ ବ୍ୟବସ୍ଥା ଲୁଚି ରହିଛି, ତାହା ଯୁଗଜୟୀ ହୋଇ ରହିଥାଉ ଓ ପ୍ରଥମାଷ୍ଟମୀ ପରି ଉତ୍କଳୀୟ ପର୍ବଗୁଡ଼ିକ ଏହିପରି ବିବିଧ ପ୍ରକାର ଖାଦ୍ୟପଦାର୍ଥ ଜରିଆରେ ଆଗାମୀ ନାଗରିକମାନଙ୍କୁ ସୁସ୍ଥ, ସୁନ୍ଦର କରୁଥାଉ ଏତିକିମାତ୍ର କାମନା ।



# ପ୍ରଥମ ସନ୍ତାନମାନେ ହିଁ ଭାଗ୍ୟବାନ

ତୁମେ କେବେ ତୁମ ପରି ଏକା ପରିବେଷ୍ଟନୀରେ ବଢ଼ି ଆସିଥିବା ପରିବାରର ପିଲାମାନଙ୍କ ସହିତ ନିଜକୁ ତୁଳନା କରି ଦେଖିଛ କି ଯେ, ସେମାନେ ଠିକ୍ ତୁମ ପରି ସ୍ନେହମମତା ପାଇଛନ୍ତି ? କିମ୍ବା ତୁମେ ତୁମ ନିଜକୁ ଘରର ଅନ୍ୟ ଭାଇ ଭଉଣୀମାନଙ୍କ ସହିତ ତୁଳନା କରି ଦେଖି ଭାବିଛ କି ତୁମମାନଙ୍କ ଭିତରୁ ଜଣେ କେବଳ ଜନ୍ମ ହୋଇଛି ଜୀବନରେ ସଫଳ ହେବାପାଇଁ ?

ଏହି ଦୁଇଟି ପ୍ରଶ୍ନର ଉତ୍ତର ତଥା ଆହୁରି ଅନେକ ପରିବାର ସମ୍ପର୍କୀୟ ପ୍ରଶ୍ନ ଆମେରିକାରେ ଚାଲିଥିବା ମନୋବିଜ୍ଞାନ ଗବେଷଣାରୁ ଜଣା ପଡ଼ିଛି ।

ସେମାନେ କହନ୍ତି ପୁରୁଷ ବା ସ୍ତ୍ରୀ ତୁମେ ଯାହା ହୁଅନା କାହିଁକି ତୁମର ସନ୍ତାନ ଭବିଷ୍ୟତରେ ଯେଉଁ ପ୍ରକାରର ହେବାକୁ ଯାଉଛି, ସେ ପ୍ରଥମ ସନ୍ତାନ ବା ଦ୍ୱିତୀୟ ସନ୍ତାନ ବା ଏକମାତ୍ର ସନ୍ତାନ, ଏହା ଉପରେ ବିଶେଷ ଭାବରେ ନିର୍ଭର କରେ ।

ସେମାନେ ଆହୁରି ମଧ୍ୟ କହନ୍ତି ଯେ, ପିତା ମାତା ଯେତେ ଯତ୍ନବାନ୍ ହେଲେ କଣ ହେଲା ସେମାନେ କେବେହେଲେ ଏ ପ୍ରକାର ପାର୍ଥକ୍ୟର ପରିପ୍ରକାଶକୁ ବନ୍ଦ କରିପାରିବେ ନାହିଁ; କାରଣ ସେମାନେ ସର୍ବୋପରି ମଣିଷ, ସେମାନେ କୌଣସି ପ୍ରକାରେ ପିଲାଙ୍କ ପ୍ରତି ନିଜର ମନୋବୃତ୍ତିକୁ ପରିବର୍ତ୍ତନ କରିପାରିବେ ନାହିଁ ।

ପ୍ରଥମ ସନ୍ତାନମାନେ, ପରବର୍ତ୍ତୀ ସନ୍ତାନମାନଙ୍କ ଅପେକ୍ଷା ଜୀବନରେ ଉନ୍ନତି କରିଛନ୍ତି । ବହୁ ପ୍ରସିଦ୍ଧ ପ୍ରଥମ ସନ୍ତାନମାନଙ୍କ ନାମ 'Who is who'ରେ ଲେଖା ଯାଇଛି ।

ଆମେରିକାରେ ଦେଖାଯାଇଛି ଯେ, ଆଗ ପ୍ରଥମ ଜାତ ସନ୍ତାନମାନେ ଉଚ୍ଚଶିକ୍ଷା ଲାଭ କରୁଛନ୍ତି । ଯଦିଓ କି ସେମାନଙ୍କ ପରିବାରରେ

ମାତ୍ର ଭାଇ ଭଉଣୀଙ୍କ ସଂଖ୍ୟା ଏକ ଦୁଇ ମଧ୍ୟରେ ଏବଂ ଯାହା ଆମେରିକାରେ ସତ୍ୟ ବୋଲି ପ୍ରତିପାଦିତ ହୋଇଛି, ତାହା ଯେ ଅନ୍ୟମାନଙ୍କ ପାଖରେ ମଧ୍ୟ ସତ୍ୟ ଏହା ନିଃସନ୍ଦେହ । ବ୍ରିଟେନରେ ୭୦୦୦ ବାଳକ ବାଳିକାଙ୍କ ଉପରେ ହୋଇଥିବା ଗବେଷଣାରୁ ଜଣାଯାଇଛି ଯେ, ପ୍ରଥମ ସନ୍ତାନମାନେ ନିଜର ସାନ ଭାଇ ଭଉଣୀଙ୍କଠାରୁ ସବୁବେଳେ ଉଚ୍ଚଶିକ୍ଷା ଓ ଅପେକ୍ଷାକୃତ ଭଲ ଶିକ୍ଷା ଲାଭ କରିଥାନ୍ତି ।

ପ୍ରଥମ ସନ୍ତାନମାନଙ୍କ ପାଇଁ ଏ ପ୍ରକାର ପକ୍ଷପାତର କାରଣ କଣ ହୋଇପାରେ ? ଇଂରାଜୀ-ସମାଜ-ବିଜ୍ଞାନ-ବିଶେଷଜ୍ଞ ଡକ୍ଟର ରୋଜର ପିଲିଙ୍ଗଟନ୍ ବିଶ୍ୱାସ କରନ୍ତି ଯେ, ଏହାର କାରଣ ହେଉଛି ପିତା ମାତା ପରେ ଜନ୍ମିଥିବା ନିଜର ଅନ୍ୟ ସନ୍ତାନମାନଙ୍କଠାରୁ ବେଶୀ ସମୟ ପ୍ରଥମ ସନ୍ତାନ ସହିତ ବିତାଇ ଥାନ୍ତି ।

ଡକ୍ଟର ଉଇଲିଅମ୍ ଅଲ୍ଟେସ୍ ଜଣେ କାଲିଫର୍ଣ୍ଣିଆର ମନୋବିଜ୍ଞାନ ବିଶେଷଜ୍ଞ । ସେ ଇଂଲଣ୍ଡ ଏବଂ ଆମେରିକାରେ ଜନ୍ମଗତ ପ୍ରଭାବ ଉପରେ ଶିକ୍ଷା ତଥା ଗବେଷଣା କରିଛନ୍ତି । ଏଥିରେ ମଧ୍ୟ ସେ ଏକମତ ହୋଇ କହନ୍ତି, 'ସେମାନେ ଶୀଘ୍ର କଥା କହନ୍ତି ଏବଂ ଅପେକ୍ଷାକୃତ ଭଲ ଭାବରେ କଥା କହନ୍ତି ।' ସେ ଆହୁରି କହନ୍ତି ଯେ, ଜ୍ୟେଷ୍ଠମାନେ ନିଜର ଶରୀର ବୃଦ୍ଧି ସମୟରେ ପ୍ରାୟ ସବୁବେଳେ ବୟସ୍କ ଲୋକମାନଙ୍କ ସହିତ କଥା କହନ୍ତି ଏବଂ ଶିକ୍ଷାଦୀକ୍ଷା ଦୃଷ୍ଟିରୁ ସେମାନେ ଅଳ୍ପ ଅଳ୍ପ ବୟସ୍କ ହୋଇଯାନ୍ତି ।'

ବେଳେବେଳେ ପିତାମାତା ନିଜର ପିଲାଙ୍କଠାରେ ଏ ପ୍ରକାର ପାର୍ଥକ୍ୟ ଦେଖି ବିସ୍ମିତ ହୁଅନ୍ତି ।

ଦ୍ୱିତୀୟ ସନ୍ତାନ ତାର ବାପାମାଙ୍କୁ ଅପେକ୍ଷାକୃତ ବୟସ୍କ ଏବଂ ଅଭିଜ୍ଞ ଭାବରେ ଦେଖେ ବା ବେଳେବେଳେ ବଡ଼ଭାଇଠାରୁ ସେ ବାପାମାଙ୍କୁ ଅପେକ୍ଷାକୃତ ଗରିବ ବା ଧନୀ ଭାବରେ ଦେଖେ ।

ଯେତେବେଳେ ଗୋଟିଏ ନୂତନ ଶିଶୁ ପରିବାର ଭିତରକୁ ଅସ୍ଥାୟୀ ଶାସକ ହୋଇ ଆସେ, ସେତେବେଳେ ବଡ଼ ଭାଇ ନିଶ୍ଚୟ ମନେ ମନେ ହିଂସା ଅନୁଭବ କରେ । ଆଲଫ୍ରେଡ୍ ଆଡ୍‌ଲରଙ୍କ ଭାଷାରେ

ଏହା ପ୍ରଥମ ସନ୍ତାନକୁ ଈର୍ଷାପରାୟଣ କରିପକାଏ । ଈର୍ଷାପରାୟଣ ହେବାର କାରଣ, ସେମାନେ ହରାଇଥିବା ସ୍ନେହ ନ ପାଇ ବାପାମାଙ୍କୁ ନିଜର ଉନ୍ନତି କରିବାର ସାମର୍ଥ୍ୟ ଦେଖାଇ ଦିଅନ୍ତି ।

ସେମାନେ ରକ୍ଷଣଶୀଳ ମଧ୍ୟ ହୋଇଯାନ୍ତି । ଅତି ଜ୍ୟେଷ୍ଠ ସନ୍ତାନମାନେ ବାପାମାଙ୍କ ସହିତ ଅନ୍ୟମାନଙ୍କ ଅପେକ୍ଷା ଅତି ଘନିଷ୍ଠ ଭାବରେ ଜଡ଼ିତ ହୋଇଥାନ୍ତି ଏବଂ ସେମାନେ ଅତିଶୀଘ୍ର ଭଲ ଭାବରେ ବାପା ମା'ଙ୍କ ଗୁଣସବୁ ଅନୁସରଣ କରିଥାନ୍ତି ।

ବଡ଼ପିଲମାନେ ପ୍ରାୟ ଶକ୍ତିଶାଳୀ, ବାଧ୍ୟ, ପରିଶ୍ରମୀ ଉଚ୍ଚାକାଂକ୍ଷୀ ହୋଇଥାନ୍ତି ଏବଂ ପ୍ରଥମ ପୁତ୍ରସନ୍ତାନ ମା'ଙ୍କ ସହିତ ବେଶୀ ସମ୍ପର୍କ ଯୋଗୁଁ ତାଙ୍କର ପରବର୍ତ୍ତୀ ଜୀବନରେ ସ୍ତ୍ରୀ ଜାତିଙ୍କ ପ୍ରତି ବହୁତ ଦରଦ ଥିବାର ଦେଖାଯାଏ ।

ଦ୍ୱିତୀୟ ସନ୍ତାନ ଆଦୌ ପ୍ରଥମ ପରି ସାଧାରଣତଃ ହୋଇ ନ ଥାନ୍ତି । ପରବର୍ତ୍ତୀ ଏହି ସନ୍ତାନମାନେ ନିଜ ନିଜର ଶକ୍ତି ଜମାଇବା ସଙ୍ଗେ ସଙ୍ଗେ ପରସ୍ପରର ଦୋଷ ବାଛନ୍ତି ।

ଯଦି ପ୍ରଥମ ପିଲା ବହୁତ ଭଲ ହୁଏ, ତେବେ ସାନ ଭାଇଭଉଣୀମାନେ ଖୁବ୍ ଭାବପ୍ରବଣ ହୋଇଥାନ୍ତି । ସେ ଝିଅ ବା ପୁଅ ହୁଅନ୍ତୁ, ସେ ଖୁବ୍ ବ୍ୟକ୍ତିକେନ୍ଦ୍ରିକ ଓ ବିପ୍ଲବୀ ହୋଇଥାନ୍ତି ।

କେତେକ କହନ୍ତି ଯେ, ସାଧାରଣତଃ ପଛରେ ଜନ୍ମ ହୋଇଥିବା ପିଲାମାନେ ଖୁବ ବ୍ୟକ୍ତିବାଦୀ ହୁଅନ୍ତି । କାରଣ ବାପ ମା ସେମାନଙ୍କୁ ବେଶୀ ସ୍ୱାଧୀନତା ଦିଅନ୍ତି ଓ ସେମାନଙ୍କର ଯତ୍ନ କମ୍ ନିଅନ୍ତି ।

ମଝିଆଁ ପିଲାମାନେ ନିଜ ଜୀବନକୁ ଭଲ ଭାବନ୍ତି ନାହିଁ, ଏହା ଚିକାଗୋର ଡକ୍ଟର ରୁଡ଼୍ଲୋଲଫ୍ ଡ୍ରେଇକାରସ୍ କହନ୍ତି । କାରଣ, ପରିବାରରେ ଅନ୍ୟ ପିଲାମାନେ ପାଉଥିବା ସ୍ନେହ ବା ପ୍ରଥମ ସନ୍ତାନର ସମ୍ମାନ ସେମାନେ ପାଆନ୍ତି ନାହିଁ ।

ପରିବାରରେ ଶିଶୁ ଏକ ବିଶେଷ ସ୍ଥାନ ଅଧିକାର କରେ ଏବଂ ଏହା ତାର ନିଜତ୍ୱ ଗଠନ କରିବାରେ ସାହାଯ୍ୟ କରେ ।

ପରିବାରକୁ ନୂଆ ଶିଶୁର ଆଗମନରେ ସେ ତାହା ସହିତ ସ୍ନେହ ପାଇବାରେ ପ୍ରତିଯୋଗିତା କରେ ଏବଂ ବଡ଼ ଭାଇ ଭଉଣୀମାନଙ୍କ ସହିତ ସମାନ ସ୍ଥାନ ଅଧିକାର କରିବା ପାଇଁ ଚେଷ୍ଟାକରେ । ଯଦି ସେ ପ୍ରତିଯୋଗିତାରେ ଜିତେ, ତେବେ ଉଚ୍ଚ ଧରଣ ଜୀବନର ସୁଖ ପାଏ ! ମାତ୍ର ଯଦି ସେ ହାରେ, ତେବେ ସେ ନିଜକୁ ଶ୍ରେଷ୍ଠ ଭାବେ । ଏହା ତାର ଜୀବନର ଗତିକୁ ଦୁଃଖମୟ କରେ ।

ପରିବାରରେ ଯଦି ଗୋଟିଏ ସନ୍ତାନ ଥାଏ ତେବେ ସେ ଗମ୍ଭୀର ଓ ଉଚ୍ଚାଭିଳାଷୀ, ରକ୍ଷଣଶୀଳ ଏବଂ ସଙ୍କୋଚ ହୋଇଥାଏ । କାରଣ, ବାପା ମା'ଙ୍କର ପ୍ରାଣକେନ୍ଦ୍ର ହୋଇଥିବାରୁ ସେ ସେମାନଙ୍କର ଗୁଣ ଗ୍ରହଣ କରେ । ଗୋଟିଏ ପୁଅ ମା'ର ସ୍ନେହ ବେଶୀ ପାଇବା ପାଇଁ ବାପାଙ୍କ ସହିତ ପ୍ରତିଯୋଗିତା କରେ । ଗୋଟିଏ ଝିଅ ବାପାର ସ୍ନେହ ପାଇବାରେ ମା ସହିତ ପ୍ରତିଯୋଗିତା କରେ । ତିନୋଟି ଲୋକ ଥିବା କୌଣସି ପରିବାର ଗୋଟିଏ ଯୁଦ୍ଧକ୍ଷେତ୍ର କହିଲେ ଭୁଲ ହେବ ନାହିଁ । ସେଠାରେ ପିଲାଟିର ସ୍ନେହ ପାଇବାରେ ବାପା ଓ ମା ଭିତରେ ପ୍ରତିଯୋଗିତା ସୃଷ୍ଟି ହୁଏ ।

ଏହିସବୁ ପାରିବାରିକ ଘଟଣା ଶ୍ରେଷ୍ଠ ପିଲାର ଜୀବନକୁ ପ୍ରଭାବିତ କରେ । ଭବିଷ୍ୟତ ଯୋଜନା ଏବଂ ବ୍ୟକ୍ତିତ୍ୱରେ ଗୁଞ୍ଜ ପକାଏ ।



[ ଅମୃତ ବଜାର ପତ୍ରିକା ତା ୧୬ । ୮ । ୭୧ରେ ପ୍ରକାଶ ପାଇଥିବା ଇଂରେଜ ଲେଖା 'The first borns are Brighter'ର ଅନୁସରଣରେ ଲିଖିତ ।]

## ପୌଷ

# 'ଶାମ୍ବ ଦଶମୀ'ର ପୃଷ୍ଠଭୂମି

ପୌଷ ମାସର ଶୁକ୍ଳ ଦଶମୀ 'ଶାମ୍ବ ଦଶମୀ' ନାମରେ ଉତ୍କଳରେ ପରିଚିତ । ଏ ପର୍ବ ମୂଳରେ ସର୍ବଭାରତୀୟପୂତା ପରିବର୍ତ୍ତେ ଉତ୍କଳୀୟତା ବେଶି ସ୍ପଷ୍ଟ । ବହୁବର୍ଷ ଧରି ନିଷ୍ଠାସହ ପାଳିତ ହୋଇ ଆସୁଥିବା ଉତ୍କଳୀୟ ପର୍ବ ଶାମ୍ବ ଦଶମୀର ପୌରାଣିକ ପୃଷ୍ଠପଟ ଉନ୍ମୋଚନ କରିବାକୁ ଏ କ୍ଷୁଦ୍ର ପ୍ରବନ୍ଧର ଲକ୍ଷ୍ୟ ।

ଦ୍ୱାପର ଯୁଗର କାହାଣୀ । ନୀଳ ଜୀମୁତକାନ୍ତି, ଦିବ୍ୟଜ୍ୟୋ ରତ୍ନାଭୂଷଣଭୂଷି କୃଷ୍ଣ ପୁତ୍ର ଶାମ୍ବଙ୍କ ଯୌବନୋଚ୍ଛଳ କମନୀୟ ରୂପରେ ଜଳକ୍ରୀଡ଼ା ରତୋନ୍ମତ୍ତା ମାତୃକଳ୍ପା କୃଷ୍ଣନାରୀମାନେ ଭ୍ରମବଶତଃ ମଦନମଦ ଜର୍ଜରିତ ହୋଇ ପଡ଼ିଲେ । ଯୋଷିତ୍‌ମାନଙ୍କର ରେତ ସ୍ଖଳନ ଜନିତ ଦୋଷ ନିମନ୍ତେ କୃଷ୍ଣ ସ୍ୱପୁତ୍ରକୁ ଦାୟୀ କରି ଶାପ ଦେଲେ—

"ମାତୃଣାଂ ଯସ୍ମାଦତେ ରେତ ଆଗତେ ତ୍ୱୟି ପୁତ୍ରକ,
ଇଦାନୀଂ ତବ ଦେହେ ତ କୁଷ୍ଠଂ ଭବତୁ ସର୍ବତଃ ।"

(କପିଳ ସଂହିତା)

ଅର୍ଥାତ୍ 'ହେ ପୁତ୍ର ! ତୋର ଆଗମନରେ ମାତାମାନଙ୍କର ରେତଃ ସ୍ଖଳନ ହୋଇଛି, ଏଣୁ ତୋ ଦେହ କୁଷ୍ଠରୋଗାକ୍ରାନ୍ତ ହେଉ ।' ମାତ୍ର ଅନ୍ୟତ୍ର ଉଲ୍ଲେଖ ଅଛି ଯେ 'ରାଣୀମାନେ କୃଷ୍ଣଚନ୍ଦ୍ରଙ୍କ ଉପସ୍ଥିତ ଭ୍ରମରେ ଶାମ୍ବଙ୍କ ସହ ସମ୍ଭ୍ରମରେ ପରିହାସ ଆରମ୍ଭ କଲେ । ସେତେବେଳେ ଶାମ୍ବ ପୁତ୍ରୋଚିତ ବ୍ୟବହାର ଦ୍ୱାରା ମାତୃବର୍ଗଙ୍କର ଭ୍ରମ ସୁଧାରି ଦେବାର ଥିଲା । ମାତ୍ର ତା'ଙ୍କର ଚପଳତାବଶତଃ ସେ ସ୍ଥିର ରହିଲେ ।

...ପରେ ସତ୍ୟଭାମା ଜାଣିପାରି ଶାମ୍ବଙ୍କୁ କୁଷ୍ଠଯୁକ୍ତ କଳେବର ହେବାକୁ ଅଭିଶାପ ପ୍ରଦାନ କଲେ । ଶାମ୍ବଙ୍କଠାରେ ଦିବ୍ୟଜ୍ୟୋ କୃଷ୍ଣର

ଶୋଭା ଦ୍ୱାରକା ନାରୀମାନଙ୍କ ମନରେ ଭ୍ରମ ଉପୁଜାଇ ଥିବାରୁ ସେମାନେ କ୍ଷମାପ୍ରାର୍ଥିନୀ ହୋଇ ପରେ ଦୋଷରହିତା ହେଲେ । ମାତ୍ର ଶାମ୍ବଙ୍କ ମାତା ଜାମ୍ବବତୀ ସ୍ୱ ପ୍ରିୟପୁତ୍ର ପ୍ରତି ଏପରି ଅଭିଶାପ ପ୍ରୟୋଗ ଶୁଣି ସ୍ୱାମୀଙ୍କଠାରେ କ୍ଷମା ପ୍ରାର୍ଥନା କଲେ । କୃଷ୍ଣ ଶାମ୍ବଙ୍କର ଏହି ଅଭିଶାପକୁ 'କର୍ମଜ' ବା 'ଗ୍ରହଜ' ରୋଗ ରୂପେ ଗ୍ରହଣ ନ କରି 'ଶାପଜ' ରୂପେ ଗ୍ରହଣ କଲେ । କାରଣ ଯେଉଁ ରୋଗ କୌଣସି ଅପରାଧ ଦ୍ୱାରା ଋଷି ଓ ଦେବତାଙ୍କର ଶାପରୁ ଉତ୍ପତ୍ତି ହୋଇଥାଏ, ତାହା ତପସ୍ୟା ଦ୍ୱାରା ଆରୋଗ୍ୟ ହୁଏ । ଏଣୁ କୁଷ୍ଠରୋଗର କ୍ଷୟକାରୀ ଏକମାତ୍ର ସୂର୍ଯ୍ୟଦେବ ହିଁ ଏ ଅବସ୍ଥାରେ ଆରାଧ୍ୟ । ଉତ୍କଳ ଦେଶର ପୂଣ୍ୟତମ ମୈତ୍ରେୟ ବନ ଏବଂ ନୀଳସାଗର କୂଳସ୍ଥ ଅର୍କ ନାମକ ବଟବୃକ୍ଷ ଭାସ୍କରଙ୍କର ପ୍ରିୟସ୍ଥଳୀ ।

ମୈତ୍ରେୟାଖ୍ୟଂ ବନଂ ଗତ୍ୱା ତପସ୍ତପ୍ତ୍ୱା କତେନ୍ଦ୍ରସୁଃ
ପ୍ରସାଦୟିତ୍ୱା ସ୍ଥୟେଶଂ ତତୋ ମୁକ୍ତିଂ ଗମିଷ୍ୟସି ।'

( କପିଳ ସଂହିତା )

ପ୍ରିୟ ପୁତ୍ର ଶାମ୍ବଙ୍କୁ ଆଶ୍ୱାସନା ଦେଇ କୃଷ୍ଣ ପୁଣି କହିଥିଲେ, "ଦ୍ୱାଦଶ ସୂର୍ଯ୍ୟଙ୍କ ମଧ୍ୟରେ ପୂଷା ନାମକ ସୂର୍ଯ୍ୟ ମୋର ଅତ୍ୟନ୍ତ ପ୍ରିୟ । ପୌଷମାସରେ ମୋର ଓ ସୂର୍ଯ୍ୟଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥାଏ । ସୂର୍ଯ୍ୟ ମୋର ନେତ୍ରରୂପୀ ତେଜ ଅଟନ୍ତି । ସେ ଏକଚକ୍ର ବଶିଷ୍ଟ ହିରଣ୍ମୟ ରଥରେ ବ୍ରହ୍ମାଣ୍ଡକୁ ପରିଭ୍ରମଣ କରୁଛନ୍ତି । ଦୀର୍ଘତମ ଋଷି କଳିଙ୍ଗ ଦେଶର ମୈତ୍ରେୟ ବନରେ ସେହି ସୂର୍ଯ୍ୟଙ୍କର ହିରଣ୍ମୟ କିରଣକୁ ଦେଖି ଥିଲେ ।"

(ଶ୍ରୀମନ୍ଦିର ସମାଚାର)

ଶ୍ରୀ ବିଷ୍ଣୁ ପୁରାଣରେ ଦ୍ୱାଦଶ ସୂର୍ଯ୍ୟଙ୍କ ନାମ ଓ ବିଭିନ୍ନ ମାସରେ ତାଙ୍କ ଅଧିକାର ସମ୍ବନ୍ଧରେ ବିସ୍ତୃତ ବିବରଣୀ ଦେଖାଯାଏ । ସୂର୍ଯ୍ୟଙ୍କ ଅନ୍ୟ ଗୋଟିଏ ନାମ 'ପୂଷା'—ଅର୍ଥାତ୍ ଯେ ସଂସାର ଜୀବଗଣଙ୍କୁ ପାଳନ କରନ୍ତି । ପ୍ରତ୍ୟେକ ମାସରେ ସୂର୍ଯ୍ୟ ଭିନ୍ନ ଭିନ୍ନ ଆଦିତ୍ୟ, ଋଷି, ଗନ୍ଧର୍ବ, ଅପ୍ସରା, ଯକ୍ଷ, ସର୍ପ ଓ ରାକ୍ଷସ ପ୍ରଭୃତି ସପ୍ତଗଣସହ ଅଧିଷ୍ଠିତ ହୋଇ ରଥ ସଂଚାଳନା କରନ୍ତି ।

"ସ ରଥୋଽଧିଷ୍ଠିତୋ ଦେବୈ ରାଦିତ୍ୟୈ ଋଷିଭିସ୍ତଥା,
ଗନ୍ଧର୍ବେ ରପ୍‌ସରାଭିଶ୍ଚ ଗ୍ରାମଣୀ ସର୍ପ ରାକ୍ଷସୈଃ ।"
(ଶ୍ରୀବିଷ୍ଣୁପୁରାଣ ଦ୍ୱିତୀୟ ଅଂଶ)

ସେହି ଦ୍ୱାଦଶ ଆଦିତ୍ୟ ହେଲେ—ଧାତା, ଅର୍ଯ୍ୟମା, ମିତ୍ର, ବରୁଣ, ଇନ୍ଦ୍ର, ବିବସ୍ୱାନ୍, ପୂଷା, ପର୍ଜନ୍ୟ, ଅଂଶ, ଭଗ, ତ୍ୱଷ୍ଟା ଓ ବିଷ୍ଣୁ । ଏମାନେ କାଳ ଅନୁଯାୟୀ ପ୍ରତି ମାସ ସୂର୍ଯ୍ୟମଣ୍ଡଳରେ ରହନ୍ତି । ମୁନିଗଣ ସ୍ତୁତି କରନ୍ତି, ଗନ୍ଧର୍ବମାନେ ସମ୍ମୁଖରେ ରହି ଯଶୋଗାନ କରନ୍ତି, ଅପ୍‌ସରାମାନେ ନୃତ୍ୟରତ ଥାଆନ୍ତି, ରାକ୍ଷସମାନେ ରଥ ପଛେ ପଛେ ଯାଆନ୍ତି, ସର୍ପ ରଥର ଚଳନ ମାର୍ଗକୁ ସୁସଜ୍ଜିତ କରନ୍ତି, ଯକ୍ଷଗଣ ରଥଡୋର ଟାଣନ୍ତି ଓ ବାଲଖିଲ୍ୟାଦି ନିତ୍ୟ ସେବକଗଣ ରଥ ଚାରିପଟେ ରହିଥାନ୍ତି ।

ପ୍ରାଚୀନ ଶାସ୍ତ୍ରରୁ ଜଣାଯାଏ ସାତବାର ମଧ୍ୟରେ ସୂର୍ଯ୍ୟବାର ବା ରବିବାର ଅତି ଶକ୍ତିଶାଳୀ । ଦେବତାଙ୍କ ମଧ୍ୟରେ ମଧ୍ୟ ସେ ସକଳ ଶକ୍ତିର ଆଧାର, କାରଣ ଭଗବାନ ବିଷ୍ଣୁଙ୍କ ସର୍ବଶକ୍ତିମୟୀ ଋକ୍, ଯଜୁଃ ଓ ସାମ ନାମକ ପରାଶକ୍ତି ବେଦତ୍ରୟୀ ସୂର୍ଯ୍ୟଙ୍କୁ ତାପ ପ୍ରଦାନ କରେ, ସଂସାରର ସମସ୍ତ ପାପ ନଷ୍ଟ କରେ । ଜଗତ ସ୍ଥିତି ଓ ପାଳନରେ ଋକ୍ ଯଜୁଃ ଏବଂ ସାମରୂପ ବିଷ୍ଣୁ ସୂର୍ଯ୍ୟଙ୍କ ଭିତରେ ନିବାସ କରିଥାଏ । ପୂର୍ବାହ୍ନରେ ଋକ୍, ମଧ୍ୟାହ୍ନରେ ଯଜୁଃ ଓ ସାୟଂକାଳରେ ବୃହଦ୍ରଥନ୍ତରାଦି ସାମଶ୍ରୁତି ସବୁ ସୂର୍ଯ୍ୟଙ୍କୁ ସ୍ତୁତି କରନ୍ତି । ଏହି ଋକ୍ ଯଜୁଃ ସାମ ରୂପିଣୀ ବେଦତ୍ରୟୀ ଭଗବାନ୍ ବିଷ୍ଣୁଙ୍କ ଅଙ୍ଗ ଅଟେ । ଏହି ବିଷ୍ଣୁ ଶକ୍ତି ଆଦିତ୍ୟଙ୍କ ଠାରେ ଥିବାର ଉଲ୍ଲେଖ ଅଛି ।

'ଋଚଃ ସ୍ତୁବନ୍ତି ପୂର୍ବାହ୍ନେ ମଧ୍ୟାହ୍ନେଽଥ ଯଜୂଂଷିବୈ,
ବୃହଦ୍ରଥନ୍ତରାଦୀନି ସାମାନ୍ୟହ୍ନଃ କ୍ଷୟେ ରବିମ୍ ।

ସତ୍ତ୍ୱ, ରଜଃ, ତମଃ ବିରୋଧୀ ହୋଇ ମଧ୍ୟ ଜଗତର ସମସ୍ତ ବସ୍ତୁ ସୃଷ୍ଟି କରିଥାନ୍ତି ।

ଉକ୍ତ ସାଂଖ୍ୟଦର୍ଶନରେ ପୁରୁଷ ଓ ପ୍ରକୃତିର ଅବତାରଣା ହୋଇଥିବାରୁ ଏହାକୁ ଦ୍ୱୈତବାଦୀ ବସ୍ତୁବାଦ କୁହାଯାଏ ।

ଅଙ୍ଗମେଷା ତ୍ରୟୀ ବିଷ୍ଣୋଃ ଋଗ୍‌ଯଜୁଃ-ସାମ-ସଞ୍ଜ୍ଞିତା,
ବିଷ୍ଣୁ ଶକ୍ତିରବସ୍ଥାନଂ ସଦାଽଽଦିତ୍ୟେ କରୋତି ସା ।"

( ଶ୍ରୀବିଷ୍ଣୁ ପୁରାଣ )

ବିଷ୍ଣୁଙ୍କର ଯେପରି ଉଦୟ ନାହିଁ କି ଅସ୍ତ ନାହିଁ, ସେ ସର୍ବଦା ସ୍ଥାୟୀ ରୂପ, ସୂର୍ଯ୍ୟନାରାୟଣ ମଧ୍ୟ ସ୍ଥାୟୀ ରୂପରେ ବିଦ୍ୟମାନ । ଦ୍ୱାରରେ ଖଚିତ ଦର୍ପଣ ନିକଟକୁ ଯେ ଯିବ ତାହାର ଛାୟା ସେଥିରେ ଯେପରି ପତିତ ହୁଏ, ଠିକ୍ ସେହିପରି ସୂର୍ଯ୍ୟ ଦର୍ପଣରେ ସମସ୍ତେ ପ୍ରତିବିମ୍ବିତ ହୋଉଛନ୍ତି ।

× × ×

ପୌଷ ମାସରେ ସୂର୍ଯ୍ୟମଣ୍ଡଳରେ ଥିବା 'ସାତଗଣ' ଶ୍ରୀବିଷ୍ଣୁପୁରାଣ ଅନୁସାରେ ହେଉଛନ୍ତି—ଋତୁ ଋଷି, ଭଗ ଆଦିତ୍ୟ, ଊର୍ଣ୍ଣାୟୁ ଗନ୍ଧର୍ବ, ସ୍ଫୂର୍ଜ, ରାକ୍ଷସ କର୍କୋଟକ ସର୍ପ, ଅରିଷ୍ଟନେମି ଯକ୍ଷ ଏବଂ ପୂର୍ବଚିତ୍ତି ଅପ୍‌ସରା । ଏହିପରି ଏକ ପୌଷ ମାସର ଶୁକ୍ଳଦଶମୀ ରବିବାର ତିଥିରେ କୃଷ୍ଣପୁତ୍ର ଶାମ୍ବ ସୂର୍ଯ୍ୟନାରାୟଣଙ୍କୁ କଠୋର ତପସ୍ୟାରେ ମନାଇ ସିଦ୍ଧକାମ ହୋଇଥିଲେ । ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ସୂର୍ଯ୍ୟ ଧ୍ୟାନପରାୟଣ ହୋଇ ଶାନ୍ତ, ଦାନ୍ତ ନିରାହାର, ବାୟୁଭକ୍ଷ ଓ ଜିତେନ୍ଦ୍ରିୟ ହୋଇ ସୂର୍ଯ୍ୟଙ୍କ ପ୍ରଦତ୍ତ ଏକବିଂଶନାମ ସ୍ମରଣ କରି ଅର୍କତୀର୍ଥ ନିକଟସ୍ଥ ପୁଣ୍ୟସଲିଳା ଚନ୍ଦ୍ରଭାଗାରେ ପ୍ରାତଃସ୍ନାନ କରୁଥିଲେ । ଏକଦା ପଦ୍ମସମ ମନୋହର ଦ୍ୱିଭୁଜ ବିଶିଷ୍ଟ ଏକ ପ୍ରତିମା ଜଳ ମଧ୍ୟରେ ସନ୍ଦର୍ଶନ କରି ତାହାକୁ ବେଳାଭୂମିକୁ ଆଣିଲେ । ସଲିଳରେ ପ୍ରତିମା ଅଙ୍ଗ ମାର୍ଜନ କରି ଶାମ୍ବ ଯଥାବିଧି ସେହି ମୂର୍ତ୍ତି ସ୍ଥାପନ କରି ବିମୁକ୍ତ ରୋଗ ହୋଇଥିଲେ । ଓଡ଼ିଆ ପୁରାଣରେ ମଧ୍ୟ ଅନୁରୂପ ପଦ ଦେଖାଯାଏ । 'ରବିନାରାୟଣ ମୂର୍ତ୍ତି ସ୍ଥାପି ସେହି ସ୍ଥାନେ, ପୂଜା ଆୟୋଜନ କଲେ ବିହିତ ବିଧାନେ । ଯେଉଁ ସ୍ଥାନେ ପୂଜା କରୁଥିଲେ ଶାମ୍ବ ବୀର, କୋଣାର୍କ ବୋଲି ବିଖ୍ୟାତ ହେଲା ।

ତା ସଂସାର ।' (ସୂର୍ଯ୍ୟପୁରାଣ-ପୃ ୨୦)

ଶାମ୍ବ ଦଶମୀର ବିବରଣୀରୁ ଜଣାଯାଏ, ଯେଉଁମାନେ ପୌଷ ମାସରେ ଏହି ଦଶମୀ ଦିନ ଶାମ୍ବଙ୍କ ସହିତ ସୂର୍ଯ୍ୟ ଉପାସନା କରିବେ, ସେମାନେ ନୀରୋଗତା ଭୋଗ କରୁଥିବେ ।

"ପୌଷ ମାସେ ସିତେ ପକ୍ଷେ ଦଶମ୍ୟାଂ ସୂର୍ଯ୍ୟ ବାସରେ,
ରୋଗମୁକ୍ତା ଭବେତ୍ତତ୍ର ସୂର୍ଯ୍ୟଦେବ-ପ୍ରସାଦତଃ ।
ପୂଜୟନ୍ତି ନରାଃ ଯେ ତ ଶାମ୍ବେନ ସହ ଭାସ୍କର
ଆରୋଗ୍ୟଂ ଲଭନ୍ତେ ନିତ୍ୟଂ ଜନ୍ମଜନ୍ମାନ୍ତରାବଧି ।"

ଶାମ୍ବଦଶମୀର ଭୌଗୋଳିକ ଓ ବୈଜ୍ଞାନିକ ପୃଷ୍ଠଭୂମି ମଧ୍ୟ ତାତ୍ପର୍ଯ୍ୟପୂର୍ଣ୍ଣ । ପୌଷ ମାସର ଏହି ପର୍ବରେ ସୂର୍ଯ୍ୟପୂଜାର ପ୍ରାଧାନ୍ୟ ଥାଏ । ସୂର୍ଯ୍ୟଙ୍କ ଦକ୍ଷିଣାୟନରେ ପରିବର୍ତ୍ତନ ଘଟେ । ଏଣୁ 'ମକର, ଦିନ ହୁଏ ବକର' ଲୋକ ପ୍ରଚଳିତ କଥାରେ ଭୌଗୋଳିକ ତଥ୍ୟ ଥିବାର ଜଣାଯାଏ । ସୂର୍ଯ୍ୟଙ୍କର ଉଦୟକାଳୀନ କୋମଳ କିରଣ ଉତ୍ତମ ସ୍ୱାସ୍ଥ୍ୟ ଦୃଷ୍ଟିରୁ ହିତକାରକ, ବିଶେଷତଃ ଶୀତଦିନିଆ ସୂର୍ଯ୍ୟ କିରଣ ଏ ଦିଗରେ ବେଶୀ ସହାୟକ । ପୌଷ ମାସର ପ୍ରତ୍ୟେକ ରବିବାର ମଧ୍ୟ ଓଡ଼ିଆ ଘରର ସ୍ତ୍ରୀମାନେ ନିଷ୍ଠାସହ ପାଳନ କରି ଉପବାସ ବିଧି ମାନନ୍ତି ଓ ସୂର୍ଯ୍ୟପୂଜା କରନ୍ତି । ଏହା ମୂଳରେ ପ୍ରାତଃଶଯ୍ୟା ତ୍ୟାଗ, ପ୍ରାତଃସ୍ନାନ, ଉପବାସ ମାଧ୍ୟମରେ ଶରୀର ରକ୍ଷା ପ୍ରଭୃତି ପାଳିତ ହୁଏ । ହିନ୍ଦିରେ ଗୋଟିଏ ବଚନିକା ଅଛି—'ପୂଷ ମାଘ ମେ ଯୋ ନହିଁ ଖାତା ଓ ନହିଁ ଖାତା' ଅର୍ଥାତ୍ ପୁଷ ଓ ମାଘ ମାସରେ ଯେ ଭଲ ଖାଏ ନାହିଁ, ସେ ଖାଇ ପାରେ ନାହିଁ । ଏହି ଶୁଷ୍କ ମାସ ଦୁଇଟିରେ ଭଲ ଖାଇ ସ୍ୱାସ୍ଥ୍ୟୋନ୍ନତି ଘଟାଇବାକୁ ହେବ । ଏହି ମାସରେ ପଡ଼ୁଥିବା ବଉଳ ଅମାବାସ୍ୟା, ରବିନାରାୟଣ ବ୍ରତ, ଶାମ୍ବଦଶମୀ ଓ ମକର ସଂକ୍ରାନ୍ତି ପ୍ରଭୃତିରେ ଉତ୍ତମ ଖାଦ୍ୟପେୟର ବ୍ୟବସ୍ଥା ଓଡ଼ିଆ ଗୃହିଣୀ କରିଥାଏ । ଶରୀରର ଅନ୍ୟନାମ ରୋଗଭୂ ହୋଇ ଥିବାରୁ ଅସାଧ୍ୟ ରୋଗ ସହିତ ଲଢ଼ିବାକୁ ଯଥେଷ୍ଟ ପୁଷ୍ଟିକର ଖାଦ୍ୟ ଶରୀର ଦରକାର କରେ । ଏଣୁ ଶାମ୍ବଦଶମୀ ଓ ଅନ୍ୟାନ୍ୟ ପର୍ବର କାକରା, ମଣ୍ଡାପିଠା, ମକର ଚୂଉଳ, ବାରମିଶା ତରକାରି, କ୍ଷୀରି ଓ ଚକୁଳିପିଠା ମାଧ୍ୟମରେ ଶରୀରରେ ପୁଷ୍ଟତା ଜନ୍ମେ ଓ ଦୁଃସାଧ୍ୟ କୁଷ୍ଠରୋଗ ମଧ୍ୟ ଦୂର ହୁଏ ।

●

[ ସମାଜ—୧୪-୧-୭୩ରେ ପ୍ରକାଶିତ ]

# ଜାତୀୟ ପର୍ବ 'ମକର ସଂକ୍ରାନ୍ତି'

ମକର ରାଶିରେ ସୂର୍ଯ୍ୟଙ୍କ ପ୍ରବେଶକାଳଠାରୁ ସୌରମାନ 'ମକର' ମାଘ ଓ ଚାନ୍ଦ୍ରମଘା ନକ୍ଷତ୍ର ଯୁକ୍ତ ପୂର୍ଣ୍ଣିମା ବିଶିଷ୍ଟ ମାଘ ମାସ ଆରମ୍ଭ ହୁଏ । ସାରା ଭାରତରେ ଏହା ଏକ ସୁପ୍ରତିଷ୍ଠିତ ଜାତୀୟ ପର୍ବ । ବିଶେଷତଃ ଭାରତ ଏକ କୃଷି ତଥା କୃଷକପ୍ରଧାନ ଦେଶ ହୋଇଥିବାରୁ ଏ ପର୍ବର ମାହାତ୍ମ୍ୟ ପ୍ରତ୍ୟେକ ଭାରତୀୟ ଉପଲବ୍ଧି କରନ୍ତି । ମାଘ ମାସର ଏହି ସଂକ୍ରାନ୍ତି 'ଉତ୍ତରାୟଣ' ସଂକ୍ରାନ୍ତି ନାମରେ ପରିଚିତ । ସକଳ ଶକ୍ତିର ଆଧାର ସୂର୍ଯ୍ୟ ଏହି ଦିନଠାରୁ ତାଙ୍କର ଉତ୍ତରାୟଣ ଯାତ୍ରା ଆରମ୍ଭ କରନ୍ତି । ଦିନ ବଢ଼େ ଓ ରାତି କ୍ଷୀଣତର ହୁଏ । ସୂର୍ଯ୍ୟଦେବତାଙ୍କୁ ମକର ଚାଉଳ ଓ ତିଳୁଆ ଖଜା ଭୋଗହୁଏ । ଏଣୁ ଏହାକୁ 'ତିଳ ସଂକ୍ରାନ୍ତି' କୁହାଯାଏ ବୋଲି ଭାଷାକୋଷ ପ୍ରଣେତା ପ୍ରକାଶ କରିଅଛନ୍ତି । ଭାରତୀୟ ହିନ୍ଦୁଜଗତରେ ଏହି ସୂର୍ଯ୍ୟ ପୂଜା ସହ ମକର ସଂକ୍ରାନ୍ତିର ଅନ୍ୟାନ୍ୟ ବୈଶିଷ୍ଟ୍ୟ ପ୍ରଦର୍ଶନ ଏହି କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ।

'ମକର ଦିନ ହୁଏ ବଡ଼'—ଏହି ଲୌକିକ ପ୍ରବାଦ ଭିତରେ ଏକ ମହା ଭୌଗୋଳିକ ତଥ୍ୟ ପ୍ରଚ୍ଛନ୍ନ । ବାସ୍ତବିକ ଏହି ମକର ସଂକ୍ରାନ୍ତିଠାରୁ ଦିନ ବଡ଼ ହୁଏ । ମକର ସଂକ୍ରାନ୍ତି ଭାରତର ତଥା କାଳ୍ପନିକ ବିଷୁବ-ରେଖାର ଦକ୍ଷିଣରେ ଅବସ୍ଥିତ । ଆମଦେଶ ମଧ୍ୟଦେଇ କର୍କଟକ୍ରାନ୍ତି ରେଖା ଯାଇଅଛି । ସୂର୍ଯ୍ୟଙ୍କର ପ୍ରତ୍ୟେକ ରାଶିର ସଂକ୍ରମଣକୁ ସଂକ୍ରାନ୍ତି କୁହାଯାଏ । ଦଶମ ରାଶି 'ମକର'କୁ ଯେଉଁଦିନ ସୂର୍ଯ୍ୟ ସ୍ପର୍ଶ କରନ୍ତି, ସେହିଦିନ ଉତ୍ତରାୟଣ ଆରମ୍ଭ ହୁଏ । ବିଷ୍ଣୁ ପୁରାଣର ୨ୟ ଅଂଶରେ ଏହାର ସ୍ପଷ୍ଟ ଉଲ୍ଲେଖ ଅଛି ।

ସୂର୍ଯ୍ୟଙ୍କର ବାରରାଶିର ବାର ସଂକ୍ରାନ୍ତି ଏକ ଏକ ପବିତ୍ର ଦିବସ ହେଲେ ହେଁ ଶାସ୍ତ୍ରକାରମାନେ ତନ୍ମଧ୍ୟରୁ ଦୁଇଟି ସଂକ୍ରାନ୍ତି 'କର୍କଟ' ଓ 'ମକର'କୁ ସୂର୍ଯ୍ୟଙ୍କ ଅୟନ ସଂକ୍ରାନ୍ତି ଦୃଷ୍ଟିରୁ ବିଶେଷ ପବିତ୍ର ବୋଲି

ବର୍ଣ୍ଣନା କରିଛନ୍ତି । କାରଣ ଏ ଦୁଇଟି ସୂର୍ଯ୍ୟଙ୍କ ଦିନ । ଏ ଦୁଇଟିରୁ ପୁଣି ଉତ୍ତରାୟଣ ସଂକ୍ରାନ୍ତି ବା ମକର ସଂକ୍ରାନ୍ତି ଦେବତାଙ୍କ ଦିନାରମ୍ଭ ଦିବସ ରୂପେ ସୂଚିତ ହୋଇଥିବାରୁ ପୁଣ୍ୟତମ ।

କୃଷି ସଭ୍ୟତାର ଦେଶ ଭାରତ ସହ ସୂର୍ଯ୍ୟଙ୍କ ସମ୍ପର୍କ ଅବିଚ୍ଛେଦ୍ୟ । ସୂର୍ଯ୍ୟଙ୍କର ଏହି ଉତ୍ତର ଦକ୍ଷିଣ ଯାତ୍ରା ମୁଖ୍ୟତଃ ପୃଥିବୀରେ ଗ୍ରୀଷ୍ମ ବର୍ଷାର ନିୟାମକ । ବିଭିନ୍ନ ଋତୁଚକ୍ରର ଆଗମ ଓ ନିଗମର ପ୍ରକୃତ ସୂତ୍ରଧର, ପୃଥିବୀ ରୂପଶ୍ରୀର ସଫଳ ରୂପକାର ସୂର୍ଯ୍ୟଦେବତା । କେତେବେଳେ ଧରଣୀ କକ୍ଷକୁ ଆତପତାପିତ କରନ୍ତି ତ ପୁଣି କେତେବେଳେ ମେଘ ମେଦୁର ଅମ୍ବର ମଧ୍ୟରୁ ଢାଳିଯାଆନ୍ତି ଅବାରିତ ଧାରା । ମହୀ ମଙ୍ଗଳା ଶସ୍ୟଶ୍ୟାମଳା ହୁଏ । ଷଡ଼ଋତୁ ତାଙ୍କର ନିର୍ଦ୍ଦେଶରେ ସେବକ ପ୍ରାୟେ ଖଟିଆନ୍ତି । ରାଧାନାଥଙ୍କ ଉକ୍ତି ବାସ୍ତବିକ୍ ଏଠି ଯଥାର୍ଥ ।

'ବର୍ଷ, ମାସ, ଦିନ, ଲତାର ମୂର୍ଦ୍ଧା ଅଟେ ଅଧିପ
ଖଟନ୍ତି ଋତୁଏ ସେବକ ପ୍ରାୟେ ମୋର ସମୀପ ।'

ସୂର୍ଯ୍ୟ ଏକ ହେଲେ ହେଁ ବାର ମାସର ଗୁଣ ଭେଦରେ ସେ ବିଭିନ୍ନ ନାମ ଗ୍ରହଣ କରିଥାଆନ୍ତି । ସେ ମାଘ ମାସରେ 'ଅରୁଣ', ଫାଲଗୁନ୍‌ରେ 'ସୂର୍ଯ୍ୟ', ଚୈତ୍ରରେ 'ବେଦାଙ୍ଗ', ବୈଶାଖରେ 'ଭାନୁ', ଜ୍ୟେଷ୍ଠରେ 'ରୁଦ୍ର', ଆଷାଢ଼ରେ 'ରବି', ଶ୍ରାବଣରେ 'ଗଭସ୍ତି', ଭାଦ୍ରପଦରେ 'ଯମ', ଆଶ୍ୱିନରେ 'ସୁବର୍ଣ୍ଣରେତା' କାର୍ତ୍ତିକରେ 'ଦିବାକର', ମାର୍ଗଶିର୍ଷରେ 'ମିତ୍ର' ଓ ପୌଷରେ 'ବିଷ୍ଣୁ' ବା ପୁରୁଷୋତ୍ତମ ନାମରେ ନାମିତ ବୋଲି ଶାସ୍ତ୍ରରେ ଉଲ୍ଲେଖ ଅଛି । ଯଥା—

"ଅରୁଣୋ ମାଘେ ମାସେ ତ ସୂର୍ଯ୍ୟୋବୈ ଫାଲଗୁନେ ତଥା
ଚୈତ୍ର ମାସେ ତୁ ବେଦାଙ୍ଗଃ ଭାନୁ ବୈଶାଖ ଏବ ଚ
ଜ୍ୟେଷ୍ଠ ମାସେ ଭବେତ୍ରୁ ରୁଦ୍ର ଆଷାଢ଼େ ତପତେ ରବିଃ
ଗଭସ୍ତିଃ ଶ୍ରାବଣେ ମାସେ ଯମୋ ଭାଦ୍ରପଦେ ତଥା
ଈଶେ ସୁବର୍ଣ୍ଣ ରେତାଶ୍ଚ କାର୍ତ୍ତିକେ ଚ ଦିବାକରଃ
ମାର୍ଗଶୀର୍ଷେ ତଥା ମିତ୍ରଃ ପୌଷେ ବିଷ୍ଣୁଃ ସନାତନଃ'
ପୌଷେ ତ ପୁରୁଷୋତ୍ତମଃ'

(ଆଦିତ୍ୟ ହୃଦୟ-ସୂର୍ଯ୍ୟତନ୍ତ୍ର)

ଶ୍ରୀ ମନ୍ଦର ସମାଗ୍ଭରରୁ ଜଣାଯାଏ ସୂର୍ଯ୍ୟ ମକର, କର୍କଟ ଓ ବିଷୁବ ଏହି ସଂକ୍ରାନ୍ତିମାନଙ୍କରେ ସାକ୍ଷାତ୍ ବ୍ରହ୍ମରୂପରେ ପରିଭ୍ରମଣ କରନ୍ତି । ତାଙ୍କର ଏହି ବିଶ୍ୱଚକ୍ର ଭ୍ରମଣ ହେତୁ ତାହାଙ୍କର ଅନ୍ୟ ନାମ ଖଗୋଳାଧିପତି'

'ସଂକ୍ରାନ୍ତିଷୁ ଗତଂ ସୂର୍ଯ୍ୟଂ ସାକ୍ଷାତ୍ ବ୍ରହ୍ମ ସନାତନଂ
ଭ୍ରମତି ବିଶ୍ୱଚକ୍ରେ ଚ ଖଗୋଳାଧିପତିଃ ସ୍ୱୟମ୍'

ସୂର୍ଯ୍ୟଙ୍କ ରଥ ବିଶ୍ୱ ପରିକ୍ରମା ବେଳେ ଭିନ୍ନ ଭିନ୍ନ ମାସରେ ଭିନ୍ନ ଭିନ୍ନ ଆଦିତ୍ୟ, ଋଷି, ଗନ୍ଧର୍ବ, ଅପ୍ସରା, ଯକ୍ଷ, ସର୍ପ ଓ ରାକ୍ଷସଗଣଙ୍କ ଗହଣରେ ଅଗ୍ରଗାମୀ ହୁଏ । ଏହାର ଏକ ବିସ୍ତୃତ ବର୍ଣ୍ଣନା ଶ୍ରୀ ବିଷ୍ଣୁପୁରାଣର ଦ୍ୱିତୀୟ ଅଂଶରେ ଦିଆଯାଇଅଛି । ସେଥିରୁ ଜଣାଯାଏ ଏହି ମାଘ ମାସରେ ଇଷ୍ଟା ନାମକ ଆଦିତ୍ୟ, ଜମଦଗ୍ନି ଋଷି, କମ୍ବଳ ସର୍ପ, ତିଳୋତ୍ତମା ଅପ୍ସରା, ବ୍ରହ୍ମୋପେତ ରାକ୍ଷସ, ଋତଜିତ୍ ଯକ୍ଷ ଏବଂ ଧୃତରାଷ୍ଟ୍ର ଗନ୍ଧର୍ବ ସୂର୍ଯ୍ୟଙ୍କ ରଥ ସଙ୍ଗେ ସଙ୍ଗେ ଅର୍ଥାତ୍ ଭାସ୍କର ମଣ୍ଡଳରେ ଥାଆନ୍ତି । ମୁନିଗଣ ସ୍ତୁତି କରନ୍ତି, ଗନ୍ଧର୍ବ ଏହାଙ୍କ ସମ୍ମୁଖରେ ଥାଇ ଯଶୋଗାନ କରନ୍ତି, ଅପ୍ସରାଗଣ ନୃତ୍ୟ କରନ୍ତି । ରାକ୍ଷସ ସୂର୍ଯ୍ୟ ରଥର ପଛେ ପଛେ ଚଳନ୍ତି, ସର୍ପଗଣ ରଥ ସୁସଜ୍ଜିତ କରି ରଥ ବହନ କାର୍ଯ୍ୟ କରନ୍ତି । ଯକ୍ଷଗଣ ନିତ୍ୟ ସେବକ ପରି ଖଟନ୍ତି । ବାଳଖିଲ୍ୟାଦି ଋଷିପଟେ ଘେରି ରହିଥାନ୍ତି । ସୂର୍ଯ୍ୟମଣ୍ଡଳର ଏହି ସାତ ସାତ ଜଣ ନିଜ ନିଜ ସମୟାନୁସାରେ ଉପସ୍ଥିତ ହୋଇ ଶୀତ, ଗ୍ରୀଷ୍ମ ଓ ବର୍ଷାର କାରଣ ହୋଇଥାନ୍ତି ।

'ସୋଽୟଂ ସପ୍ତଗଣଃ ସୂର୍ଯ୍ୟ ମଣ୍ଡଳେ ମୁନିସତ୍ତମ
ହିମୋଷ୍ଣବାରି ବୃଷ୍ଟୀନାଂ ହେତୁ ସ୍ୱସମୟଂ ଗତଃ
(ବି: ପୁ. ୨ୟ-୨୨)

ଭିନ୍ନ ଭିନ୍ନ ନକ୍ଷତ୍ରରେ ସୂର୍ଯ୍ୟଙ୍କ ସଂକ୍ରମଣ ଘଟିବା ଯୋଗୁଁ ସଂକ୍ରାନ୍ତିମାନଙ୍କୁ ୭ ଭାଗରେ ବିଭକ୍ତ କରାଯାଇଅଛି । ସେଗୁଡ଼ିକ ହେଲା ୧-ମନ୍ଦା, ୨-ମନ୍ଦାକିନୀ, ୩-ଧ୍ୱାଂକ୍ଷୀ, ୪-ଘୋରା, ୫-ମହୋଦରୀ, ୬-ରାକ୍ଷସୀ, ୭-ମିଶ୍ରିତା । ପୁଣି ଭାଷାକୋଷରେ ଉଲ୍ଲେଖ ଅଛି ଯେ ଧନୁ (ପୌଷ), ମିଥୁନ (ଆଷାଢ଼), କନ୍ୟା (ଆଶ୍ୱିନ) ଓ ମୀନ (ଚୈତ୍ର) ସଂକ୍ରାନ୍ତିକୁ ଷଡ଼ଶୀତି ସଂକ୍ରାନ୍ତି ବୋଲାଯାଏ । ସେହିପରି ବୃଷ (ଜ୍ୟେଷ୍ଠ) ବୃଶ୍ଚିକ

(ମାର୍ଗଶିର), ସିଂହ (ଭାଦ୍ର) ଓ କୁମ୍ଭ (ଫଗୁଣ) ସଂକ୍ରାନ୍ତି ବିଷ୍ଣୁପଦୀ ସଂକ୍ରାନ୍ତି ନାମରେ ନାମିତ । ମକର (ମାଘ) ସଂକ୍ରାନ୍ତି ଉତ୍ତରାୟଣ ଓ କର୍କଡ଼ା (ଶ୍ରାବଣ) ସଂକ୍ରାନ୍ତି ଦକ୍ଷିଣାୟନ ମେଷ (ବୈଶାଖ) ସଂକ୍ରାନ୍ତି ମହାବିଷୁବ ଓ ତୁଳା (କାର୍ତ୍ତିକ) ସଂକ୍ରାନ୍ତି ଜଳବିଷୁବ ନାମରେ ଖ୍ୟାତ ।

(ଭାଷାକୋଷ-ପୃଷ୍ଠା ୭୯୨୮)

ସଂକ୍ରାନ୍ତି ମାନେ ହିଁ ଏକ ପୁଣ୍ୟ ଦିବସ, ଏଣୁ ଭାରତୀୟ ଆର୍ଯ୍ୟ କେଉଁ ଆବହମାନ କାଳରୁ ସଂକ୍ରାନ୍ତିରେ ହୋମ, ଦାନ, ପୁଣ୍ୟକାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ନୂତନ ଖାଦ୍ୟ ପ୍ରସ୍ତୁତି ମାଧ୍ୟମରେ ସ୍ୱାସ୍ଥ୍ୟରକ୍ଷାର ଧାରା ଅବ୍ୟାହତ ରଖି ପାରିଛି । ବିଶେଷତଃ ସଂକ୍ରାନ୍ତି ଦିନ ପ୍ରାତଃ-ସ୍ନାନସହ ଦାତାମାନେ ଯେଉଁ ଦାନ ଧର୍ମ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ କରନ୍ତି, ସୂର୍ଯ୍ୟଦେବତା ଜନ୍ମାଜନ୍ମାନ୍ତରେ ସେହି ଦାତାଙ୍କୁ ପୁନଃ ଅର୍ପଣ କରନ୍ତି । ରବି ସଂକ୍ରମଣ ସମୟରେ ଯେ ସ୍ନାନ ନ କରେ, ସେ ସପ୍ତ ଜନ୍ମାବଧି ରୋଗୀ ଓ ଦୁଃଖଭାଗୀ ହୁଏ ।

ଉପେନ୍ଦ୍ରଭଞ୍ଜଙ୍କ 'ପ୍ରୟାଗେ ସ୍ନାନ ମକରେ ଯେହୁ ନ କରେ' ପଦାଂଶରୁ ମକର ସ୍ନାନର ମହତ୍ତ୍ୱ ସୂଚିତ ।

କଳିଙ୍ଗ ଦେଶ ସୂର୍ଯ୍ୟଙ୍କ ଅତି ପ୍ରିୟସ୍ଥଳୀ ହୋଇଥିବାରୁ ଏହି ସଂକ୍ରାନ୍ତିରେ ଘରେ ଘରେ ପିଠାପଣାର ବିପୁଳ ଆୟୋଜନ ସହ 'ମକର-ଚାଉଳ' ଚର୍ବଣ ଓ ବଣ୍ଟନର ବହୁଳତା ଦେଖାଯାଏ ଓ ଏହାହିଁ ଏ ପର୍ବର ଉଲ୍ଲେଖନୀୟ ବୈଶିଷ୍ଟ୍ୟ । ନୂଆ ଅରୁଆଚାଉଳ ସହ ନୂଆଗୁଡ଼, ଦୁଧ, ଦହି, ଆଖୁରସ, ନଡ଼ିଆ, ରାଶି, ଅଦା ଓ କର୍ପୂର ମଧ୍ୟ ମିଶ୍ରିତ ହୋଇ ଏକ ସୁସ୍ୱାଦୁ 'ମକରଚାଉଳ' ପ୍ରସ୍ତୁତ ହୁଏ । ଅଶୋକାଷ୍ଟମୀର 'ଅଶୋକ କଳି ମନେ ପକାଇବ ଘଡ଼ିକ ଘଡ଼ି' ପ୍ରବାଦ ମୂଳରେ ଯେପରି 'ଅଶୋକ କଳିକା ସେବନ ବିଧି' ଦ୍ୱାରା ସ୍ୱାସ୍ଥ୍ୟରକ୍ଷା ନିୟନ୍ତ୍ରିତ, ଏ ସଂକ୍ରାନ୍ତିରେ ଠିକ୍ ସେହିପରି ପରସ୍ପର ମଧ୍ୟରେ 'ମକରଚାଉଳ' ଆଦାନ ପ୍ରଦାନ ମାଧ୍ୟମରେ ନୂତନ ବନ୍ଧୁତା ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଉତ୍କଳରେ ଏକ ସୁସ୍ଥ ପରମ୍ପରା ରୂପେ ପ୍ରତିଷ୍ଠିତ ହୋଇ ଆସୁଅଛି । "ଭୁଂକ୍ତେ ଭୋଜୟତେ ଚୈବ ଷଡ଼୍‌ବିଧଂ ପ୍ରୀତିଲକ୍ଷଣଂ"ର ପ୍ରଚ୍ଛନ୍ନ

ମୈତ୍ରୀ 'ମକର' ବସିବାରୁ ଆରବ୍ଧ ହୁଏ ଓ 'ଅଶୋକାଷ୍ଟମୀରେ ଏହି ନୂତନ ବର୍ଷଚାର ମୂଳପତ୍ତନ ହୁଡ଼ୀଭୂତ ହୁଏ ।

ଶାରଦ ଧାନ ପୌଷ ମାସରେ ଅମଳ ହେବା ପରେ ନୂତନ ଶସ୍ୟ ରୂପେ ସମ୍ମାନିତ ହୁଏ । ଏହା ପୁଷ୍ଟିକର ଓ ଧର୍ମକାର୍ଯ୍ୟ ନିମନ୍ତେ ଅନୁକୂଳ । ଅଖଣ୍ଡ ଅକ୍ଷତ ଚାଉଳରେ ଜୀର୍ଣ୍ଣକାରୀ ଉପାଦାନ ଅଧିକ । ପୁଣି ଏହା ସହ ନଡ଼ିଆ, ନୂଆଗୁଡ଼, ଆଖୁରସ, କଦଳୀ ଇତ୍ୟାଦି ଖାଦ୍ୟ-ପ୍ରାଣଯୁକ୍ତ ଜୀର୍ଣ୍ଣକାରକ ତଥା ଜିହ୍ୱାରୋଚକ । ଏଣୁ ଅରୁଆ ଚାଉଳ ସହ ଏହାର ମିଶ୍ରଣ ପୁଣି ପ୍ରଥମେ ସୂର୍ଯ୍ୟଦେବଙ୍କୁ ସମର୍ପଣ ପରେ ଏହାର ସେବନ ଏକପକ୍ଷରେ ଯେପରି ରୋଚକ ସେହିପରି ସ୍ୱାସ୍ଥ୍ୟବର୍ଦ୍ଧକ । ବିଶେଷତଃ ମକର ମାସ ପୂର୍ବରୁ ଶୀତଋତୁରେ ପିତ୍ତବୃଦ୍ଧି ଘଟିଥାଏ । ଏଣୁ ସ୍ୱାସ୍ଥ୍ୟବିଜ୍ଞାନ ଦୃଷ୍ଟିରୁ ପିତ୍ତନାଶକ 'ମକର ଚାଉଳ'ର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ ।

ସେହିପରି ମାଘ ମାସର 'କଫ'ର ଆଧିକ୍ୟ ହେତୁ ତାହାର ପ୍ରଶମନ ନିମିତ୍ତ ଅନ୍ୟାନ୍ୟ ପିଠାପଣାର ପ୍ରସ୍ତୁତ ଓ ବ୍ୟବହାର ମଧ୍ୟ ସ୍ୱାସ୍ଥ୍ୟବିଜ୍ଞାନସମ୍ମତ । ପୂର୍ବକଥିତ ମତେ ଏହାକୁ 'ତିଳ' ସଂକ୍ରାନ୍ତି ବୋଲି କୁହାଯାଏ । ସୂର୍ଯ୍ୟ ଦେବତାଙ୍କୁ ତିଳଗଜା ଭୋଗ ଦିଆଯାଏ । ଏହାର ମୂଳରେ ମଧ୍ୟ ସ୍ୱାସ୍ଥ୍ୟନୀତି ଥିବାର ଦେଖାଯାଏ । ଶ୍ରୀ ପଦ୍ମଚରଣ ପଟ୍ଟନାୟକ ଲେଖିଛନ୍ତି—'ଆମ ଦେହ ନିମିତ୍ତ ବିଶେଷ ଲୋଡ଼ା କାଲ୍‌ସିୟମ ବା ଚୂନଜାତୀୟ ଧାତୁସାର । ରାଶି ବା ତିଳରେ ଏହା ଯେତେ ଅଛି ଅନ୍ୟ ଶସ୍ୟରେ ସେତେ ନାହିଁ । ଅକ୍ଷତ ଚାଉଳର ଅଭାବ 'ତିଳ' ପୂରଣ କରେ । ମଣି ନିମିତ୍ତ ଯେପରି କାଞ୍ଚନ ତିଳ ନିମିତ୍ତ ସେହିପରି ତଣ୍ଡୁଳ ବା ଚାଉଳ ।' ଗାଈ, ଭୂମି ଓ ସ୍ୱର୍ଣ୍ଣଦାନ ପରି 'ତିଳ'ର ମାହାତ୍ମ୍ୟ ପ୍ରକାଶ କରିବାକୁ ଯାଇ ଯାଜ୍ଞବଲ୍‌କ୍ୟ କହିଛନ୍ତି—

'ଗୋ ଭୂତିଳ ହିରଣ୍ୟାଦି ପାତ୍ରେ ଦାତବ୍ୟମୁତ୍ତମମ୍'

ଅର୍ଥାତ୍ ସତ୍‌ପାତ୍ରରେ ଗୋ, ଭୂମି, ତିଳକ, ସ୍ୱର୍ଣ୍ଣ ଦାନ କରିବ । ଏ ସଂକ୍ରାନ୍ତି ମାଘ ମାସର ଆଦ୍ୟ ଦିବସ ହେତୁ 'କମ୍ବଳ' ଦାନ ବିଧି ମଧ୍ୟ ଶାସ୍ତ୍ରସମ୍ମତ ।

ଓଡ଼ିଶାରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ମକର ଏକ ଆନନ୍ଦ-ମୁଖର ପର୍ବ । ନୂତନ ବସ୍ତ୍ର ପରିଧାନ ସହ ନୃତ୍ୟ ଗୀତ ଓ ପାନଭୋଜନରେ ଆଦିବାସୀ ଭାଇ ଭଉଣୀମାନେ ନିଜକୁ ହଜାଇ ଦିଅନ୍ତି । ଘରେ ଘରେ ପିଠାପଣା, ନୂତନ ବେଶଭୂଷାରେ ସମସ୍ତେ ଅନ୍ତବାହିତ ହୁଏ । ପଶ୍ଚିମ ଓଡ଼ିଶାରେ ଏହି ନୂଆ ଶସ୍ୟର ସଦୁପଯୋଗ ଏକ ଉଲ୍ଲେଖନୀୟ ଘଟଣା । ଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରେ ମଧ୍ୟ ମକର ସଂକ୍ରାନ୍ତି ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି ।

ଲିଙ୍ଗରାଜଙ୍କ ଚତୁର୍ଦ୍ଦଶ ଯାତ୍ରାରେ ମଧ୍ୟ ଏହାର ସ୍ଥାନ ସୁରକ୍ଷିତ ।

'ଦୃଷ୍ଟ୍ୱା ମକର ସଂକ୍ରାନ୍ତ୍ୟାଂ ଲିଙ୍ଗ-ତ୍ରିଭୁବନେଶ୍ୱର
ଘୃତ କମ୍ବଳ ସଂଯୁକ୍ତ-ମଗ୍ନି ର୍ନୋକ ମବା ପ୍ନୁୟାତ୍'

ଭାରତର ବହୁ ଦେବ ମନ୍ଦିରରେ 'ମକରପର୍ବ' ପାଳିତ ହୋଇଥାଏ । ଜାତୀୟ ପର୍ବ ମକର ଏହିପରି ମକରଉତ୍ସବର ମାଧ୍ୟମରେ, ଭାରତୀୟଙ୍କ ମନ ଜୀବନରେ ଆନନ୍ଦ, ଉଦ୍ଦୀପନା ତଥା ସ୍ୱାସ୍ଥ୍ୟରକ୍ଷାର ବିଜ୍ଞାନ-ସମ୍ମତ ବିଧି ପ୍ରଚ୍ଛନ୍ନଭାବେ ବହନ କରି ପ୍ରତିବର୍ଷ ଆସୁଥାଏ ।



ସରସ୍ୱତୀ ପୂଜା

# ସରସ୍ୱତି ! ଭଗବତି ! ଦେବି ! ନମସ୍ତେ

ନୂଆ ବସନ୍ତର ନୂଆ ମଳୟ ତନୁମନରେ ଆଣିଛି ନୂଆ ଶିହରଣ । ପତରଝଡ଼ା ଗଛଗୁଡ଼ିକର ପୁଣି ନୂଆ ପଲ୍ଲବନ ଫୁଟି ଉଠିଲାଣି । ଧୂସରିଆ ପଥସବୁରେ ଏବେ ପାଟଳିମା ଭରିଗଲାଣି । ଅଜଣା ଦେଶର ବିହଙ୍ଗମାନେ ବରଷକ ପରେ ଏବେ ପୁଣି ଆସର ମେଲିଲେଣି । ସେମାନଙ୍କ କଳକାକଳୀରେ ଏ ଶୀତ-ସ୍ପନ୍ଦର ସେଷ ଧରଣୀ ବକ୍ଷରେ ନୂଆ ଗୁଞ୍ଜରଣ ସଞ୍ଚରି ଉଠୁଛି । ବନସୁନ୍ଦରୀ ହାତରେ ମାଳଧରି ଭ୍ରମର ମାଗଜନା ପାଇଁ ତତ୍ପର । ଏକପକ୍ଷରେ ଶୀତର ବିଦାୟ

ରାଗିଣୀ ଓ ଅନ୍ୟପକ୍ଷରେ ବସନ୍ତ ବିଜୟ ବାରତା, ନୂଆପତର ଓ ମୁକୁଳିତ କଣ୍ଠରେ ପ୍ରସ୍ଫୁର ପାଇଲାଣି । ପ୍ରକୃତିର ଏହି ମଧୁର ବେଳାରେ ଆସ ମା ଭଗବତି ! ବିଦ୍ୟାଦାୟିନି ! କାବ୍ୟକଳା ଠାକୁରାଣି ! କବିଜନନି ! ପୁଣ୍ୟମାସ ମାଘର ଶୁକ୍ଳ ପଞ୍ଚମୀ ତିଥିରେ ତୁମର ଶୁଭାଗମନରେ ଏ ଧରା ପବିତ୍ରତର ହେଉ । ବିଦ୍ୟାଳୟସ୍ଥ ଛାତ୍ର, ସାହିତ୍ୟାମୋଦୀ ଲେଖକକୁଳ ଓ କଳାପ୍ରିୟ ସଙ୍ଗୀତଜ୍ଞ ଉଲ୍ଲସିତ ହୁଅନ୍ତୁ । ତୁମେ ଉଭୟ ସାହିତ୍ୟ ଓ ସଙ୍ଗୀତର ଅଧିକାରିଣୀ, ଜୀବନର ଉତ୍ସବ ମୁହୂର୍ତ୍ତର ଜୀବନ୍ତ ପ୍ରକାଶିକା । ଆସ ମା ଆସ ସରସ୍ୱତି !

ଯୁଗଯୁଗାନ୍ତରର କଥା ମା ମନେ ପଡ଼ୁଯାଉଛି । ତୁମେ ଭାରତୀୟଙ୍କ ଆରାଧ୍ୟା ଓ ପୂଜନୀୟା । ତଥାପି ତୁମର ଇତିହାସ ମା ରହସ୍ୟ-ବାଦଲ-ଢଙ୍କା । ତୁମେ ରହସ୍ୟମୟୀ । ବୈଦିକ ଯୁଗରୁ ମଧ୍ୟ ବୈଦିକ ଆର୍ଯ୍ୟମାନେ ତୁମର ଉପାସନା ଓ ମାଙ୍ଗଳିକ ଗାନ କରିଆସୁଛନ୍ତି । ତୁମେ ବିଦ୍ୟା ଓ ପ୍ରଜ୍ଞାର ଅଧିଷ୍ଠାତ୍ରୀ ଦେବୀ ରୂପେ ଅନାଦିକାଳରୁ ଏଯାଏ ମଧ୍ୟ ପ୍ରତିଷ୍ଠା ଲାଭ କରି ଆସୁଅଛ । ଏ କ୍ଷେତ୍ରରେ ତୁମେ ଅଦ୍ୱିତୀୟା । ନିଜେ ନିଜର ତୁଳନା ଅପ୍ରତିଦ୍ୱନ୍ଦ୍ୱୀ । ବେଦବର୍ଣ୍ଣିତ ବହୁ ଦେବଦେବୀଙ୍କ ନାମ ଭାରତୀୟମାନେ ବିସ୍ମୃତିଗର୍ଭରେ ପକାଇ ଦେଇଥିଲେ ହେଁ ତୁମକୁ ଗଣ୍ଠିଧନ କରି ରଖିଛନ୍ତି । କେତେକ ଦେବୀଙ୍କ ମହିମାରେ ଆପେକ୍ଷିକ ଲଘୁତା ଦେଖାଦେଇଥିଲେହେଁ ତୁମର ପ୍ରଭାବ ସୁଦୂରପ୍ରସାରୀ ଓ ଧର୍ମସାଗରର ବେଳାଭୂମିରେ ତୁମେ ହିଁ ବର୍ତ୍ତିଘର, ଏକମାତ୍ର ଆଲୋକବର୍ତ୍ତିକା । ତୁମେ ହିଁ ବିଦ୍ୟା, ପ୍ରଜ୍ଞା ଓ ସଙ୍ଗୀତରୂପୀ ତ୍ରିବେଣୀ ଧାରାର ଏକମାତ୍ର ଗୌରବମୟୀ ସଙ୍ଗମକାରିଣୀ । ତୁମ କୃପା କଟାକ୍ଷରେ 'ମୂକ ହୁଏ ମୁଖର, ପଙ୍ଗୁ ଗିରି ଉଲ୍ଲଙ୍ଘନ କରେ, ମୂର୍ଖ କାଳିଦାସ କବିଗୁରୁ ଉପାଧି ଭୂଷିତ ହୁଅନ୍ତି । ତୁମେ ଆଲୋକଦାୟିନୀ, କବିଜନନୀ ।

ମା ସରସ୍ୱତି ! ତୁମ ନାମ ହିଁ ମନରେ ପୁଲକ ଆଣେ । ବୈଦିକ ଯୁଗ ଆସି ସ୍ମୃତିପଥରେ ଉଦୟ ହୁଏ । ଯୁଗଯୁଗର କଥା ମନେ ପଡ଼େ । ଋଗ୍‌ବେଦ ଯୁଗରେ ତୁମ ନାମଧାରୀ 'କୁଳୁକୁଳୁନାଦିନୀ ଏକ ନଦୀ ବହିମାନା ଥିଲା । ତୁମ ନାମର ଆଭିଧାନିକ ଅର୍ଥ 'ଜଳପୂର୍ଣ୍ଣା' । ସରସ = ଜଳ + ଅଛି ଅର୍ଥରେ ବତ୍ + ସ୍ତ୍ରୀ (ଈ) । ଭାରତାଭିମୁଖୀ ଆର୍ଯ୍ୟ କାଶ୍ପିୟାନ୍ ହ୍ରଦ

କୂଳରୁ ଆସି ସରସ୍ୱତୀ ଓ ଦୃଷଦବତୀ ନଦୀଦ୍ୱୟର ମଧ୍ୟବର୍ତ୍ତୀ ଅଞ୍ଚଳରେ ବାସ କରୁଥିଲେ । ନାମ ଥିଲା ଏ ଅଞ୍ଚଳର 'ବ୍ରହ୍ମାବର୍ତ୍ତ' ଅର୍ଥାତ୍ ବ୍ରାହ୍ମଣ ଋଷିଙ୍କର ଦେଶ । ଏହି ନଦୀ କୂଳରେ ବୈଦିକ ସୂକ୍ତ ସବୁ ରଚିତ ଓ ଗୀତ ହୋଇଥିଲା । 'ବେଦ'ର ଉଦ୍ଭବ ହେଲା । ସାହିତ୍ୟ ଓ ସଙ୍ଗୀତ ଉଭୟର ମଧୁର ସମନ୍ୱୟ ଏଥିରେ ଘଟିଲା । ଏଣୁ ଆର୍ଯ୍ୟ ସଂସ୍କୃତିର ମୂଳ ଉତ୍ସାହ-ଦାୟିନୀ ରୂପେ ଆର୍ଯ୍ୟମାନେ ଏ ପର୍ଯ୍ୟନ୍ତ ତୁମ ନାମକୁ ଘୋଷି ହୋଉଛନ୍ତି ।

ତୁମେ ରହସ୍ୟମୟୀ । ହିମାଳୟ ନିର୍ଗତ ପୁଣ୍ୟତୋୟା ସରସ୍ୱତୀର ମଧୁର ଜଳ, କୁଳୁକୁଳୁ ନାଦ ଓ ସ୍ୱଚ୍ଛତା ରସଜ୍ଞ ଆର୍ଯ୍ୟମାନଙ୍କ ଅନ୍ତରରେ ପ୍ରାଣପ୍ରାଚୁର୍ଯ୍ୟ ଭରିଦେଇଥିଲା । ଏଣୁ ସେହି ସରସ୍ୱତୀ କୂଳରେ ହିଁ ପ୍ରଥମ କବିର ପ୍ରାଥମିକ ସ୍ଫୁରଣ ଘଟିଥିଲା । ଏଣୁ ହେ ସରସ୍ୱତି ! ତୁମେ ଆର୍ଯ୍ୟ-ମାନସସଞ୍ଚାରିଣୀ, ରହସ୍ୟମୟୀ ସେହି ସରସ୍ୱତୀ କି ? ତୁମେ ମହାନ୍ ଆର୍ଯ୍ୟ ସଂସ୍କୃତିର ବାର୍ତ୍ତାବହା ଓ ଆଦ୍ୟ ଜନୟିତ୍ରୀ ନୁହଁ ତ ?

ଭାରତୀୟ ସଭ୍ୟତା ନଦୀମାତୃକା ଏଣୁ ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମଦା, ସିନ୍ଧୁ, କାବେରୀ ପ୍ରଭୃତି ହିନ୍ଦୁ ପୁରାଣର ୭ଟି ପୁଣ୍ୟ ନଦୀ ସହ ଭାରତର ସଂସ୍କୃତି ଜଡ଼ିତ । ଏହି ନଦୀଗୁଡ଼ିକର ଅବବାହିକାରେ ନଦୀକୂଳଆ ସଭ୍ୟତା ଗଢ଼ି ଉଠିଥିଲା । ଏଣୁ ହେ ସରସ୍ୱତି ! ବେଦର ପ୍ରାଥମିକ ସ୍ଫୁରଣ ତୁମରି କୂଳରୁ ଉଦ୍‌ଭୂତ ହୋଇ-ଥିବାରୁ ତୁମେ 'ଜ୍ଞାନର ଅଧିଷ୍ଠାତ୍ରୀ ଦେବୀରୂପେ ଭାରତୀୟ ପଣ୍ଡିତଙ୍କ ଦ୍ୱାରା ସ୍ୱୀକୃତ ହୋଇଥିବାର ଅନେକ ମତ ବ୍ୟକ୍ତ କରନ୍ତି ।

ମାତଃ ସରସ୍ୱତି ! ବଡ଼ବାନଳ ଦ୍ୱାରା କମ୍ବଦନ୍ତୀ ଅନୁଯାୟୀ ତୁମେ ଦଗ୍ଧୀଭୂତା ହୋଇ ପାତାଳଗାମିନୀ ହେଲେ ସୁଦ୍ଧା ଋଷିପ୍ରାଣରେ ଯେଉଁ ଦେବାବତରଣ କରାଇଛ, ତାହା ଭାରତୀୟେ ଭୁଲିବେ କପରି ? ଏଣୁ ବୈଦିକଯୁଗରେ ତୁମର ସେ ପୁଣ୍ୟତୋୟା ରୂପର ରୂପାନ୍ତର ଘଟିଛି । ତୁମେ ଏବେ ଜନମାନସରେ ଜ୍ଞାନ ଓ ପ୍ରଜ୍ଞାର ଅଧିଷ୍ଠାତ୍ରୀ ଦେବୀ । ଏଣୁ ତୁମକୁ ନମସ୍କାର ।

ମାତା, ପୁରାଣରୁ ତୁମର ବହୁଳ ଆଭାସ ମିଳେ । ବ୍ରହ୍ମବୈବର୍ତ୍ତ ପୁରାଣରେ ତୁମ ଜୀବନ ଉପରେ ଆଲୋକପାତ କରାଯାଇଅଛି । ଲକ୍ଷ୍ମୀ,

ଗଙ୍ଗା ଓ ତୁମେ ହରିପ୍ରିୟା ଥିଲ । ଏକଦା ବିଷ୍ଣୁଙ୍କର ଗଙ୍ଗାଙ୍କ ପ୍ରତି ବେଶୀ ପ୍ରେମ ଥିବା ଜାଣି ତୁମେ କେଉଁଠି ଗଙ୍ଗାଙ୍କ ଉପରେ ରାଗକରି ତାଙ୍କୁ ଅଭିଶାପ ଦେଲ । ତୁମ ଅଭିଶାପ ଫଳରେ 'ଗଙ୍ଗା' ନଦୀରେ ପରିଣତ ହେଲେ । ଗଙ୍ଗାମାତା ମଧ୍ୟ କୁପିତା ହୋଇ ତୁମକୁ ଶାପ ଦେବାରେ ତୁମେ ମଧ୍ୟ ନଦୀଦଶାପ୍ରାପ୍ତ ହେଲ । ଏହାଛଡ଼ା ପୁରାଣ ରଚୟିତାମାନେ ତୁମ ସମ୍ବନ୍ଧରେ ନୂତନ ତଥ୍ୟର ସନ୍ଧାନ ନେଇଛନ୍ତି । ତୁମେ ଧର୍ମଦେବଙ୍କ ବାମ ପାର୍ଶ୍ୱରୁ ଆବିର୍ଭୂତା ହୋଇଥିଲ । ଶୁକ୍ଳବର୍ଣ୍ଣା, ହଂସସମାରୂଢ଼ା, ଶ୍ୱେତପଦ୍ମାସନା, ବୀଣା ପୁସ୍ତକ ଧାରିଣୀ, ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ରୂପେ ମାଘ ଶୁକ୍ଳପଞ୍ଚମୀ ଶ୍ରୀପଞ୍ଚମୀ ଦିନ ପୂଜିତା ହୋଇ ଆସୁଥିବାର ପୁରାଣ କହେ । ପୂର୍ବୋକ୍ତ ବ୍ରହ୍ମବୈବର୍ତ୍ତ ପୁରାଣରୁ ପୁଣି ଜଣାଯାଏ ପରମାତ୍ମାଙ୍କ ମୁଖରୁ ଶୁକ୍ଳବର୍ଣ୍ଣା, ବୀଣା ଧାରିଣୀ, କୋଟି ପ୍ରଭାର ଦୀପ୍ତିକୁ ବହନ କରି ତୁମେ ଆବିର୍ଭୂତା ହେଲ । ତୁମେ ଥିଲ ଶ୍ରୁତି ଓ ଶାସ୍ତ୍ର ମଧ୍ୟରେ ଶ୍ରେଷ୍ଠା ଓ ପଣ୍ଡିତମାନଙ୍କ ପୂଜ୍ୟା । ପୁଣି ଗଣେଶ ଖଣ୍ଡରୁ ଜଣାଯାଏ, ସୃଷ୍ଟିକାଳରେ ପ୍ରଧାନଶକ୍ତି ଈଶ୍ୱରଙ୍କ ଇଚ୍ଛାନୁସାରେ ପଞ୍ଚଧା ବିଭକ୍ତ ହୋଇଥିଲେ । ସେମାନେ ହେଲେ—ରାଧା, ପଦ୍ମା, ସାବିତ୍ରୀ, ଦୁର୍ଗା ଓ ସରସ୍ୱତୀ । ଏମାନଙ୍କ ମଧ୍ୟରେ ତୁମେ ବାଗଧିଷ୍ଠାତ୍ରୀ, ଶାସ୍ତ୍ରଜ୍ଞାନ ଦାୟିନୀ, କୃଷ୍ଣକଣ୍ଠୋଦ୍ଭବା ରୂପେ ପରିଚିତା ଥିଲ । ଶ୍ରୀକୃଷ୍ଣ ପ୍ରଥମେ ତୁମକୁ ପୂଜା କରିଥିଲେ । ମା ଭାରତି ! ଅମର ସିଂହ ତାଙ୍କ ପ୍ରଣୀତ ଅମରକୋଷରେ ତୁମକୁ ଏଗାର ପ୍ରତିଶବ୍ଦ ରୂପେ ସ୍ଥାନ ଦେଇଛନ୍ତି—ସେଗୁଡ଼ିକ ହେଲା 'ବ୍ରାହ୍ମୀ ତୁ ଭାରତୀ ଭାଷା ଗୀର୍ବାକ୍ ବାଣୀ ସରସ୍ୱତୀ' । ବୈଦିକ ଉପାଖ୍ୟାନରୁ ଜଣାଯାଏ ଜାଣିପୁ ନେତା ଇନ୍ଦ୍ର ନିଜ ଅପହୃତ ଗୋଧନର ସନ୍ଧାନ ନେବା ପାଇଁ 'ବାଣୀ'ଙ୍କୁ ଅସୁରରାଜ୍ୟକୁ ପଠାଇଥିଲେ । କଥିତ ଅଛି ବାଣୀ ଅସୁରମାନଙ୍କ ସଂସର୍ଗରେ ଆସି ଏକ ସମୟରେ ବୈଦିକ ଭାଷାର ପତନ ଘଟିଥିଲା ।" ସମ୍ଭବତଃ ଏହି ଘଟନାକୁ ଲକ୍ଷ୍ୟକରି ଉକ୍ତ ଲାକ୍ଷଣିକ ଆଖ୍ୟାନର ପ୍ରୟୋଗ ଦେଖିବାକୁ ମିଳେ । ବାକଶବ୍ଦ ସରସ୍ୱତୀ ଅର୍ଥରେ ଅଧୁନା ପ୍ରଚଳିତ ।

ମା ସରସ୍ୱତୀ! ତୁମେ ଅମ୍ଭୃଣ ଋଷିଙ୍କର ବାକ୍ ନାମ୍ନୀ କନ୍ୟା ନୁହଁ ତ ? ତୁମେ ବ୍ରହ୍ମବିଦ୍ୟା ଓ ଦର୍ଶନରେ ପାରଦର୍ଶିନୀ ଥିଲ ବୋଲି ତୁମର ଏପରି ନାମକରଣ ହୋଇଛି କି ?

ବିଦ୍ୟାଦାୟିନି ଜନନି ! ତୁମକୁ କେନ୍ଦ୍ର କରି ରଚିତ ହୋଇଥିବା 'ସିଦ୍ଧସରସ୍ୱତୀ ସ୍ତୋତ୍ର'ରେ ନିମ୍ନୋକ୍ତ ଶ୍ଳୋକଗୁଡ଼ିକ ହୃଦୟକୁ ପୁଲକ, ଭକ୍ତି ଓ ପବିତ୍ରତାରେ ଭରିଦିଏ । ସେହି ସର୍ବଜନାଦୃତ ସ୍ତୋତ୍ରର କେତେକାଂଶରେ ଗୋଟିଏ ନୂତନ ବିଶେଷତ୍ୱ ଥିବାରୁ ଜଣାଯାଏ । ଲୋଭ ସମ୍ବରଣ କରି ନ ପାରି ୨ । ୩ ପଦ ମାତ୍ର ଉଲ୍ଲେଖ କରୁଛି ।

'ଶୁକ୍ଲାଂ ବ୍ରହ୍ମ ବିଚାର ସାର ପରମା ମାଦ୍ୟାଂ ଜଗଦ୍ୱ୍ୟାପିନୀଂ
ବୀଣା ପୁସ୍ତକ ଧାରିଣୀମଭୟଦାଂ ଜାଡ୍ୟାନ୍ଧକାରାପହାମ୍ ।
ହସ୍ତେ ସ୍ଫଟିକମାଳିକାଂ ବିଦଧତୀଂ ପଦ୍ମାସନେ ସଂସ୍ଥିତାଂ
ବନ୍ଦେ ତାଂ ପରମେଶ୍ୱରୀଂ ଭଗବତୀଂ ବୁଦ୍ଧି ପ୍ରଦାଂ ଶାରଦାମ୍ ॥
ଯା କୁନ୍ଦେନ୍ଦୁ ତୁଷାରହାର ଧବଳା ଯା ଶ୍ୱେତ ପଦ୍ମାସନା
ଯା ବୀଣା ବରଦଣ୍ଡ ମଣ୍ଡିତ କରା ଯା ଶ୍ୱେତ ବସ୍ତ୍ରାବୃତା ।
ଯା ବ୍ରହ୍ମା ଚ୍ୟୁତ ଶଙ୍କର ପ୍ରଭୃତିଭି ର୍ଦେବୈଃ ସଦା ବନ୍ଦିତା
ସା ମାଂ ପାତୁ ସରସ୍ୱତୀ ଭଗବତୀ ନିଃଶେଷ ଜାଡ୍ୟାପହା'

ସେହି ବିଶେଷତ୍ୱ ବା ବୈଶିଷ୍ଟ୍ୟଟି ହେଉଛି ତୁମର ଶୁକ୍ଳମା ବା ଶୁଭ୍ରିମା ପ୍ରତି ବିହାର ଓ ଆଦର । ଏହାର କାରଣ କଣ ? ତୁମେ ଶ୍ୱେତ ପଦ୍ମବାସିନୀ, ଶ୍ୱେତବସ୍ତ୍ରାବୃତା, ଶ୍ୱେତ ହଂସବାହନା ଓ କୁନ୍ଦେନ୍ଦୁ ତୁଷାର ହାର ଧବଳା ପୁନଶ୍ଚ ଅନ୍ୟତ୍ର ଲେଖାଅଛି—

'ଶରଦ କୁସୁମତୁଷ୍ଟା ପୁଣ୍ଡରୀକୋପବିଷ୍ଟା
ଧବଳ ବସନବେଶା ମାଳତୀ ବଦ୍ଧକେଶା
ଶଶଧର କରବର୍ଣ୍ଣା ଶୁଭ୍ରକା ଭୃଙ୍ଗହସ୍ତା
ଜୟତି ଜିତସମସ୍ତା ଭାରତୀ ବେଣୁହସ୍ତା ॥'

(ବର୍ଷକୃତ୍ୟ-ପ୍ରଥମ ଭାଗଃ)

ଏହି ସବୁ କାରଣରୁ ପୁରାଣକାରମାନେ ତୁମକୁ 'ସର୍ବ ଶୁକ୍ଳା ସରସ୍ୱତୀ' ବୋଲି କହିଛନ୍ତି । ଧବଳିମା ପ୍ରତି ତୁମର ଏତେ ଆସକ୍ତି କାହିଁକି ? ଶୁଭ୍ରତା ପ୍ରତି ଏତେ ତୁମର ମମତା କାହିଁକି ? ଶୁଭ୍ରତା ଜ୍ଞାନର ଯଥାର୍ଥ ସ୍ୱରୂପ ବୋଲି ନା କଣ ? ପ୍ରାଚୀନ ଶାସ୍ତ୍ରରେ ଓ ସ୍ତୋତ୍ରରେ ମଧ୍ୟ ତୁମକୁ ଜ୍ୟୋତିର୍ମୟୀ ଓ ଶୁଭ୍ରମୟୀ ବୋଲି କୁହାଯାଇଛି ।

ଦ୍ୱିତୀୟତଃ ତୁମର ବାହନ 'ହଂସ' ମଧ୍ୟ ଦ୍ୱ୍ୟର୍ଥ ବାଚକ । ଏ ମଧ୍ୟ ଜଳଚର, ଏକ ଜ୍ଞାନମୟ ପକ୍ଷୀ । ଏଣୁ ତୁମେ ଓ ତୁମର ବାହନ ହଂସ ଯଥାର୍ଥରେ ଆର୍ଯ୍ୟ ନଦୀ ସଭ୍ୟତାର ପ୍ରତୀକ । ପୁଣି 'ପଦ୍ମାସନ'ରୁ ପଦ୍ମସହ ଜଳସହ ଅଙ୍ଗାଙ୍ଗୀ ସମ୍ପର୍କରୁ ଭାରତୀୟ ବୈଦିକ ସଭ୍ୟତାର ମୂଳକୁ ଆହୁରି ଦୃଢ଼ କରୁଛି । ଏଣୁ ହେ ଜନନି । ସରସ୍ୱତୀ, ପଦ୍ମ, ହଂସ ଏ ସମସ୍ତ ନଦୀ ସଭ୍ୟତାର ସ୍ମାରକ ।

'ମା, ତୁମେ ତ ନିଜେ ଶୁଭ୍ରା ପୁଣି ତୁମର ପ୍ରିୟ ବାହନ ଓ ଆସନ ମଧ୍ୟ ତଦନୁରୂପ । ଶ୍ରୀମଦ୍‌ଭଗବତ୍ ଗୀତାରେ ମଧ୍ୟ ପଦ୍ମକୁ ପବିତ୍ରତାର ସଙ୍କେତ ରୂପେ କଳ୍ପନା କରାଯାଇଛି । ନିଜେ ବ୍ରହ୍ମା ପଦ୍ମ-ଯୋନି, ଅଗ୍ନି ମଧ୍ୟ ପଦ୍ମସମ୍ଭବ ରୂପେ ବର୍ଣ୍ଣିତ । ଋଗ୍‌ବେଦରେ ଉର୍ବଶୀଙ୍କ-ଠାରୁ ବଶିଷ୍ଠ ଜନ୍ମ ଗ୍ରହଣ କରିବା ସମୟରେ ପଦ୍ମପୁଷ୍ପ ଉପରେ ଦଣ୍ଡାୟମାନ ହୋଇ ମାନସଦେବତା ଓ ଗନ୍ଧର୍ବଗଣ ଉପସ୍ଥିତ ଥିବାର ବର୍ଣ୍ଣନା ଦେଖିବାକୁ ମିଳେ ବୋଲି ଜଣେ ଲେଖକ ଉଲ୍ଲେଖ କରିଅଛନ୍ତି । ଲକ୍ଷ୍ମୀ ମଧ୍ୟ 'ପଦ୍ମାଳୟା', 'ପଦ୍ମା' ଓ 'କମଳା' ନାମରେ ନାମିତା । ବିଷ୍ଣୁ ପଦ୍ମନାଭ, ସୂର୍ଯ୍ୟ ପଦ୍ମବଲ୍ଲଭ ଓ ପରବର୍ତ୍ତୀ ବୁଦ୍ଧ ପଦ୍ମପାଣି । ଏହାଛଡ଼ା ଆସ୍ତିକ ମୁନିଙ୍କର ମାତା, ବାସୁକୀଙ୍କ ଭଗିନୀ ଓ ଜରତ୍କାରୁ ମୁନିଙ୍କର ପତ୍ନୀ ମନସାଦେବୀଙ୍କୁ ମଧ୍ୟ ପଦ୍ମା ନାମରେ ଅଭିହିତ କରାଯାଏ । × × ପଦ୍ମ ଉର୍ବରତାର ପ୍ରତୀକ । ହସ୍ତୀର ମସ୍ତକରେ ଥିବା ମଦଜଳକୁ ବୋଲାଯାଏ ପଦ୍ମକ । ଯୋଗ ଓ ତନ୍ତ୍ରରେ ଶରୀରର କେତେକାଂଶକୁ ପଦ୍ମ ବୋଲି ବର୍ଣ୍ଣନା କରାଯାଇଅଛି । ପଦ୍ମ ନିର୍ମଳ ଓ ପବିତ୍ର'

( ସଂସ୍କୃତି ଓ ସମାଜ—ଧୀରେନ୍ଦ୍ରନାଥ ପଟ୍ଟନାୟକ )

ମା ଭଗବତି ! କୁନ୍ଦଫୁଲରେ ତୁମେ ପୂଜିତା ବୋଲି 'ଗଦାଧର ପଦ୍ଧତି'ରେ 'ପଞ୍ଚମ୍ୟାକୁନ୍ଦ କୁସୁମୈଃ କୌନ୍ଦୀ ପୂଜ୍ୟା ସମୃଦ୍ଧୟେ', ଅର୍ଥାତ୍ ସମୃଦ୍ଧିଲାଭ ନିମନ୍ତେ କୁନ୍ଦ ଫୁଲରେ 'କୌନ୍ଦୀ'ଙ୍କ ପୂଜା କରଣୀୟ । ଲକ୍ଷ୍ମୀ ଯେପରି ପଦ୍ମପ୍ରିୟା ହେତୁ 'ପଦ୍ମା', ତୁମର ସେହିପରି କୁନ୍ଦ ପୁଷ୍ପରେ ଆଗ୍ରହ ଥିବାରୁ ତୁମେ 'କୌନ୍ଦୀ'ନାମରେ ନାମିତା ।

ଦ୍ୱିତୀୟତଃ ତୁମେ 'ବୀଣା ପୁସ୍ତକ ଧାରିଣୀ' । ଏଥିରୁ ଉଭୟ 'ସାହିତ୍ୟ-ସଙ୍ଗୀତ ରସାନଭିଜ୍ଞଃ, ସାକ୍ଷାତ୍ ପଶୁପୁଚ୍ଛ ବିଷାଣହୀନଃ' ଏହାହାସ୍ୟ ଏକ ପରୋକ୍ଷ ବ୍ୟଞ୍ଜ କରୁ ନାହିଁ କି ? ଭାରତୀୟମାନେ ଏ ଉଭୟ ରସରେ ସାର୍ବବିଶ୍ୱରେ ଅଗ୍ରଣୀ ଓ ଆଗମୀ । ତୁମ ବୀଣାର ଝଙ୍କାର ଯୁଗେ ଯୁଗେ ଭାରତୀୟଙ୍କୁ ଉଦ୍‌ବୁଦ୍ଧ କରି ଆସୁଛି । ଏକାଧାରରେ ବୀଣା ଓ ପୁସ୍ତକର ଅଧିକାରିଣୀ ହେତୁ ତୁମେ ଭାରତୀୟଙ୍କ ପକ୍ଷେ ଅଗ୍ରପୂଜ୍ୟା ।

ତୁମେ ନିଜେ ବୀଣାର ଉଦ୍ଭାବିକା ରୂପେ ମଧ୍ୟ କେତେକ ପଣ୍ଡିତଙ୍କ ମତରେ ସ୍ୱୀକୃତା । ତୁମ ପୂଜାରେ ଆଖି ଝଲସା ଶୋଭାଯାତ୍ରା ନାହିଁ, ଦଶହରା ଓ ଲକ୍ଷ୍ମୀ ପୂଜାର ନାନା ରୋଶଣୀ, କୋଳାହଳ, ବାଜଣାର ଚହଳ ନ ଥିଲେ ସୁଦ୍ଧା ତୁମେ ହିଁ ଭାରତୀୟ ବୁଦ୍ଧିଜୀବୀ ଗୋଷ୍ଠୀର ପ୍ରକୃତ ଆରାଧ୍ୟା ଦେବୀ । ଜଣେ ଇଂରେଜ ଲେଖକ ଲେଖିଛନ୍ତି—

Neither indulging in heroies like Durga nor delighting is wealth like Lakshmi, Saraswati is a charming refined Goddess whose main delight is playing on the Vina, the famous Indian musical instrument which she is fabled to have invented!'

(P. Thomas)

'ଶ୍ରୀପଞ୍ଚମୀ'ର ପୃଷ୍ଠଭୂମିରେ ଉଭୟ ପୌରାଣିକ ଓ ଐତିହାସିକ କିମ୍ବଦନ୍ତୀ ଥିବାର ଜଣାଯାଏ । ମହାଭାରତରେ ଏହି ଦିବସରେ ଗୋଟିଏ ବିବାହ ଉତ୍ସବ ଅନୁଷ୍ଠିତ ହୋଇଥିଲା । ପୁଣି ଏହି ଶ୍ରୀପଞ୍ଚମୀରେ ଉତ୍କଳର ଗଜପତି ସମ୍ରାଟ ପୁରୁଷୋତ୍ତମ ଦେବ କାଞ୍ଚୀ ଅଭିଯାନ ଆରମ୍ଭ କରିଥିବାର ଶୁଣାଯାଏ । ଏବେସୁଦ୍ଧା ଓଡ଼ିଶାର ବିଭିନ୍ନ ଦେବ ମନ୍ଦିରରେ ଏହି ଶ୍ରୀପଞ୍ଚମୀ ଦିବସରେ କାବେରୀ ନଗରର କାଞ୍ଚୀଦେଶ ବିଜୟର ପ୍ରତୀକ ରୂପେ ଶ୍ରୀ ଜଗନ୍ନାଥଙ୍କ କାଞ୍ଚୀ-କାବେରୀ ବେଶ ହୋଇଥାଏ ।"

( ସମାଜ-୩୦-୧-୭୧ )

ମା-ଜ୍ଞାନମୟି ଶାରଦେ ! ବର୍ତ୍ତମାନ ଜନ୍ମାସୁ ବିଦ୍ୟାର୍ଥୀଙ୍କର ଏକମାତ୍ର ପ୍ରତିବନ୍ଧକ ଅହଂକାର ସହିତ ତାହାର ମାୟା-ଜାଲ ବିସ୍ତାର କରିଛି । ମା' ଅହଂକାର, ଆତ୍ମବଡ଼ିମା ହିଁ ଜ୍ଞାନ ବିକାଶର ପରିପନ୍ଥୀ । ଜନ୍ମସୂତ୍ରବର ବିକାଶ କରି ତମୋରୂପୀ ଅହଂକାରର ବିନାଶ କର ମା ! ତୁମ ବାହନ 'ହଂସ'ଟି ଏହି ଶିକ୍ଷା ଦେଉଛି । ସେ କ୍ଷୀରନୀର ମଧ୍ୟରୁ କ୍ଷୀର ଗ୍ରହଣକରି ନୀର ଛାଡ଼ିଯାଏ, ସେହିପରି ଭାରତୀୟ ବିଦ୍ୟାର୍ଥୀଗଣ ସତ୍ ଲାଭକରି ଅସତ୍‌କୁ ପରିହାର କରନ୍ତୁ । ଏ 'ହଂସ' ଶିକ୍ଷା ସମସ୍ତେ ଘେନିବେ କି ? ଦ୍ୱିତୀୟତଃ ମା' ତୁମର ଶୁଭ୍ରତା ବା ନିର୍ମଳତା ବିଦ୍ୟାର୍ଥୀଙ୍କୁ ଆକର୍ଷଣ କରୁ । ତାହାର ମନ ନିର୍ମଳ ହେଉ । ହଂସରୂଢ଼ା ! ଏହି ଶିକ୍ଷା ଦିଅ । ନିର୍ମଳତା, ଶୁଭ୍ରତା, ପବିତ୍ରତା ଆମ ଜୀବନର ଧ୍ୟେୟ ହେଉ । ଜଡ଼ତା, ଅଜ୍ଞାନତା, ଅହଂଭାବର ବିନାଶ ହେଉ । ତୁମର ମୂର୍ତ୍ତିଟିରୁ ମଧ୍ୟ ଜ୍ଞାନର ତତ୍ତ୍ୱବୋଧ ଜାଗ୍ରତ କରାଏ । ତୁମର ବୀଣା, ପୁସ୍ତକ, ସ୍ଫଟିକମାଳା, ବରହସ୍ତ ଏହି ଚାରିଗୋଟି ମୁଦ୍ରାଯୁଧର ହେତୁ । ସ୍ୱର ସାଧନାର ପ୍ରତୀକ ବୀଣା, ଅନୁଧ୍ୟାନର ପ୍ରତୀକ ପୁସ୍ତକ, ମନୋନିବେଶର ପ୍ରତୀକ ମାଳା ଓ 'ବର' ହିଁ ସିଦ୍ଧିର ପ୍ରତୀକ ଅଟେ ।

(ଶ୍ରୀମନ୍ଦିର ସମାଚାର, ଜାନୁୟାରୀ—୨୭—୧୯୭୧)

ଆଜିର ଏହି ପବିତ୍ର ଅବସରରେ ମା ବାଗ୍‌ଦେବୀ । ଭାରତୀୟଙ୍କୁ ନୂତନ ଜ୍ଞାନର ପଥ ଦେଖାଇ ସେମାନଙ୍କର ଜ୍ଞାନନେତ୍ର ଖୋଲି ଦିଅ ଓ ତୁମର ଜାଡ୍ୟାପହା ନାମ ସାର୍ଥକ କର ।



# ମାଘ ସପ୍ତମୀ

ଉତ୍କଳ ସନାତନ ଧର୍ମ ବର୍ଣ୍ଣିତ ପଞ୍ଚଦେବତାଙ୍କର ଉପାସନା ସ୍ଥଳୀ । ଗଣେଶ ପୀଠ 'ମହାବିନାୟକ', ନାରାୟଣ ପୀଠ 'ପୁରୁଷୋତ୍ତମ', ରୁଦ୍ରକ୍ଷେତ୍ର 'ଏକାମ୍ର ପୀଠ', ଅମ୍ବିକା ପୀଠ 'ଯାଜପୁର' ପରି ଭାସ୍କର ତୀର୍ଥ ରୂପେ 'କୋଣାର୍କ' ପ୍ରସିଦ୍ଧି ଅର୍ଜନ କରିଛି । କୋଣାର୍କ ପୁଣି ପଦ୍ମକ୍ଷେତ୍ର ଓ ପୁରୀ ଶଙ୍ଖକ୍ଷେତ୍ର, ସୂର୍ଯ୍ୟଙ୍କ ପ୍ରିୟସ୍ଥଳୀ 'ପଦ୍ମ' କ୍ଷେତ୍ର ହେବା ବାସ୍ତବିକ ଯୁକ୍ତିସଙ୍ଗତ । ସୂର୍ଯ୍ୟ ସକଳ ଶକ୍ତିର ଆଧାର ହେତୁ ଏହି ପଞ୍ଚ ଉପାସନା ମଧ୍ୟରେ ସୌର ଉପାସନା ପ୍ରାଚୀନତମ ବୋଲି ପଣ୍ଡିତମାନେ କହନ୍ତି । ଏଣୁ ପୁରାଣରେ ସେ ଆଦିଦେବ ନାମରେ ପରିଚିତ । ସେହି ଆଦିଦେବ ସୂର୍ଯ୍ୟଙ୍କ ଜନ୍ମୋତ୍ସବ 'ମାଘସପ୍ତମୀ' ଭାରତରେ ଏକ ପବିତ୍ର ଦିବସ । ଏହା ବର୍ଷର ଅନ୍ୟତମ ପୁଣ୍ୟମାସ 'ମାଘ'ର ଶୁକ୍ଳ ସପ୍ତମୀ ତିଥିରେ ପାଳିତ ହୋଇ ଆସୁଅଛି । ଏ ଦିନ ଅରୁଣୋଦୟ ପୂର୍ବରୁ କୋଣାର୍କ ସନ୍ନିକଟ ପୁଣ୍ୟତୋୟା ଚନ୍ଦ୍ରଭାଗାରେ ସ୍ନାନ ଓ ସୂର୍ଯ୍ୟୋପାସନା କୋଟିଜନ୍ମର ପାପହାରକ । ସେହି ସୂର୍ଯ୍ୟଙ୍କ ସମ୍ବନ୍ଧୀୟ ଆଲୋଚନା ସହ ପୁରାଣ ପୃଷ୍ଠାରେ ଏ ପୁଣ୍ୟ ଦିବସରେ ବର୍ଣ୍ଣନା ତଥ୍ୟ ପ୍ରଦାନ ଏ କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ।

'ମାଘ ସପ୍ତମୀ' ଦିନ 'ଅର୍କକ୍ଷେତ୍ର' କୋଣାର୍କରେ ବିରାଟ ଜନ-ସମାଗମ ହୁଏ । ପ୍ରାତଃକାଳୀନ ସମୁଦ୍ରୋତ୍ଥିତ ବାଳ ସୂର୍ଯ୍ୟଙ୍କ ଦର୍ଶନ ଲାଗି ବହୁଦୂରାଗତ ବ୍ୟକ୍ତି ପୂର୍ବଦିବସରୁ ଏହି ପୀଠରେ ଏକତ୍ର ହୋଇ-ଥାଆନ୍ତି । ଏହି ଦିନର ପ୍ରତ୍ୟୁଷକାଳୀନ ସୂର୍ଯ୍ୟଙ୍କ ବାଳ କିରଣରେ ବୈଜ୍ଞାନିକଙ୍କ ମତାନୁଯାୟୀ ବହୁ ପ୍ରକାର ରୋଗ ନିବାରଣୀ ଶକ୍ତି ଥିବାରୁ ମାଘ ସପ୍ତମୀକୁ 'ଆରୋଗ୍ୟ ସପ୍ତମୀ' ମଧ୍ୟ କୁହାଯାଏ । ଏହା 'ଆଦିତ୍ୟ ଜୟନ୍ତୀ' ନାମରେ ମଧ୍ୟ ପରିଚିତ । ସେହି ଆଦିତ୍ୟଙ୍କ ସମ୍ବନ୍ଧରେ ଏଠାରେ ବିଭିନ୍ନ ପୁରାଣରେ ଉଲ୍ଲେଖଥିବା କେତୋଟି ବିଷୟର ଅବତାରଣା କରା-ଯାଉଅଛି ।

ସୂର୍ଯ୍ୟଙ୍କ ରଥର ବିସ୍ତାର ନବେ ହଜାର ଯୋଜନ ଓ ଏହାଙ୍କ ରଥର ଇଷାଦଣ୍ଡ (ଜୁଆ ଓ ରଥର ମଧ୍ୟଭାଗ) ଦୁଇଗୁଣ ଅଟେ । ପୂର୍ବାହ୍ଣ, ମଧ୍ୟାହ୍ନ ଓ ଅପରାହ୍ଣ ରଥର ତିନ ନାଭି । ପଞ୍ଚବତ୍ସରାତ୍ମକ ପାଞ୍ଚ ଅର ଏବଂ ଷଡ଼ଋତୁ ସ୍ୱରୂପ, ଛ'ଟି ନେମି ଅକ୍ଷ ସ୍ୱରୂପ, ସମ୍ୱତ୍ସରାତ୍ମକ ଚକ୍ରରେ ସମ୍ପୂର୍ଣ୍ଣ କାଳଚକ୍ର ରହିଛି । ସାତୋଟି ଛନ୍ଦ, ଯଥା—ଗାୟତ୍ରୀ, ବୃହତୀ, ଉଷ୍ଣିକ୍ ଜଗତୀ, ତ୍ରିଷ୍ଟୁପ୍, ଅନୁଷ୍ଟୁପ୍ ଓ ପଂକ୍ତି ସୂର୍ଯ୍ୟ ରଥର ସପ୍ତଅଶ୍ୱ । ଭଗବାନ ସୂର୍ଯ୍ୟଙ୍କ ରଥର ଅପର ଅଂଶ ପଇଁତାଳିଶ ସହସ୍ର ଯୋଜନ ଲମ୍ବ ଅଟେ । ଏହି ଦୁଇଟି 'ଧୁର'ର ପରିମାଣାନୁଯାୟୀ ଦୁଇଟି ଯୁଗାର୍ଦ୍ଧ ସୃଷ୍ଟି ହୋଇଅଛି ।

**ସୂର୍ଯ୍ୟ ଓ ଅଗ୍ନି**—ରାତ୍ରି ସମୟରେ ଅର୍ଥାତ୍ ସୂର୍ଯ୍ୟାସ୍ତ ପରେ ସୂର୍ଯ୍ୟଙ୍କ ତେଜ ଅଗ୍ନିରେ ପ୍ରବେଶ କରେ, ଏଣୁ ରାତ୍ରି ଭାଗରେ ଅଗ୍ନିଦେବ ପ୍ରବଳ ହୁଅନ୍ତି । ଠିକ୍ ଏହିପରି ଭାବରେ ଦିନବେଳେ ଅଗ୍ନିଙ୍କ ତେଜ ସୂର୍ଯ୍ୟ ମଧ୍ୟରେ ପ୍ରବେଶ କରେ । ଏଣୁ ଅଗ୍ନି ସଂଯୋଗ ହେତୁ ସୂର୍ଯ୍ୟ ଦିବା ଭାଗରେ ଅଧିକ ପ୍ରଖରତା ପ୍ରାପ୍ତ ହୁଅନ୍ତି । ଯଥା—

'ବହ୍ନେଃ ପ୍ରଭା ତଥା ଭାନୁ ର୍ଦିନେ ବ୍ୟାବିଶତି ଦ୍ୱିଜ
ଅତୀବ ବହ୍ନି—ସଂଯୋଗା-ଦତଃ ସୂର୍ଯ୍ୟଃ ପ୍ରକାଶତେ'

( ଶ୍ରୀବିଷ୍ଣୁପୁରାଣ )

ଏହିପରି ଭାବରେ ସୂର୍ଯ୍ୟ ଓ ଅଗ୍ନି ପରସ୍ପର ମିଶି ଉଷ୍ଣତାମୟ ତେଜ ଉଭୟ ଦିନ ରାତିରେ ପ୍ରକାଶ କରନ୍ତି ।

**ସନ୍ଧ୍ୟୋପାସନା ଓ ସୂର୍ଯ୍ୟ**—ବୈଦିକ ଶାସ୍ତ୍ରରେ ରାତିକୁ 'ଉଷା' ଓ ଦିନକୁ 'ବ୍ୟୁଷ୍ଟି' କୁହାଯାଏ । ଏହାର ମଧ୍ୟବର୍ତ୍ତୀ ଭାଗକୁ ସନ୍ଧ୍ୟା କହନ୍ତି । ଏହି ଦାରୁଣ ସନ୍ଧ୍ୟା ସମୟ ଉପସ୍ଥିତ ହେଲେ 'ମନ୍ଦେହା' ନାମକ ରାକ୍ଷସଗଣ ପ୍ରବଳ ହୁଅନ୍ତି ଓ ସୂର୍ଯ୍ୟଙ୍କୁ ଗ୍ରାସ କରିବାକୁ ଅଗ୍ରସର ହୁଅନ୍ତି । ଏହି ରାକ୍ଷସମାନଙ୍କୁ ପ୍ରଜାପତି ଅଭିଶାପ ଦେଇ କହିଛନ୍ତି ଯେ, ଏମାନଙ୍କର ଶରୀର ଅକ୍ଷୟ ରହି ମଧ୍ୟ ଏମାନେ ପ୍ରତିଦିନ ମରିବେ । ଏଣୁ ସନ୍ଧ୍ୟା ସମୟ ଆସିଗଲେ ସୂର୍ଯ୍ୟଙ୍କ ସହିତ ଏମାନଙ୍କର ଘୋର ଯୁଦ୍ଧ ହୁଏ । ଏହି

ସମସ୍ତରେ ବିଜୋତ୍ତମଗଣ ଓଁକାର ତଥା ଗାୟତ୍ରୀ ଅଭିମନ୍ତ୍ରିତ ଯେଉଁ ବ୍ରହ୍ମସ୍ୱରୂପ ଜଳ ଅର୍ପଣ କରନ୍ତି, ସେହି ବଜ୍ରସ୍ୱରୂପୀ ଜଳ ଦ୍ୱାରା ଦୁଷ୍ଟ ରାକ୍ଷସମାନେ ଦଗ୍ଧ ହୁଅନ୍ତି । ଅଗ୍ନିହୋତ୍ରରେ ଯେଉଁ 'ସୂର୍ଯ୍ୟଜ୍ୟୋତିଃ' ଇତ୍ୟାଦି ମନ୍ତ୍ର ପ୍ରଥମାହୁତି ରୂପେ ଦିଆଯାଏ, ଏହାଦ୍ୱାରା ସହସ୍ରାଂଶୁ ଦିନନାଥ ଦେଦୀପ୍ୟମାନ ହୁଅନ୍ତି । ଓଁକାର ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ରୂପ ତିନି ଧାମରେ ଭଗବାନ ବିଷ୍ଣୁ ଥାଆନ୍ତି ଓ ବେଦର ସମ୍ପୂର୍ଣ୍ଣ ଅଧିପତି ଏବଂ ଓଁ କାର ମନ୍ତ୍ରୋଚ୍ଚାରଣ ଦ୍ୱାରା ଏ ରାକ୍ଷସଗଣ ନଷ୍ଟ ହୋଇଯାଆନ୍ତି । ସୂର୍ଯ୍ୟ ବିଷ୍ଣୁ ଭଗବାନଙ୍କ ଅତି ଶ୍ରେଷ୍ଠ ଅଂଶ ଓ ବିକାର ରହିତ ଅନ୍ତର୍ଜ୍ୟୋତିଃ ସ୍ୱରୂପ ଅଟନ୍ତି । ଓଁ କାର ଏହି ସୂର୍ଯ୍ୟ ଭଗବାନଙ୍କର ବାଚକ ଓ ଏହାର ସାହାଯ୍ୟରେ ସେ ପ୍ରଦୀପ୍ତ ହୋଇଥିବା ଜ୍ୟୋତି ମନ୍ଦେହା ନାମକ ସମ୍ପୂର୍ଣ୍ଣ ପାପୀ ରାକ୍ଷସକୁ (ରାକ୍ଷସମାନଙ୍କୁ) ଦଗ୍ଧ କରି ପାରନ୍ତି । ଏଣୁ ସନ୍ଧ୍ୟୋପାସନା କରଣୀୟ ।

**ସୂର୍ଯ୍ୟ ହିଁ ବିଷ୍ଣୁ**—ସୂର୍ଯ୍ୟ ସପ୍ତଗଣଙ୍କ ମଧ୍ୟରୁ ଏକତମ ହେଲେହେଁ ଏହାଙ୍କର ପ୍ରଧାନ ବୈଶିଷ୍ଟ୍ୟ ରହିଛି । ଭଗବାନ ବିଷ୍ଣୁଙ୍କ ସର୍ବଶକ୍ତିମୟୀ ଋକ, ଯଜୁଃ, ସାମ ନାମକ ତ୍ରୟୀ ପରାଶକ୍ତି ନାମରେ ପରିଚିତ ଓ ଏମାନେ ମଧ୍ୟ ସୂର୍ଯ୍ୟଙ୍କୁ ତାପ ପ୍ରଦାନ କରନ୍ତି । ଉପାସନା ବେଳେ ସଂସାରର ସମସ୍ତ ପାପକୁ ନଷ୍ଟକରି ଦିଅନ୍ତି । ଶ୍ରୀ ପରାଶର କହୁଛନ୍ତି ଜଗତର ସ୍ଥିତି ଓ ପାଳନ ନିମିତ୍ତ ଋକ, ଯଜୁଃ ଓ ସାମ ରୂପୀ ବିଷ୍ଣୁ ସୂର୍ଯ୍ୟଙ୍କ ଭିତରେ ଅଛନ୍ତି । ପ୍ରତ୍ୟେକ ମାସରେ ଯେଉଁ ଯେଉଁ ସୂର୍ଯ୍ୟ (ଆଦିତ୍ୟ) ଥାଆନ୍ତି ସେମାନଙ୍କ ଭିତରେ ବେଦତ୍ରୟୀ ରୂପିଣୀ ବିଷ୍ଣୁଙ୍କ ପରାଶକ୍ତି ନିବାସ କରିଥାଆନ୍ତି । ପୂର୍ବାହ୍ଣରେ ଋକ୍, ମଧ୍ୟାହ୍ନରେ ଯଜୁଃ, ତଥା ସାୟଂକାଳରେ ବୃହଦ୍ରଥନ୍ତରାଦି ସାମବେଦ ସୂର୍ଯ୍ୟଙ୍କ ସ୍ତୁତି କରନ୍ତି । ଏହି ବେଦତ୍ରୟୀ (ଋକ-ଯଜୁଃ-ସାମ ସ୍ୱରୂପିଣୀ) ଭଗବାନ ବିଷ୍ଣୁଙ୍କର ମଧ୍ୟ ଅଙ୍ଗ ଅଟନ୍ତି । ଏହି ବିଷ୍ଣୁଶକ୍ତି ସର୍ବଦା ଆଦିତ୍ୟଙ୍କ ସହ ସଂଲଗ୍ନ, ଏଣୁ ସୂର୍ଯ୍ୟଦେବ ନିଜର ପ୍ରଖର ରଶ୍ମି ଦ୍ୱାରା ପ୍ରଜ୍ଜ୍ୱଳିତ ହୋଇ ସଂସାରର ସମ୍ପୂର୍ଣ୍ଣ ଅନ୍ଧକାର ନଷ୍ଟକରି ଦିଅନ୍ତି ।

ଏହି ସୂର୍ଯ୍ୟଦେବଙ୍କୁ ମୁନିଗଣ ସ୍ତୁତି କରନ୍ତି, ଗନ୍ଧର୍ବଗଣ ଏହାଙ୍କ ସମ୍ମୁଖରେ ଯଶୋଗାନ କରନ୍ତି, ଅପ୍ସରାମାନେ ନୃତ୍ୟ କରନ୍ତି, ରାକ୍ଷସଗଣ

ରଥର ପଛପଟ ଧରି ଚାଲି ଚାଲି ଯାଆନ୍ତି । ସର୍ପଗଣ ରଥର ସାଜସଜ୍ଜା କରନ୍ତି । ଯକ୍ଷଗଣ ଘୋଡ଼ାର ବାଗ୍‌ଡୋର ସଜାଡ଼ନ୍ତି ଓ ବାଲଖିଲ୍ୟମାନେ ରଥର ଚାରିପାଖେ ଘେରି ରହିଥାନ୍ତି । ବିଷ୍ଣୁ ପୁରାଣରେ ଲେଖାଅଛି—

"ସ୍ତୁବନ୍ତି ଚୈନଂ ମୁନୟୋ ଗନ୍ଧର୍ବୈର୍ଗୀୟତେ ପୁରଃ
ନୃତ୍ୟନ୍ତ୍ୟୋଽପ୍ସରସୋ ଯାନ୍ତି ତସ୍ୟ ଚାନୁ ନିଶାଚରାଃ
ବହନ୍ତି ପନ୍ନଗା ଯକ୍ଷୈଃ କ୍ରିୟତେଽଭୀଷୁ ସଂଗ୍ରହଃ
ବାଲଖିଲ୍ୟାସ୍ତଥୈବୈନଂ ପରିବାର୍ଯ୍ୟ ସମାସତେ"

ନିତ୍ୟ ଶକ୍ତିରୂପ ଭଗବାନ୍-ସୂର୍ଯ୍ୟ ସ୍ୱରୂପୀ ବିଷ୍ଣୁଙ୍କର ଉଦୟ ନାହିଁ କି ଅସ୍ତ ନାହିଁ, ଅର୍ଥାତ୍ ଏ ସ୍ଥାୟୀ ରୂପରେ ସଦା ବିଦ୍ୟମାନ । ସ୍ତମ୍ଭସଂଲଗ୍ନ ଦର୍ପଣ ନିକଟକୁ ଯେ ଯାଏ, ତାହାର ପ୍ରତିବିମ୍ବ ସେଠାରେ ପ୍ରତିବିମ୍ବିତ ହେଲାପରି ସୂର୍ଯ୍ୟଶକ୍ତି ଅଚଳ ଓ ପ୍ରତ୍ୟେକ ମାସରେ ପୃଥକ୍ ପୃଥକ୍ ସୂର୍ଯ୍ୟ ( ପରିବର୍ତ୍ତିତ ହୋଇ ) ଏହାଙ୍କ ନିକଟକୁ ଯାଇ ନିଜ ନିଜର କର୍ତ୍ତବ୍ୟ କରିଗଲେ ମଧ୍ୟ ଏହି ମୂଳ ସୂର୍ଯ୍ୟ ହିଁ ଅଧିଷ୍ଠିତ ହେବ ।

ଦିନ ଓ ରାତ୍ରିର କାରଣ ସ୍ୱରୂପ ଭଗବାନ୍ ସୂର୍ଯ୍ୟ ପିତୃଗଣ, ଦେବଗଣ ଓ ମନୁଷ୍ୟାଦିଙ୍କୁ ତୃପ୍ତ କରନ୍ତି । ସୂର୍ଯ୍ୟ 'ସୁଷୁମ୍ନା' କିରଣ ଦ୍ୱାରା ଶୁକ୍ଳପକ୍ଷରେ ଚନ୍ଦ୍ରମାକୁ ପୋଷଣ କରନ୍ତି ଓ କୃଷ୍ଣ ପକ୍ଷରେ ଏହି ଅମୃତମୟ ଚନ୍ଦ୍ରମାଙ୍କ କିରଣର ଏକ ଏକ କଳା ଦେବଗଣ ପାନ କରନ୍ତି । କୃଷ୍ଣପକ୍ଷ କ୍ଷୟପରେ ( ଚତୁର୍ଦ୍ଦଶୀ ପରେ ) ଅବଶିଷ୍ଟ ଦୁଇକଳା ପିତୃଗଣ ପାନ କରନ୍ତି । ଏହି ପ୍ରକାରେ ସୂର୍ଯ୍ୟଙ୍କ ଦ୍ୱାରା ପିତୃଗଣଙ୍କ ତର୍ପଣ ହୁଏ । ଏହି ରୀତିରେ ସୂର୍ଯ୍ୟ ଦେବତାଙ୍କୁ ପାକ୍ଷିକ ପିତୃଗଣଙ୍କୁ ମାସିକ ତଥା ମନୁଷ୍ୟଙ୍କୁ ( ନିଜ କିରଣରେ ପୃଥିବୀରୁ ଜଳନେଇ ପୁଣି ଅନ୍ନ ବୃଷ୍ଟିଦ୍ୱାରା ) ନିତ୍ୟପ୍ରତି ତୃପ୍ତ କରନ୍ତି । ବର୍ତ୍ତମାନ ପୂର୍ବସୂଚିତ ଦ୍ୱାଦଶ ସୂର୍ଯ୍ୟଙ୍କର ନାମସହ ପ୍ରତ୍ୟେକ ମାସରେ ତାଙ୍କ 'ରଥ' ଗଠନରେ ଆସୁଥିବା ଭିନ୍ନ ଭିନ୍ନ ସର୍ପ, ଗନ୍ଧର୍ବ, ଅପ୍‌ସରା, ଆଦିତ୍ୟ, ଯକ୍ଷ, ଅସୁର ଓ ଆଦିତ୍ୟଙ୍କ ସମ୍ବନ୍ଧରେ ବିଷ୍ଣୁପୁରାଣ ଅବଲମ୍ବନରେ ଆଲୋକପାତ କରାଯାଉଅଛି ।

**ଦ୍ୱାଦଶ ଆଦିତ୍ୟ**—ମଧୁମାସ ଚୈତ୍ରରେ ସୂର୍ଯ୍ୟଙ୍କ ରଥରେ ସର୍ବଦା 'ଧାତା' ନାମକ ଆଦିତ୍ୟ, କୃତସ୍ଥଳା ଅପ୍ସରା, ପୁଲସ୍ତ୍ୟଋଷି, ବାସୁକୀ ସର୍ପ, ରଥଭୃତଯକ୍ଷ, ହେତି ରାକ୍ଷସ ଓ ତୁମ୍ବୁରୁ ଗନ୍ଧର୍ବ—ଏ ସାତଜଣ ମାସାଧିକାରୀ ରହନ୍ତି ।

'ଅର୍ଯ୍ୟମା, ଆଦିତ୍ୟ, ପୁଲହ ଋଷି, ରଥୌଜାଯକ୍ଷ, ପୁଞ୍ଜିକସ୍ଥଳା ଅପସରା, ପ୍ରହେତି ରାକ୍ଷସ, କଚ୍ଛନୀର ସର୍ପ ଓ ନାରଦ ନାମକ ଗନ୍ଧର୍ବ ବୈଶାଖ ମାସରେ ସୂର୍ଯ୍ୟଙ୍କ ରଥରେ ଥାଆନ୍ତି ।

ଜ୍ୟେଷ୍ଠ ମାସରେ 'ମିତ୍ର' ଆଦିତ୍ୟ, ଅତ୍ରିଋଷି, ତକ୍ଷକସର୍ପ, ପୌରୁଷେୟ ରାକ୍ଷସ, ମେନକା ଅପ୍ସରା, ହା ହା ଗନ୍ଧର୍ବ ଓ ରଥସ୍ୱନ ନାମକ ଯକ୍ଷ ରଥରେ ବାସ କରିଥାଆନ୍ତି ।

ଆଷାଢ଼ ମାସରେ 'ବରୁଣ' ନାମକ ଆଦିତ୍ୟ, ବଶିଷ୍ଠଋଷି, ନାଗସର୍ପ, ସହଜନ୍ୟା ଅପ୍ସରା, ହୂହୂ ଗନ୍ଧର୍ବ, ରଥ ରାକ୍ଷସ ଏବଂ ରଥଚିତ୍ର ନାମକ ଯକ୍ଷ ରଥ ପାଖେ ପାଖେ ଥାଆନ୍ତି ।

ଶ୍ରାବଣ ମାସରେ 'ଇନ୍ଦ୍ର' ନାମକ ଆଦିତ୍ୟ, ବିଶ୍ୱାବସୁ ଗନ୍ଧର୍ବ, ସ୍ରୋତ ଯକ୍ଷ, ଏଳାପତ୍ର ସର୍ପ, ଅଙ୍ଗିରା ଋଷି, ପ୍ରମ୍ଲୋଚା ଅପ୍ସରା, ସର୍ପ ନାମକ ରାକ୍ଷସ ସୂର୍ଯ୍ୟରଥ ସହ ଥାଆନ୍ତି ।

ଭାଦ୍ରପଦରେ ବିବସ୍ୱାନ ନାମକ ଆଦିତ୍ୟ, ଉଗ୍ରସେନ ଗନ୍ଧର୍ବ, ଭୃଗୁଋଷି, ଆପୂରଣ ଯକ୍ଷ, ଅନୁମ୍ଳୋଚା ଅପ୍ସରା, ଶଙ୍ଖପାଳ ସର୍ପ ଏବଂ ବ୍ୟାଘ୍ର ନାମକ ରାକ୍ଷସ ଥାଆନ୍ତି ।

ଆଶ୍ୱିନ ମାସରେ ପୂଷା ନାମକ ଆଦିତ୍ୟ, ବସୁରୁଚି ଗନ୍ଧର୍ବ, ବାତ ରାକ୍ଷସ, ଗୌତମ ଋଷି, ଧନଞ୍ଜୟ ସର୍ପ, ସୁଷେଣ ଗନ୍ଧର୍ବ, ଘୃତାଚୀ ନାମକ ଅପ୍ସରା ରଥସହ ଗମନ କରନ୍ତି ।

କାର୍ତ୍ତିକ ମାସରେ ବିଶ୍ୱାବସୁ ଗନ୍ଧର୍ବ, ଭରଦ୍ୱାଜ ଋଷି, ପର୍ଜନ୍ୟ ଆଦିତ୍ୟ, ଐରାବତ ସର୍ପ, ବିଶ୍ୱାଚୀ ଅପ୍ସରା, ସେନଜିତ୍ ଯକ୍ଷ ତଥା ଆପ ନାମକ ରାକ୍ଷସ ରଥରେ ଥାଆନ୍ତି ।

ମାର୍ଗଶୀର୍ଷରେ 'ଅଂଶ' ନାମକ ଆଦିତ୍ୟ, କଶ୍ୟପ ଋଷି, ତାର୍କ୍ଷ୍ୟ ଯକ୍ଷ, ମହାପଦ୍ମ 'ସର୍ପ' ଉର୍ବଶୀ ଅପ୍ସରା, ଚିତ୍ରସେନ ଗନ୍ଧର୍ବ ଏବଂ ବିଦ୍ୟୁତ୍ ନାମକ ରାକ୍ଷସ ରଥାରୂଢ଼ୀ ।

ବିଶ୍ୱାମିତ୍ର ରଷି, ଭଗ ଆଦିତ୍ୟ, ଊର୍ଣ୍ଣାୟୁ ଗନ୍ଧର୍ବ, ସ୍ଫୂର୍ଜରାକ୍ଷସ, କର୍କୋଟକ ସର୍ପ, ଅରିଷ୍ଟନେମି ଯକ୍ଷ ତଥା ପୂର୍ବଚିତ୍ତି ଅପ୍‌ସରା ଏ ଅଧିକାରୀଗଣ ପୌଷମାସସାରା ସୂର୍ଯ୍ୟମଣ୍ଡଳରେ ଅବସ୍ଥାନ କରନ୍ତି ।

ତ୍ୱଷ୍ଟା ନାମକ ଆଦିତ୍ୟ, ଜମଦଗ୍ନି ଋଷି, କମ୍ବଳ ସର୍ପ, ତିଲୋତ୍ତମା ଅପ୍‌ସରା, ବ୍ରହ୍ମୋପେତ ରାକ୍ଷସ, ଋତଜିତ ଯକ୍ଷ ଏବଂ ଧୃତରାଷ୍ଟ୍ର ଗନ୍ଧର୍ବ ଏ ସାତଜଣ ମାଘମାସ ସାରା ଭାସ୍କର ମଣ୍ଡଳର ଦାୟିତ୍ୱରେ ଥାଆନ୍ତି ।

ଫାଲ୍‌ଗୁନ ମାସରେ 'ବିଷ୍ଣୁ' ନାମକ ଆଦିତ୍ୟ, ଅଶ୍ୱତର ସର୍ପ, ରମ୍ଭା ଅପ୍‌ସରା, ସୂର୍ଯ୍ୟବର୍ଚ୍ଚ ଗନ୍ଧର୍ବ, ସତ୍ୟଜିତ୍ ଯକ୍ଷ, ବିଶ୍ୱାମିତ୍ର ଋଷି ଏବଂ ଯଜ୍ଞୋପେତ ନାମକ ରାକ୍ଷସ ରଥ ସଙ୍ଗେ ସଙ୍ଗେ ଚାଲିଥାନ୍ତି ।

ଏହିପରି ଭାବରେ ସୂର୍ଯ୍ୟମଣ୍ଡଳରେ ଏହି ସାତ ସାତ ଜଣ ନିଜ ନିଜ ସମୟାନୁସାରେ ଉପସ୍ଥିତ ହୋଇ ଶୀତ, ଗ୍ରୀଷ୍ମ ଓ ବର୍ଷାଦିର କାରଣ ହୋଇଥାନ୍ତି ।

ବ୍ରହ୍ମବିତ୍‌ମାନଙ୍କ ମତରେ ସୂର୍ଯ୍ୟଙ୍କୁ ଜଗଦାତ୍ମା, ବିଶ୍ୱପ୍ରାଣ, ସର୍ବଜ୍ଞାନସମ୍ପନ୍ନ ଓ ସମସ୍ତଙ୍କ ନେତ୍ର ସ୍ୱରୂପ । ବାର ମାସରେ ଭିନ୍ନ ଭିନ୍ନ ରୂପରେ ପ୍ରକାଶମାନ ସେହି ଦ୍ୱାଦଶ ମୂର୍ତ୍ତି ଇନ୍ଦ୍ର, ଧାତା ( ପ୍ରଜାପତି ପର୍ଜନ୍ୟ ( ମେଘ ) ପୂଷା ( ଅନ୍ନାଦିରେ ଅବସ୍ଥିତ ) ତ୍ୱଷ୍ଟା ( ବନସ୍ପତି ମଧ୍ୟରେ ସ୍ଥିତ ) ଭଗ ( ବସୁଧାରେ ଅବସ୍ଥିତ ) ବିବସ୍ୱାନ୍ ( ଅଗ୍ନି ) ବିଷ୍ଣୁ, ଅଂଶୁମାନ୍ ( ଶ୍ୱାସ, ପ୍ରଶ୍ୱାସ କ୍ରିୟା ସମ୍ପାଦନ କାରୀ ) ବରୁଣ ( ଜଳର ଅଧିଷ୍ଠାତ୍ରୀ ) ଏବଂ ମିତ୍ର ( ବିଶ୍ୱ ପ୍ରକାଶକ ) ଭଗବାନ ମହାସୂର୍ଯ୍ୟଙ୍କ ଏକ ଏକ ରଶ୍ମି ବୋଲି ପଣ୍ଡିତମାନେ କହନ୍ତି ।

**ମାଘସ୍ନାନ**—ମାଘ ସପ୍ତମୀ ଯେହି ସର୍ବଶକ୍ତିମାନ୍ ବିଷ୍ଣୁସ୍ୱରୂପୀ ଆଦିଦେବ ସୂର୍ଯ୍ୟ ଭଗବାନଙ୍କ ଜନ୍ମୋତ୍ସବ । ଏକେତ ମାଘସ୍ନାନ କୋଟି କଳୁଷହାରକ, ପୁଣି 'ଚନ୍ଦ୍ରଭାଗା'ରେ ପ୍ରାତଃସ୍ନାନ ଓ ଉଜ୍ଜ୍ୱଳ ସୂର୍ଯ୍ୟ ଦର୍ଶନ ଓ ଉପାସନା କୋଟିଏ ସୁକୃତର ଫଳ । ସ୍କନ୍ଦ ପୁରାଣରେ ଲେଖାଅଛି—

'ସୂର୍ଯ୍ୟ ଗ୍ରହଣ ତୁଲ୍ୟାହି ଶୁକ୍ଳା ମାଘସ୍ୟ ସପ୍ତମୀ ।
ଅରୁଣୋଦୟ ବେଳାୟାଂ ସ୍ନାନଂ ତତ୍ର ମହାଫଳମ୍ ।"

ମତ୍ସ୍ୟପୁରାଣରେ ଅଛି—

"ମାଘ ମାସସ୍ୟ ସପ୍ତମ୍ୟା ମୁଦୟସ୍ଥେତ୍ୟ ବସନ୍ତରେ ।
ବଧି ବତ୍ର୍ତିଳସ୍ନାନଂ ମହାପାତକ ନାଶନମ୍ ।"

ଏ ଦିନ ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାନ କଲେ ଆୟୁ, ଆରୋଗ୍ୟ ଓ ସମ୍ପଦ ଲାଭ ହୁଏ ବୋଲି ଅନ୍ୟତ୍ର ଉଲ୍ଲେଖ ଅଛି ।

ମାଘ—ସପ୍ତମୀ ସମ୍ବନ୍ଧୀୟ ଭୂରିଭୂରି ବର୍ଣ୍ଣନା ଭିନ୍ନଭିନ୍ନ ପ୍ରାଚୀନ ଗ୍ରନ୍ଥାଦିରେ ଉଲ୍ଲେଖ ଅଛି ।

'ଯଦ୍ଦ୍ଜନ୍ମକୃତଂ ପାପଂ ମୟାସପ୍ତସୁ ଜନ୍ମସୁ
ତନ୍ମେରୋଗଂ ଚ ଶୋକଂ ଚ-ମାକରୀ ହନ୍ତୁ ସପ୍ତମୀ ।'

ଏଠାରେ 'ମାକରୀସପ୍ତମୀ' ମକର ସମ୍ବନ୍ଧିନୀ ମାଘ ସପ୍ତମୀକୁ ଲକ୍ଷ୍ୟ ବୋଲି ସ୍ନାନ ମନ୍ତ୍ରରେ ଉଲ୍ଲେଖ ଅଛି । ପୁନଶ୍ଚ ଅର୍ଘ୍ୟମନ୍ତ୍ରରେ ସପ୍ତମୀକୁ 'ଜନନୀ' ଆଖ୍ୟା ଦିଆଯାଇ କୁହାଯାଏ—

'ଜନନି ! ସର୍ବଭୂତାନାଂ ସପ୍ତମି ! ସପ୍ତ ସପ୍ତିକେ ।
ସପ୍ତ ବ୍ୟାହୃତିକେ ଦେବି ! ନମସ୍ତେ ରବିମଣ୍ଡଳେ ।"

ବିଶେଷତଃ ଅରୁଣୋଦୟ କାଳକୁ ରାତ୍ରିର ୪ ଘଟିକା ରୂପେ ନିର୍ଣ୍ଣୀତ କରାଯାଇଛି ।

ମାଘ ଶୁକ୍ଳ ସପ୍ତମୀରେ ସଂଯତେନ୍ଦ୍ରିୟ ହୋଇ ଉପବାସ ପୂର୍ବକ ରାତ୍ରି ଶେଷରେ ଶୁଚିମନ୍ତ ହୋଇ ସ୍ନାନ କରି ନିର୍ମଳ ବସ୍ତ୍ର ପରିଧାନ ପୂର୍ବକ ଦିବାକରଙ୍କୁ ଅର୍ଚ୍ଚନ କରିବ ଓ ଦେବତା, ଋଷି ଓ ପିତୃଲୋକଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବ । ଯେଉଁ ଲୋକ ଗଙ୍ଗା ଜଳରେ ସ୍ନାନକରି ସୂର୍ଯ୍ୟପୂଜା କରି କୁଶୋଦକ ମସ୍ତକରେ ଗ୍ରହଣ କରେ ସେ ସର୍ବପାପ ବିନିର୍ମୁକ୍ତ ହୋଇ ସ୍ୱର୍ଗପ୍ରାପ୍ତ ହୁଏ ।

କେତେକ ପ୍ରାଚୀନ ଶାସ୍ତ୍ରରେ ଏହି 'ମାଘସପ୍ତମୀ' 'ରଥସପ୍ତମୀ' ରୂପେ ପରିଚିତ । ସମ୍ଭବତଃ ସୂର୍ଯ୍ୟ ଓ ତାଙ୍କର ପ୍ରିୟ ରଥ କୁ କେନ୍ଦ୍ର କରି ଏ ବିଶ୍ୱାସଟି ଗଢ଼ି ଉଠିଛି । ଏହି 'ମାକରୀ' (ମକର ସମ୍ବନ୍ଧିନୀ) ସପ୍ତମୀ ଯେ ଏହି ଜନ୍ମର କୃତପାପ, ଜନ୍ମାନ୍ତର ପାପ, କାୟ, ମନୋ, ବାକ୍ୟ, ଜ୍ଞାତ ଓ ଅଜ୍ଞାତ ଏହି ସପ୍ତବିଧ ପାପକ୍ଷୟ କରେ ବୋଲି ମାଘ ସପ୍ତମୀର ସଂକଳ୍ପ ମନ୍ତ୍ରରେ ଉଲ୍ଲେଖ ଅଛି ।

'ମାଘ ମାସ ଓ ଅଗ୍ନ୍ୟୁତ୍ସବ' ପ୍ରବନ୍ଧରେ ମାଘ ମାସର ସ୍ନାନ ଫଳ ସମ୍ବନ୍ଧରେ କଞ୍ଚିତ୍ ଆଲୋକପାତ କରାଯାଇଅଛି । ତଥାପି 'ପଦ୍ମପୁରାଣ' ଲିଖିତ ମାସ ମାହାତ୍ମ୍ୟ ପ୍ରଖ୍ୟାପକ କେତୋଟି ସଂସ୍କୃତ ଶ୍ଳୋକ ପାଠକ-ମାନଙ୍କ ସମ୍ମୁଖରେ ଉପସ୍ଥାପନ କରୁଛି —

"କମ୍ପନ୍ତେ ସର୍ବପାପାନି ମାଘ ସ୍ନାନ ସମାଗମେ
ଯଶ କାଳୋଽସ୍ମ ମସ୍ନାକଂ ଯଦ୍ଧ ସ୍ନାସ୍ୟନ୍ତି ବାରୁଣି
ଏବଂ ହୋଶନ୍ତି ପାପାନି ତୃଷ୍ଟ୍ୱା ସ୍ନାନୋଦ୍ୟତଂ ନରମ
ପାବକାଇବ ଦୀପ୍ୟନ୍ତେ ମାଘ ସ୍ନାନେ ନରୋତ୍ତମାଃ
ମାଘସ୍ନାନଂ ଦହେତ୍ ପାପଂ ପାବକଃ ସମଧୋ ଯଥା
ପ୍ରାମାଦଙ୍କ ଚ ଯତ୍ପାପଂ ଜ୍ଞାନାଜ୍ଞାନ କୃତଂ ଯତ୍
ସ୍ନାନ ମାତ୍ରେଣ ନଶ୍ୟନ୍ତି ମକରସ୍ଥେ ଦିବାକରେ
ନିଷ୍ପାପା ସ୍ତ୍ରିଦିବଂ ଯାନ୍ତି ପାପିନୋ ଯାନ୍ତି ଶୁଦ୍ଧତାମ"
(ପଦ୍ମପୁରାଣ)

ଅର୍ଥାତ୍ ମାଘ ସ୍ନାନ ସମସ୍ତ ପ୍ରବେଶ କରନ୍ତେ ପାପମାନଙ୍କ ହୃଦୟ କମ୍ପିଉଠେ ଓ ଆମମାନଙ୍କର ବିନାଶକାଳ ଆସିଲା ବୋଲି ଭାବନ୍ତି ଓ ସ୍ନାନାର୍ଥୀଗଣ ସ୍ନାନ ପରେ ଅଗ୍ନି ସମାନ ଦୀପ୍ତିମନ୍ତ ହେବେ ବୋଲି ସେମାନଙ୍କର ଭୟ ଉପୁଜେ । ଅଗ୍ନି କାଷ୍ଠକୁ ଦହନ କଲାପରି ମାଘ ସ୍ନାନ ପାପସବୁକୁ ଦଗ୍ଧ କରେ । ପାପିଷ୍ଠମାନେ ନିଷ୍ପାପ ହୋଇ ଶୁଦ୍ଧତାପ୍ରାପ୍ତି ପୂର୍ବକ ସ୍ୱର୍ଗପଥର ଯାତ୍ରୀ ହୁଅନ୍ତି ।

ଲିଙ୍ଗରାଜ କ୍ଷେତ୍ର ଏକାମ୍ର ପୀଠରେ ମାଘ ସପ୍ତମୀରେ ତ୍ରିଭୁବନେଶ୍ୱର ଲିଙ୍ଗରାଜଙ୍କୁ ଭାସ୍କରେଶ୍ୱରଙ୍କ ପର୍ଯ୍ୟନ୍ତ ନିଆଯାଏ । ଏହି ଅବସ୍ଥାରେ ଥିବା ଲିଙ୍ଗରାଜଙ୍କୁ ଦେଖିଲେ କପରି ପୁଣ୍ୟ ଅର୍ଜିତ ହୁଏ ତାହାର ଏକ ସ୍ପଷ୍ଟ ଚିତ୍ର 'ସ୍ୱର୍ଣ୍ଣାଦ୍ରି ମହୋଦୟ'ରେ ଦେଖିବାକୁ ମିଳେ ।

'ଯଃ ପଶ୍ୟେତ୍ ମାଘ-ସପ୍ତମ୍ୟାଂ ଭାସ୍କରେଶ୍ୱର ସନ୍ନିଧୌ
ସପ୍ତମ୍ୟାଂ ଲିଙ୍ଗରାଜସ୍ୟ ସମ୍ମୁଖେ ତୁ ନ ସଂଶୟଃ'

ସେହି ପବିତ୍ର ମାଘ ସପ୍ତମୀ ଏହିପରି ପ୍ରତିବର୍ଷ ଆସୁଥାଉ ଓ ବିଶ୍ୱର ଜନଜୀବନର ପୋଷକ ଆଧାର ଓ ଆଦିମୂଳ ଭଗବାନ ସୂର୍ଯ୍ୟଙ୍କ କମନୀୟ ବାଳଶୋଭା ଦର୍ଶନ ପୂର୍ବକ ତାଙ୍କର ପୂଜାର୍ଚ୍ଚନା କରି ଏହାର 'ଆରୋଗ୍ୟ ସପ୍ତମୀ' ନାମ ଜନତା ସାର୍ଥକ କରନ୍ତୁ ।



# ମାଘମାସ ଓ ଅଗ୍ନି ଉତ୍ସବ

**ବ**ର୍ଷକ ବାରମାସ ମଧ୍ୟରୁ ଆଷାଢ଼, କାର୍ତ୍ତିକ, ମାଘ ଓ ବୈଶାଖ (ଆ କା ମା ବୈ) ଏହିଚାରି ମାସ ପୁଣ୍ୟମାସ ନାମରେ ପରିଚିତ । ଶୀତପ୍ରଧାନ ମାଘ ମାସକୁ କେନ୍ଦ୍ରକରି ବହୁ ଢଗ ପ୍ରଚଳିତ ରହିଛି । ମାଘ, ଶୀତ ହୁଏ ବାଘ; ମାଘ, ଶୀତର ବଡ଼ ରାଗ; ମାଘେ ଶୀତ, ମେଘେ ଶୀତ; ଯହିଁ ବାତ ତହିଁ ଶୀତ—ଇତ୍ୟାଦି ବହୁ ଢଗଢମାଳି, ପ୍ରବଚନ ଓ କିମ୍ବଦନ୍ତୀ ମଧ୍ୟରେ ମାଘ ଏକ ଦୁଃସହ ମାସ ରୂପେ ଗଣ୍ୟହେଲେ ମଧ୍ୟ ଧର୍ମମାସ ତଥା ବହୁ ସ୍ମୃତିଧାରିକ ଦୃଷ୍ଟିରୁ ଏହାର ସ୍ଥାନ ବିଭିନ୍ନ ପୁରାଣପୃଷ୍ଠାରେ ସୁରକ୍ଷିତ ।

ମାଘମାସ ମଘାନକ୍ଷତ୍ରଯୁକ୍ତ ପୌର୍ଣ୍ଣମାସୀ ବିଶିଷ୍ଟ ଚାନ୍ଦ୍ରମାସ । ଧନୁମାସ ପରେ ମକର ସଂକ୍ରାନ୍ତିଠାରୁ କିମ୍ବା ପୌଷପୂର୍ଣ୍ଣିମାଠାରୁ ମାଘ ପୂର୍ଣ୍ଣିମା ପର୍ଯ୍ୟନ୍ତ ସୂର୍ଯ୍ୟୋଦୟ ପୂର୍ବରୁ ପ୍ରାତଃସ୍ନାନ, ବ୍ରତବିଧି ଆଚରଣ ଏ ମାସର ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ । ଆଳସ୍ୟ ବର୍ଜନ ପୂର୍ବକ ବିଷ୍ଣୁଙ୍କ ନାମ ସ୍ମରଣ ଓ ଜଳପ୍ରବେଶ ପୂର୍ବରୁ 'ଓଁ ତତ୍ ସତ୍' ଉଚ୍ଚାରଣ, କୁଶ, ଫୁଲ, ତିଳ ଓ ଜଳରେ ମାଘମାସ ନାମରେ ସଙ୍କଳ୍ପ ବିଧାନ ଓ ତତ୍ପରେ ଜଳମଜ୍ଜନ ଶାସ୍ତ୍ରସମ୍ମତ । ପୁରାଣରେ ଅଛି, ସ୍ୱାଭୀଷ୍ଟସିଦ୍ଧି, ଯଥା—ଦାରିଦ୍ର୍ୟ ନାଶନ ଓ ବିଷ୍ଣୁତୋଷଣ ନିମନ୍ତେ ମକରସ୍ନାନ ବେଳେ ବିଷ୍ଣୁଙ୍କର ଗୋବିନ୍ଦ, ଅଚ୍ୟୁତ ଓ ମାଧବ ଏହି ନାମ ସବୁ ସ୍ମରଣ କରିବାକୁ ହୁଏ ।

ଓଁ ଦୁଃଖ ଦାରିଦ୍ର୍ୟ ନାଶାୟ ଶ୍ରୀ ବିଷ୍ଣୋ ତୋଷଣାୟ ଚ * *
ମକରସ୍ଥ ରବୌ ମାଘେ ଗୋବିନ୍ଦୋଽଚ୍ୟୁତ ମାଧବଃ ।

( ପଦ୍ମପୁରାଣ )

ମାଘ ମାସରେ ଜଳ ପ୍ରବେଶ କାଳରେ 'ମାଧବ' ନାମ ଉଚ୍ଚାରଣ ଓଡ଼ିଆ 'ମାଘ ମାହାତ୍ମ୍ୟ'ରେ ମଧ୍ୟ ଦେଖିବାକୁ ମିଳେ ।

"ଶଙ୍କର ନନ୍ଦୀକର୍ମ ସାର ଜଳେ ପଶି ମନ୍ତ୍ର ଉଚ୍ଚାର
ସାଧବ ମାଧବ ବୋଲଣ ଶୀତକୁ ନ ଡ଼ର ଯାଇଣ"
( ମା ମା—ପୃ-୪ )

ସ୍ୱର୍ଗତ କୃଷ୍ଣଦାସଙ୍କ ରଚିତ ଓଡ଼ିଆ ମାଘ ମାହାତ୍ମ୍ୟରେ ମାଘ-ସ୍ନାନର ଫଳସ୍ୱରୂପ କିଏ କିପରି ଧର୍ମ ଅର୍ଜନ କରିଥିଲେ, ତାହାର ଏକ ବିସ୍ତୃତ ବିବରଣ ପ୍ରତି ଅଧ୍ୟାୟରେ ଦିଆଯାଇଛି । ଏହାର ଶେଷ ଅଧ୍ୟାୟରୁ ଜଣାଯାଏ ଯେ, ଶିବ ମାଘସ୍ନାନ କରି ତ୍ରିପୁରାସୁରକୁ ବଧ କରିଥିଲେ ଓ ପାର୍ବତୀଙ୍କୁ ଲାଭ କରିଥିଲେ । ବେଦପତି ପ୍ରୟାଗ କ୍ଷେତ୍ରରେ ମକରସ୍ନାନ କରି ଜଗତ୍‌କର୍ତ୍ତା ପଦବୀ ଲାଭ କରିଛନ୍ତି; ସ୍ୱୟଂ ବିଷ୍ଣୁ ଏହି ସ୍ନାନ ଫଳସ୍ୱରୂପ କମଳାଙ୍କୁ ପ୍ରାପ୍ତ ହୋଇଛନ୍ତି ।

ଏହାଛଡ଼ା ବ୍ରହ୍ମଶାପଗ୍ରସ୍ତ ବହୁ ଦେବଦେବୀ ଏହି ମାଘସ୍ନାନ କରି ସ୍ୱର୍ଗଲୋକବାସୀ ହୋଇଛନ୍ତି । ସଂସାରର ସମସ୍ତ ବ୍ରତ, ଉପାସନା, ଗଙ୍ଗାସ୍ନାନ, ତୀର୍ଥଭ୍ରମଣ, ଦାନ, ଦକ୍ଷିଣା, ତପ, ଯଜ୍ଞ ଗୋଟିଏ ପାର୍ଶ୍ୱରେ ରହିଲେ ମାଘସ୍ନାନ ଅପରପାର୍ଶ୍ୱରେ ରହି ଗୁରୁ ହୋଇଛି । ପଦ୍ମପୁରାଣରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖାଯାଏ । କେଶବ ମାଘସ୍ନାୟୀଙ୍କ ଦ୍ୱାରା ଯେତେ ପ୍ରୀତ, ବ୍ରତ ଓ ତପରେ ସେତେ ନୁହଁନ୍ତି ।

"ବ୍ରତମନୋ ସ୍ତପୋଭିଷ୍ଟ
ନ ତଥା ପ୍ରୀୟତେ ହରିଃ
ମାଘ ମଜ୍ଜନ ମାତ୍ରେଣ ଯଥା"
( ପଦ୍ମପୁରାଣ-ଉତ୍ତର ଖଣ୍ଡ-୪ର୍ଥ ଅଧ୍ୟାୟ )

କବିସମ୍ରାଟ୍ ଉପେନ୍ଦ୍ରଭଞ୍ଜ ତାଙ୍କର ଗୋଟିଏ ଲୋକପ୍ରିୟ ଛାନ୍ଦରେ—'ରସିକ ହରିରେ କରେ, ଦୀପଦାନ କାର୍ତ୍ତିକରେ, ପ୍ରୟାଗେ ସ୍ନାନ ମକରେ ଯେହୁ ନ କରେ' ଲେଖି ଉଭୟ କାର୍ତ୍ତିକ ଓ ମକର ମାସ ବା ମାଘସ୍ନାନର ଗୁରୁତ୍ୱ ପ୍ରଖ୍ୟାପନ କରିଛନ୍ତି ।

ମାଘ ମାସରେ ବିଶେଷତଃ ପୌଷପୂର୍ଣ୍ଣିମାଠାରୁ ମାଘପୂର୍ଣ୍ଣିମା ପର୍ଯ୍ୟନ୍ତ 'ମୂଳା' ଭକ୍ଷଣ ନିଷିଦ୍ଧ । କାରଣ ମୂଳା ଏହି ସମୟରେ ମଦିରା

ଭୂକ୍ଷ ହୋଇଥାଏ ବୋଲି ସ୍କନ୍ଦପୁରାଣରେ ଉଲ୍ଲେଖ ଅଛି । ମାଘେ ମୂଳା, ଗୋରୁ ମାଉଁସ ପୂଳାପୂଳା—ମାଘ ମାସରେ ମୂଳା ଖାଇବା ଅବଧେୟ୍ଯ । ଏହାକୁ ଭକ୍ଷଣ କଲେ ଗୋମାଂସ ଭକ୍ଷଣର ପାପ ହୁଏ ବୋଲି ଭାଷା-କୋଷରେ ମଧ୍ୟ ଲେଖାଅଛି । ( ଓ· ଭାଷାକୋଷ ପୃ ୬୦୧୯ ) । ମାଘ ମାହାତ୍ମ୍ୟରେ ମଧ୍ୟ ମୂଳା ସହିତ ଖର୍ଜ୍ଜୁର, ବରକୋଳି ଓ ମାଂସ ଭକ୍ଷଣକୁ ବାରଣ କରାଯାଇଛି ।

"ଆଜ କଥାଏ ଥିବ ପାଳ ଭକ୍ଷିବ ନାହିଁ ବରକୋଳି
ଖଜୁ୍ର, ମୂଳା ଆଦ ତ୍ୟାଗି ଏତେ ପଦାର୍ଥ ଥିବ ଜଗି ।"

( ପୃ-୫ )

ପୁନଶ୍ଚ—

"ଆମିଷ ଦ୍ରବ୍ୟ ନ ଭକ୍ଷିବ ମୂଳା ବଦରୀ ଉପେକ୍ଷିବ
ଯଦ୍ୟପି କରିବ ଭକ୍ଷଣ ଶୂକର ମାଂସର ସମାନ ।"

(ପୃ-୬୪)

ପୁଣ୍ୟମାସ ମାଘର କୃଷ୍ଣପକ୍ଷ ଚତୁର୍ଦ୍ଦଶୀ 'ରଟନ୍ତୀ ଚତୁର୍ଦ୍ଦଶୀ' ଶୁକ୍ଳ-ପଞ୍ଚମୀ, ବସନ୍ତ-ପଞ୍ଚମୀ, ସପ୍ତମୀ, 'ମାଘ ସପ୍ତମୀ' ବା ଆରୋଗ୍ୟ ସପ୍ତମୀ, ଅଷ୍ଟମୀ 'ଭୀଷ୍ମାଷ୍ଟମୀ' ଓ ପୂର୍ଣ୍ଣିମା 'ମାଘୀ ପୂର୍ଣ୍ଣିମା' ବା ଅଗିଜଳା ପୂର୍ଣ୍ଣିମା ନାମରେ ପରିଚିତ ।

ମାଘମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ 'ରଟନ୍ତୀ ଚତୁର୍ଦ୍ଦଶୀ' ନାମେ ବିଦିତ । ଏ ଦିନ ଯେ' ପ୍ରାତଃସ୍ନାନ କରିବ ତାର ଯମଦର୍ଶନ ନାହିଁ ବୋଲି ସ୍କନ୍ଦପୁରାଣରେ ଉଲ୍ଲେଖ ଅଛି ।

"ମାଘେ ମାସୀ ସିତେ ପକ୍ଷେ ରଟନ୍ତ୍ୟାଖ୍ୟାଚତୁର୍ଦ୍ଦଶୀ
ତସ୍ୟାମୁଦୟ ବେଳାୟାଂ ସ୍ନାତ୍ୟ ନାବେକ୍ଷତେ ଯମମ୍"

ମାଘ ଶୁକ୍ଳପଞ୍ଚମୀ ଶ୍ରୀପଞ୍ଚମୀ ବା 'ବସନ୍ତପଞ୍ଚମୀ' ରୂପେ ସର୍ବ-ଭାରତୀୟ ପ୍ରସିଦ୍ଧି ଲାଭ କରିଛି । ବୀଣା ପୁସ୍ତକ ରଞ୍ଜିତହସ୍ତା ଭଗବତୀ ଭାରତୀଙ୍କର ଏହା ପୂତ ପୂଜୋତ୍ସବ । ଏକ ହସ୍ତରେ ବୀଣା ଓ ଅପର

ନ୍ତରେ ପୁସ୍ତକଧାରିଣୀ ସତେ ଯେପରି ଉଭୟ ସଙ୍ଗୀତ ଓ ସାହିତ୍ୟ ରସପିପାସୁ କଳାପ୍ରିୟ ଭାରତୀୟଙ୍କୁ ଆନନ୍ଦମୟ କରିବା ଉଦ୍ଦେଶ୍ୟରେ ବର୍ଷକେ ଥରେ ଅବତରଣ କରନ୍ତି ।

ମାଘସପ୍ତମୀ ତିଥିରେ ଚନ୍ଦ୍ରଭାଗାର ବେଳାଭୂମି ମୁଖରିତ ହୋଇଉଠେ । କୃଷ୍ଣପୁତ୍ର ଶାମ୍ବ ଏହିଠାରେ ହିଁ ସୂର୍ଯ୍ୟପୂଜା କରି ଏହିଦିନ ରୋଗମୁକ୍ତ ହୋଇଥିବାର ପୌରାଣିକ ପ୍ରସିଦ୍ଧି ରହିଛି । ଅରୁଣୋଦୟ କାଳରେ ସପ୍ତମୀ ଦିନ ଯଥାବିଧି ସଂକଳ୍ପ ପରେ ସ୍ନାନ ପୂର୍ବରୁ ସାତୋଟି ବରକୋଳି ପତ୍ର ଓ ସାତୋଟି ଅରଖ ପତ୍ର ମସ୍ତକରେ ରଖି ନିମ୍ନପ୍ରାର୍ଥନା ସହ ଜଳପ୍ରବେଶ କରଣୀୟ ।

"ଓଁ ଯତ୍ ଯତ୍ ଜନ୍ମକୃତଂ ପାପଂ ମୟା ସପ୍ତସୁ ଜନ୍ମସୁ

ତନ୍ମେ ରୋଗଂ ଚ ଶୋକଂ ଚ ମାର୍କରୀ ହନ୍ତୁ ସପ୍ତମୀ"

ତତ୍ପରେ ବରକୋଳି ଫଳ, ଅର୍କପତ୍ର, ଧାନ, ତିଳ, ଦୂବ, ଅକ୍ଷତ ଓ ଚନ୍ଦନ ପ୍ରତ୍ୟେକରୁ ସାତଟି ଲେଖାଏଁ ଧରି 'ଶ୍ରୀ ସୂର୍ଯ୍ୟାୟ ଅର୍ଘ୍ୟଂ ଅହଂ ଦଦେ' ଏହା କହି ଜଳାଞ୍ଜଳି ଦେବାକୁ ହେବ । ମାଘସପ୍ତମୀ ଓ ଆଦିତ୍ୟ ଜୟନ୍ତୀ ନାମରେ ମଧ୍ୟ କେତେକଙ୍କ ଦ୍ୱାରା ନାମିତ ।

ମାଘମାସର ଶୁକ୍ଳାଷ୍ଟମୀ ଭୀଷ୍ମାଷ୍ଟମୀ ନାମରେ ପରିଚିତ । ଭୀଷ୍ମ ଅପୁତ୍ରକ ଥିଲେ । ତାଙ୍କୁ କିଏ ପିଣ୍ଡ ଦେବେ ବୋଲି ପଚରା ଯିବାରେ ସେ କହିଥିଲେ, "ଏ ସଂସାରର ସମସ୍ତ ଲୋକ ମୋ ପୁଅ ଓ ଏମାନେ ମୋତେ ପିଣ୍ଡ ଦେବେ ।" ଏଥିପାଇଁ ପ୍ରତି ହିନ୍ଦୁ ଗୃହସ୍ଥ ମାଘ ଶୁକ୍ଳ ଅଷ୍ଟମୀ ଦିନ ଭୀଷ୍ମଙ୍କ ପାଇଁ ଶ୍ରାଦ୍ଧ କରନ୍ତି । ପୁନଶ୍ଚ ଶରଶଯ୍ୟାଶାୟୀ ଭୀଷ୍ମ ଏହି ମାଘ ଶୁକ୍ଳ ଅଷ୍ଟମୀ ଦିନ ଏହାକୁ ପୁଣ୍ୟତିଥି ମନେକରି ଆପଣାର ଇଚ୍ଛାନୁସାରେ ପ୍ରାଣତ୍ୟାଗ କରିଥିଲେ ।

ମାଘ ପୂର୍ଣ୍ଣିମା ବା 'ଅଗିର' (ଅଇଘର) ବା ଅଗିଜଳା ପୂର୍ଣ୍ଣିମା ଏହି ମାସର ଶେଷ ଉତ୍ସବ । ଏହା ଏକ ଗଣଉତ୍ସବ । ବାଘ୍ରାସୁରଙ୍କୁ

କାମସୂତ୍ରର ୪ର୍ଥ ଅଧ୍ୟାୟରେ ଯେଉଁ ୧୭ଟି ବିଭିନ୍ନ ଉତ୍ସବର ନାମ ଦିଆଯାଇଛି, ତନ୍ମଧ୍ୟରେ ଶେଷ ୫ଟି ପର୍ବ କେବଳ ଫୁଲ ଓ ଫଳକୁ କେନ୍ଦ୍ର କରି । 'ମଦନ ଉତ୍ସବ' ନାମରେ ନାମିତ ଏକ ଆନନ୍ଦୋତ୍ସବର ସମୁଖିତତ ପର୍ବ ପରେ ଅଗ୍ନି ଉତ୍ସବର ପ୍ରଭାବ ବିସ୍ତାର କରିଥିବା କେତେକ ମତବ୍ୟକ୍ତ କରନ୍ତି । ମାତ୍ର ଏହା ମୁଖ୍ୟତଃ ଏକ ଗ୍ରାମ୍ୟ ପର୍ବ ହୋଇଥିବାରୁ କୃଷିବହୁଳ ଭାରତରେ କୃଷକମାନେ ଆନନ୍ଦାତିଶଯ୍ୟରେ ଶୀତକୁ ବିଦାୟ ଦେଇ ଗାଁ ମୁଣ୍ଡରେ ନିଆଁ ଜାଳି ନାନା ମନଫୁଲଣିଆ ଗୀତ ମାଧ୍ୟମରେ ବସନ୍ତକୁ ଅଭିନନ୍ଦନ ଜଣାନ୍ତି । ଗାଁ ମୁଣ୍ଡର ଏକ ଖୋଲାଜାଗା ଗୋବରରେ ଲିପା ହୋଇ ପ୍ରତ୍ୟେକ ଗୃହସ୍ଥ ଘରୁ ଅଗ୍ନିଭୋଜ୍ୟ ପଦାର୍ଥ ଅଣାଯାଏ । ଗୋଟିଏ ଦିଅଁାପ ପ୍ରଥମେ ପୂଜା ପାଇ ସାରିଲା ପରେ ସେହି ଦୀପରୁ ଅଗ୍ନିସଂଯୋଗ କରାଗଲା ମାତ୍ରେ କାଠ, କୁଟାର ଗଦା ହୁ ହୁ ହୋଇ ଜଳିଉଠେ । ନିଆଁ ଉପରକୁ ପିଲାମାନେ ଆଳୁ, ସାରୁ, ବାଇଗଣ ପକାଇ ପରେ ତାକୁ ପ୍ରସାଦରୂପେ ପାଆନ୍ତି । ବ୍ରତରାଜ ଗ୍ରନ୍ଥରେ 'ହୋଲକୋତ୍ସବ'ର ବିଧି ବିଧାନ ବର୍ଣ୍ଣନାରୁ କେତେକ ମାଘୀ ପୂର୍ଣ୍ଣିମାରେ ଏହି ଅଗ୍ନି ଉତ୍ସବକୁ ଶିଶୁ ଭୟପ୍ରଦା ହୋଲିକା ରାକ୍ଷସୀର ନିରାକରଣ ପାଇଁ ଏହା ଆୟୋଜନ କରାଯାଏ ଓ ମହାମାରୀ, ବିସ୍ଫୋଟକ ଓ ଅଗ୍ନିଭୟରୁ ରକ୍ଷା ପାଇବା ପାଇଁ ପ୍ରାର୍ଥନା କରାଯାଏ ବୋଲି ମତବ୍ୟକ୍ତ କରନ୍ତି । କଥିତ ଅଛି, ପ୍ରଖ୍ୟାତ ଗଜପତି ପୁରୁଷୋତ୍ତମ ଦେବ ମାଘ ଶୁକ୍ଳପଞ୍ଚମୀ ଦିନ କାଞ୍ଚି ଅଭିମୁଖେ ଯାତ୍ରା କରିଥିଲେ ଏବଂ ମାଘ ପୂର୍ଣ୍ଣିମା ଦିନ କାଞ୍ଚି ଜୟ କରି ଅଗ୍ନି ଉତ୍ସବ କରାଇଥିଲେ ।" ( ପୌରୁଷ ଫେବୃୟାରୀ ୧୯୬୯ ) ବିକ୍ରମାଦିତ୍ୟ ମଧ୍ୟ ଶକମାନଙ୍କୁ ଭାରତରୁ ବିତାଡ଼ନ କରିଦେଇ ଥିବାରୁ ପଶ୍ଚିମ ଭାରତରେ ଏ ଅଗ୍ନି ଉତ୍ସବ ଦେଖାଯାଏ ।

ଅଗ୍ନି ମାନବର ସର୍ବସ୍ୱ । ଏଣୁ ପ୍ରାଚୀନ ଆର୍ଯ୍ୟମାନେ ସବୁ ଦେବତାଙ୍କ ଆଗରେ ଅଗ୍ନିକୁ ପ୍ରଥମ ସ୍ଥାନ ଦେଇଥିଲେ ଓ ପୂଜା କରୁଥିଲେ । ସୂର୍ଯ୍ୟ ନ ଥିଲା ବେଳେ ମଧ୍ୟ ଅଗ୍ନିଠାରୁ ପ୍ରାଚୀନ ମାନବ ଆଲୋକ ପାଉଥିଲା । ଋକ୍ ବେଦର ପ୍ରଥମ ଶ୍ଳୋକ ହିଁ ସେହି ଦୀପ୍ତିମୟ ଦେବତା 'ଅଗ୍ନି'କୁ କେନ୍ଦ୍ର କରି ରଚିତ ।

"ଓଁ ଅଗ୍ନିମୀଳେ ପୁରୋହିତଂ
ଯଜ୍ଞସ୍ୟ ଦେବ ମୃତ୍ୱିଜଂ
ହୋତାରଂ ରତ୍ନଧାତମମ୍"
( ଋକ୍‌ବେଦ ସଂହିତା-ପ୍ରଥମ ସୂକ୍ତଂ )

ଅର୍ଥାତ୍—ସତ୍ କର୍ମରୂପୀ ମନୁଷ୍ୟମାନଙ୍କ ହିତ ସାଧକ, ସତ୍‌କର୍ମ ଦେବତା ଯାପ୍ରଦାନାଦି ଗୁଣସ୍ୱରୂପ, ସର୍ବଦା ସତ୍କର୍ମ ନିୟୋଜକ, ଦେବମାନଙ୍କର ଆହ୍ୱାନକାରୀ, ଧର୍ମାର୍ଥକାମ ମୋକ୍ଷରୂପ ପରମ ଧନର ବିଧାତା, ଜ୍ଞାନ.ଦେବତାଙ୍କୁ ସେହି ତେଜୋମୟ ଚୈତନ୍ୟ ସ୍ୱରୂପକୁ ସ୍ତବ କରୁଛି । ମୁଁ ଜ୍ଞାନ ଦେବତାଙ୍କ ଅନୁସରଣରେ ପ୍ରତିଜ୍ଞାବଦ୍ଧ ହେଉଛି । ( ଋକ୍ ବେଦ ସଂହିତା ୧ ଅଷ୍ଟକ ୧ ମ ବର୍ଷ ) ବେଦର ପ୍ରଥମ ମଣ୍ଡଳ ୧ମ ସୂକ୍ତର ନବମୀ ଋକ୍‌ରେ ଏହି ଅଗ୍ନି ଦେବତାଙ୍କୁ ଆର୍ଯ୍ୟଋଷି ପ୍ରାର୍ଥନା କରି କହିଛନ୍ତି—

'ସଃ, ନଃ, ପିତାଇବ, ସୂନବେ, ଅଗ୍ନେ, ସୂଭପାଯ୍ୱ ନଃ, ଭବ । ସ ଚସ୍ୱ, ନଃ, ସ୍ୱସ୍ତୟେ"—ଭାବାର୍ଥ-ହେ ଜ୍ଞାନଦେବତା । ପୁତ୍ରବତ୍ସଳ ପିତାଙ୍କ ପରି ଆପଣ ଜ୍ଞାନଦାତା ହୁଅନ୍ତୁ ।"

ସାମାଜିକ ଦୃଷ୍ଟିକୋଣରୁ ବିଚାର କଲେ ମାଘମାସରେ ଶୁଷ୍କପତ୍ର ସବୁ ବୃକ୍ଷ ତ୍ୟାଗ କରି ବସନ୍ତ ସ୍ପର୍ଶରେ ନବପଲ୍ଲବିତ ହୁଏ । ଏଣୁ ଇତସ୍ତତଃ ପତିତ ପତ୍ର ଓ ଧାନ ଅମଳଜନିତ କୁଟା, ନଡ଼ା ସବୁ ଏକତ୍ର କରାଯାଇ ଅଗ୍ନିସଂଯୋଗ କରାଯାଏ । ଫଳରେ ଗ୍ରାମ୍ୟଦାଣ୍ଡ ପରିଷ୍କାର ପରିଚ୍ଛନ୍ନ ହୁଏ ଓ ଅଳିଆ ସବୁ ଦୂର ହୁଏ । ଅଗ୍ନିଜଳା ପାଉଁଶ ମଧ୍ୟ ସାରରୂପେ ବ୍ୟବହୃତ ହୁଏ । ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକଙ୍କ ମତରେ 'ଯଦି ଏପରି ଏକାଧିକବାର ଅଗ୍ନି-ଉତ୍ସବ ହୁଏ କୁହୁଡ଼ି ଦ୍ୱାରା ଆମ୍ବଫସଲ ନଷ୍ଟ ହେବାର ସମ୍ଭାବନା ବହୁତ କମିଯିବ ।' ସର୍ବୋପରି ମାଘ ପରେ ଆସିଥିବା ବସନ୍ତ ଓ ଗ୍ରୀଷ୍ମର ପ୍ରଚଣ୍ଡ ଖରତାପକୁ ସହ୍ୟ କରିବା ନିମନ୍ତେ ମାଘ ପୂର୍ଣ୍ଣିମାରି ଏହି ଅଗ୍ନିସେବନ ମାଧ୍ୟମରେ ମାନବ ଶରୀରକୁ ଭବିଷ୍ୟତ୍ ନିମନ୍ତେ ପ୍ରସ୍ତୁତ କରି ରଖେ । 'ବସନ୍ତେ ଅଗ୍ନି ସେବନଂ' ବାସ୍ତବିକ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ଏହି ମାଘ ପୂର୍ଣ୍ଣିମାରୁ ମଧ୍ୟ 'କଳିଯୁଗ' ଆରମ୍ଭ ହୋଇଥିବା ଶାସ୍ତ୍ରରୁ ଜଣାଯାଏ—

"ଅର୍ଥ ଭାଦ୍ରପଦେ କୃଷ୍ଣେ
ତ୍ରୟୋଦଶ୍ୟାନ୍ତୁ ଦ୍ୱାପରମ୍
ମାଘେ ଚ ପୌର୍ଣ୍ଣମାସ୍ୟାଂ ବୈ
ଘୋରଂ କଳିଯୁଗଂ ସ୍ମୃତମ୍"

ଓଡ଼ିଶାରେ ବହୁ ସାଧକ କବି, ଯଥା-କବିସୂର୍ଯ୍ୟ ବଳଦେବ ରଥ, ଭକ୍ତକବି ମଧୁସୂଦନ, ଅତିବଡ଼ି ଜଗନ୍ନାଥ ଦାସ, ସିଦ୍ଧମୁନି ଶାରଳା ଦାସ, ପ୍ରେମିକ କବି ଅଭିମନ୍ୟୁ ପ୍ରଭୃତିଙ୍କର ଜନ୍ମ ଓ ଶ୍ରାଦ୍ଧୋତ୍ସବ ପାଳିତ ହେବା ସଙ୍ଗେ ସଙ୍ଗେ ତ୍ରିବେଣୀ ଅମାବାସ୍ୟା,କଣ୍ଟିଲୋ ନୀଳମାଧବ ଯାତ୍ରା, ଖଣ୍ଡଗିରିମେଳା, ଯୋରନ୍ଦା ଗାଦିର ଉତ୍ସବ ସହ ଅନ୍ୟାନ୍ୟ ବହୁ ସାଂସ୍କୃତିକ ଉତ୍ସବ ଏହି ମାଘ ମାସରେ ହିଁ ଅନୁଷ୍ଠିତ ହୋଇଆସୁଛି ।

( ଧରିତ୍ରୀ ୫-୨-୭୭ ଶନିବାର )



ଫାଲଗୁନ

# ଶିବ-ରାତ୍ରିର ପୃଷ୍ଠଭୂମି

ଶିବଙ୍କ ପ୍ରିୟ ଚତୁର୍ଦ୍ଦଶ ଯାତ୍ରା ମଧ୍ୟରୁ ଶିବ ଚତୁର୍ଦ୍ଦଶୀ ସର୍ବଜନ-ବିଦିତ ଓ ମାଘସପ୍ତମୀ ପରେ ଏହା ଶିବଙ୍କ ଷଷ୍ଠ ଉତ୍ସବ । ଶିବବ୍ରତକାରୀ ନରନାରୀମାନେ ଏହି ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ଦିନ ରାତିସାରା ଉଜାଗର ରହୁଥିବାରୁ ଏହା 'ଜାଗର' ଅମାବାସ୍ୟା ନାମରେ ମଧ୍ୟ ନାମିତ । ଶିବରାତ୍ରି ସମ୍ବନ୍ଧୀୟ ସ୍ଥୂଳ ବିବରଣୀ ଏକାମ୍ର ଚନ୍ଦ୍ରିକା, ସ୍ୱର୍ଣ୍ଣାଦ୍ରି-ମହୋଦୟ ଓ ଶିବପୁରାଣ ପ୍ରଭୃତି ଗ୍ରନ୍ଥରେ ଦେଖାଯାଏ । ଶିବରାତ୍ରିର ଲୋକପ୍ରିୟତା, ପୂଜାବିଧି ଓ ଉକ୍ତ ଯାତ୍ରା ଦର୍ଶନର ଫଳ ସମ୍ବନ୍ଧରେ ପ୍ରାଚୀନ ପୁରାଣରେ ଲେଖାଅଛି—

"ଶିବରାତ୍ରି ବ୍ରତଂ ନାମ୍‌ । ସର୍ବତ୍ର ବିଦିତଂ ଶିବେ
ସର୍ବପାପଘ୍ନମତୁଳଂ ସର୍ବପୁଣ୍ୟବିବର୍ଦ୍ଧନଂ ।
ଶିବରାତ୍ର୍ୟାଂ ତୁ ଯାତ୍ରାୟାଂ ଦର୍ଶନେନୈବ ମାନବଃ
ସର୍ବପାପବିନିର୍ମୁକ୍ତଃ ଶିବମାପ୍ନୋତ୍ୟ-ସଂଶୟଃ"

(ଏକାମ୍ର ଚନ୍ଦ୍ରିକା)

ଅର୍ଥାତ୍‌ ଶିବରାତ୍ରି ବ୍ରତ ସର୍ବତ୍ର ସୁପରିଚିତ । ଏହା ସର୍ବପାପ-ନାଶକ ଓ ପୁଣ୍ୟବିବର୍ଦ୍ଧକ । ଶିବରାତ୍ରି ଉତ୍ସବ ଦର୍ଶନ ମାତ୍ରେ ମାନବ ସର୍ବପାପବିନିର୍ମୁକ୍ତ ହୋଇ ଶିବଙ୍କୁ ପ୍ରାପ୍ତ ହୁଏ-ଏଥିରେ ସନ୍ଦେହ ନାହିଁ । ଶିବରାତ୍ରିର ଉତ୍ପତ୍ତି ସମ୍ବନ୍ଧରେ ଶିବପୁରାଣରେ ଦିଆଯାଇଥିବା ପୌରାଣିକ ଗଳ୍ପଟି ଯେପରି ପ୍ରଚ୍ଛନ୍ନ-ନୀତି-ଶିକ୍ଷାମୂଳକ, ସେହିପରି ତାତ୍ପର୍ଯ୍ୟପୂର୍ଣ୍ଣ । ସେହି ଗଳ୍ପାଂଶଟି ହେଉଛି—ବୈକୁଣ୍ଠପୁରରେ ଦିନେ ସ୍ୱୟଂ ଲକ୍ଷ୍ମୀ ଠାକୁରାଣୀ ନାରାୟଣଙ୍କ ଦ୍ୱାରା ଉପଦିଷ୍ଟ ହୋଇ ଶିବପୂଜାରେ ମନ ବଳାଇଲେ । ପ୍ରତିଦିନ ଶହେଟି ପଦ୍ମଫୁଲରେ ଶିବପୂଜା, ଭକ୍ତି ନିର୍ମଳ

ଚନ୍ତ୍ରରେ ଲକ୍ଷ୍ମୀ ଆରମ୍ଭ କଲେ । ଗଣି ଗଣି ପ୍ରତ୍ୟହ ଶହେ ପଦ୍ମଫୁଲ ମହାଦେବଙ୍କ ଶିରରେ ଲାଗି କରନ୍ତି । କ୍ରମେ ବର୍ଷେ ସମ୍ପୂର୍ଣ୍ଣ ହେଲା । ଶିବରାତ୍ରି ବା ମାଘର ଅମାବାସ୍ୟା ସମୟ ପହଞ୍ଚିଲା । ଶିବ ଲକ୍ଷ୍ମୀଙ୍କର ଭକ୍ତି ଓ ବିଶ୍ୱାସ ପରୀକ୍ଷା କରିବା ନିମନ୍ତେ ଦୁଇଟି ପଦ୍ମହରଣ କରିବାରୁ ପଦ୍ମଫୁଲ ଲାଗି କଲାବେଳେ ଲକ୍ଷ୍ମୀ ଉପାୟଶୂନ୍ୟା ହେଲେ । ପାଖରେ ଦାସୀ ପରିବାରୀ କେହି ନାହାନ୍ତି ପୁଣି ପୂଜା ଛାଡ଼ିଗଲେ କର୍ମଭଙ୍ଗ; ଏଣୁ ସାଗର ଦୁଲଣୀ ନିଜର ସ୍ତନ-ପଦ୍ମ ଦୁଇଟିକୁ କାଟି ଶିବ ଶିରରେ ଚଢ଼ାଇବେ ବୋଲି ମନସ୍ଥ କଲେ । ସ୍ତନ ଦୁଇଟି କଟିଗଲେ ଲକ୍ଷ୍ମୀଙ୍କ ରୂପ ବିରୂପ ହେବ ବୋଲି କହି ତାଙ୍କୁ ଏଥିରୁ ନିବୃତ୍ତ ହେବାକୁ ବାରଣ କଲେ—

"କମଳା ବୋଇଲେ ନାହିଁ ଏ କଥାକୁ ଖ୍ୟାତି
ମୁଁ ଜାଣଇ ହରିହର ଏକାତ୍ମା ଅଟନ୍ତି ।
ଆବର କହୁଛ ପଦ୍ମ ଅଛି ମୋ ଶରୀରେ
ଶ୍ରୀହରିଙ୍କି ସନ୍ତୋଷ ମୁଁ କରିବ ତହିଁରେ—"

(ଶିବ ପୁରାଣ)

ପ୍ରଥମ ସ୍ତନ କାଟି ଦେବା ଶିବଙ୍କ ମସ୍ତକରେ ଲାଗିକଲେ, ଦ୍ୱିତୀୟଟି କାଟିବାକୁ ଉଦ୍ୟତ ହେବା ମାତ୍ରେ ଶିବ ପ୍ରସନ୍ନ ହୋଇ ଦେଖା ଦେଲେ ଓ ଲକ୍ଷ୍ମୀଙ୍କୁ ବର ଦେଲେ ଓ ଲକ୍ଷ୍ମୀଙ୍କ କାନ୍ତି ପୂର୍ବାପେକ୍ଷା ଅଧିକ ଝଳ ଉଠିଲା ଓ କର୍ତ୍ତିତ-ସ୍ତନପଦ୍ମ ଶିବଙ୍କ ନିର୍ଦ୍ଦେଶରେ 'ବିଲ୍ୱବୃକ୍ଷ'ରେ ପରିଣତ ହେଲା ଓ ସେହି ଦିନଠାରୁ ଏ ବୃକ୍ଷର ଫଳ ବେଲର ନାମ ହେଲା ଶ୍ରୀ (ଲକ୍ଷ୍ମୀ) ଫଳ । ଖାଲି ସେତିକ ନୁହେଁ—ବେଲ ବୃକ୍ଷକୁ ସବୁ ଦେବତା ମିଶି ୨୧ଟି ନାମ ଦେଲେ । ଯଥା—

"ମାଲୁର ଶ୍ରୀଫଳ ବିଲ୍ୱ ଶାଣ୍ଡିଲ୍ୟ ଶୈଳୁଷ
ଧୂମ୍ରାକ୍ଷ କୋମଳଚ୍ଛଦ ବିଷ୍ଣୁଦେହ ବାସ,
ତୀର୍ଥପ୍ରଦ ଶ୍ରାଦ୍ଧଦେବ ଶିବ ଶିବପ୍ରିୟ
ଶୁକ୍ଳବର୍ଣ୍ଣ ତ୍ରିନୟନ ପାପଘ୍ନ ବିଜୟ,
ସୁଯମୀ ଆବର ବରଜୟ ପୁଣ୍ୟ ଧାମ
ଏ ରୂପେ ଅଟଇ ଜାଣ ଏକବିଂଶ ନାମ ।"

(ଶିବ ପୁରାଣ-୧ମ ଖଣ୍ଡ)

ଲିଙ୍ଗ ପୁରାଣସ୍ଥ ଶୈବ ତଉତାବଳୀରେ ଶିବରାତି ସୃଷ୍ଟିର ଏକ ତାତ୍ତ୍ୱିକ ରୂପ ପ୍ରକାଶ ପାଇଛି । ସେ ଉପାଖ୍ୟାନର ସାରକଥା ହେଲା— ଥରେ ଦେବଗଣ ଶଙ୍କର ଭଗବାନଙ୍କର ମୂଳାଗ୍ର ଦର୍ଶନ ନିମନ୍ତେ ପ୍ରୟାସୀ ହେଲେ । ଭଗବାନ୍ ବିଷ୍ଣୁ ଭୂବରାହ ରୂପରେ ମୂଳଦେଶର ଓ ବ୍ରହ୍ମା ହଂସବାହନରେ ଶୀର୍ଷଦେଶର ଅନ୍ୱେଷଣ ନିମନ୍ତେ ବାହାରିଲେ । ବହୁଦିନ ବିତିଗଲା । ମାତ୍ର ବ୍ରହ୍ମା, ବିଷ୍ଣୁ ଅଗ୍ର ବା ମୂଳର ଦର୍ଶନ ପାଇଲେ ନାହିଁ । ହଠାତ୍ ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ଦିନ ଗୋଟିଏ କେତକୀ ପତ୍ର ଶିବଙ୍କ ଶୀର୍ଷଦେଶରୁ ଖସି ଆସୁଥିବାର ଦେଖି, ବ୍ରହ୍ମା ଶୀର୍ଷଦେଶ ନିକଟ ହେଲା ବୋଲି ଭାବି କେତକୀ ପତ୍ରକୁ ପଚାରିଲେ, "ହେ ଭାଗ୍ୟବାନ୍ କେତକୀ ସ୍ତବକ, ସ୍ଥାଣୁଙ୍କର ଶୀର୍ଷାପ୍ରାନ୍ତ ଆଉ କେତେ ଯୋଜନ ବ୍ୟାପ୍ତ ?" କେତକୀ କହିଲା, "ହେ ପଦ୍ମଯୋନି ! ମୁଁ କଳ୍ପକଳ୍ପାନ୍ତରୁ ଶିବଙ୍କ ଶୀର୍ଷରୁ ପତିତ ହୋଇଅଛି, ଏଣୁ ଦୂରତ୍ୱ କଳ୍ପନା ମୋ ପକ୍ଷରେ ଅସମ୍ଭବ ।" ତତ୍ପରେ ବ୍ରହ୍ମା କେତକୀ ସହ ବିଷ୍ଣୁଙ୍କ ନିକଟକୁ ଗଲେ ଓ ସେଠାରେ କେତକୀ ବ୍ରହ୍ମାଙ୍କର ଶିବଙ୍କ ଶୀର୍ଷଦେଶ ଦର୍ଶନର ଅସାମର୍ଥ୍ୟ ପ୍ରକାଶ କରିବାରୁ ବ୍ରହ୍ମା ରମଣୀୟ କେତକୀକୁ କଣ୍ଟକିତ ହେବାକୁ କହିଲେ । ମାତ୍ର ବିଷ୍ଣୁ ବ୍ରହ୍ମାଙ୍କର ଏଭଳି ଅହଂଭାବ ଦେଖି କହିଲେ, "ପ୍ରତ୍ୟକ୍ଷ ସଦ୍ୟୋଜାତ ଶିବଙ୍କର ଆଦି ଅନ୍ତ ନିର୍ଣ୍ଣୟ ଦୁରୂହ; ତାଙ୍କର ମୂଳଦେଶ ବା ପାଦଦେଶର ନାମ ସଦ୍ୟୋଜାତ, ମଧ୍ୟଦେଶର ନାମ ସ୍ୱୟଂଭୂ ଓ ଉର୍ଦ୍ଧ୍ୱଦେଶର ନାମ ନୀଳଲୋହିତ ଶିବ । ଏଣୁ ଯେଉଁ ବ୍ୟକ୍ତି ଏହି ମହାଶିବ ରାତିରେ ସଦାଶିବଙ୍କର ଶିବ, ବ୍ରହ୍ମା ଓ ବିଷ୍ଣୁଙ୍କର ତ୍ରିଗୁଣାତ୍ମକ ରୂପର ମହୀୟାନ୍ କଳ୍ପନା କରି ଏହାଙ୍କ ଉପରେ କେତକୀପତ୍ର ସମର୍ପଣ କରେ ସେ କୋଟି ଶ୍ରୀପତ୍ର (ବିଲ୍ୱପତ୍ର) ପ୍ରଦାନର ଫଳ ଲାଭ କରେ ।

(ଶ୍ରୀମନ୍ଦିର ସମାଚାର, ଫେବୃୟାରୀ ୧୨, ୧୯୭୯) ।

ଏଣୁ ପ୍ରଥମ ଆଖ୍ୟାୟିକାରେ ବିଲ୍ୱପତ୍ରର ଓ ଦ୍ୱିତୀୟଟିରେ କେତକୀ ପତ୍ରର ମାହାତ୍ମ୍ୟ ପ୍ରକଟିତ । ବିଲ୍ୱପତ୍ରର ମହିମା ସମ୍ବନ୍ଧରେ ଶିବ ପୁରାଣରେ ଲେଖାଅଛି—

"ଶିବଙ୍କୁ ଅର୍ପଣ କଲେ ଏକ ବିଲ୍ୱ ଦଳ
ତହିଁରୁ ମିଳିବ କୋଟି କନ୍ୟାଦାନ ଫଳ,

ସହସ୍ର ପଦ୍ମଫୁଲ ଦେଇ ଶିବଙ୍କୁ ପୂଜଲେ
ତା'ଭୁଲ୍ ବୁଝିଇ ଏକ ବିଲ୍ୱପତ୍ର ଭୁଲେ ।"

ଶିବଙ୍କ ପ୍ରିୟ ପୁଷ୍ପ ତାଲିକାରେ 'କେତକୀ' ମଧ୍ୟ ଅନ୍ତର୍ଭୁକ୍ତ—

"ଶେଫାଳୀ ବକୁଳଂ ବକଂ ବଟକଳଂ
କାଶଂ କୁଶଂ କିଂଶୁକଂ
ଧୁସ୍ତୁରାର୍କ, ଜମ୍ବୁକଦମ୍ବଂ କୁଟଜଂ
ମନ୍ଦାର ନାଗାର୍ଜୁନଂ
ସେବନ୍ତୀ ନଟଶ୍ରୀ ସରୋଜ ମୁଣ୍ଡଂ
ସର୍ବୋତ୍ର ଫଳଂ ପାଟଳମ୍ ।
ପୁନ୍ନାଗଂ କରବୀର କୁଙ୍କୁମ ମିଦଂ
ପୁଷ୍ପଂ ଶିବେ ଧୀୟତାମ୍ ।" ( ଶିବତତ୍ତ୍ୱସାର )

ତାନ୍ତ୍ରିକ ମତରେ ଯେ ଶିବ ସେ ବିଷ୍ଣୁ, ପୁଣି ପୂର୍ବ ବର୍ଣ୍ଣିତ 'କେତକୀ' ଆଖ୍ୟାନରୁ ଏହା ସ୍ପଷ୍ଟ ଯେ ମହାଶିବରାତ୍ରି ହରିହର ବ୍ରହ୍ମାଙ୍କର ଏକ ସମନ୍ୱୟାତ୍ମକ ଅର୍ଥାତ୍ ମିଳିତ ଉତ୍ସବ । ପ୍ରାଚୀନ ଶାସ୍ତ୍ରରୁ ଜଣାଯାଏ 'ମାଧବ' ଓ 'ଉମାଧବ' ଏକ ଓ ଅଭିନ୍ନ ।

"ଯୋଽହଂ ନାରାୟଣୋ ଦେବଃ ସ ଇହଂ ନୀଳକନ୍ଧରଃ
ମୟା ତସ୍ମୈତେ ନାହଂ
କରୋତି ଚ କରୋମି ଚ
ଶଙ୍କୋରେ ନୀଳକଣ୍ଠଶ୍ଚ ଶ୍ରୀଧରୋ ନୀଳବିଗ୍ରହଃ
ଗୌରୀଶୋ ଗୋପିକା-କାନ୍ତୋ
ଧ୍ୟାୟତାମେବ ଚେତସା
ମାଧବସ୍ୟୋ-ମାଧବସ୍ୟ
ନାସ୍ତିଭେଦଂ ମୟୋଦିତଂ
ମୂଢାଭେଦଂ ପ୍ରକୁର୍ବନ୍ତଃ
ପ୍ରପଚ୍ୟନ୍ତେ ହି ରୌରବେ ।"

( କପିଳସଂହିତା )

ବୈଜ୍ଞାନିକ ଦୃଷ୍ଟିକୋଣରୁ ଶିବରାତ୍ରି ବା ଶିବପୂଜା ମାଧ୍ୟମରେ ସମାଜକୁ ସଂଯତ, ନିରାଡ଼ମ୍ବର ଓ ତ୍ୟାଗର ଶିକ୍ଷା ମିଳେ । ଶିବରାତ୍ରି ଫାଲ୍‌ଗୁନ ମାସରେ ଅର୍ଥାତ୍ ବସନ୍ତଋତୁରେ ପାଳିତ ହୁଏ, ଏ ମାସ କାମ ଉଦ୍ଦୀପକ । ପ୍ରାଚୀନ 'କାବ୍ୟ କବିତା'ରେ ଏହାର ପ୍ରମାଣ ରହିଛି । ସୁରତପ୍ରେମୀଙ୍କ ମନରେ ଦୁର୍ବାର କାମଲାଳସା ଜାଗ୍ରତ ହୁଏ । ପୂର୍ବ ବର୍ଣ୍ଣିତ ବେଲପତ୍ର ଏ ଦିଗରେ ଏକ ସାର୍ଥକ ପ୍ରତିଷେଧକ । ଶିବପ୍ରିୟ ବିଲ୍ୱପତ୍ର କାମଭାବର ଦମନକ ଓ ପ୍ରଶମକ; ଏଣୁ କେତେକଙ୍କ ପକ୍ଷେ ପ୍ରତିଦିନ ବେଲପତ୍ର ଖାଇବା ଏ ଦୃଷ୍ଟିରୁ ହିତକାରକ । ସେହିପରି ଗପ୍ସୁସଫୁଲ ମହାଦେବଙ୍କଠାରେ ଲାଗି ହୁଏ । ଏହାର ରସ ସର୍ପବିଷକୁ ହରଣ କରେ, ଏଣୁ ସମାଜରେ ଅପାଂକ୍ତେୟ ହୋଇ ରହିଥିବା ଗପ୍ସୁର ସଦ୍‌ବ୍ୟବହାର ଆବଶ୍ୟକ । ମହାଦେବ ମନ୍ଦିରରେ ଆମେ ଦେଖୁଁ ଲିଙ୍ଗ ଓ ଶକ୍ତି, ପୁରୁଷ ଓ ପ୍ରକୃତି ସମାଜରେ ଯେ କିପରି ଅତି ନିକଟତର ଓ ଏକର ଅଭାବରେ ଅନ୍ୟର କଳ୍ପନା ଯେ କିପରି ଅସମ୍ଭବ ଏହା ଏଥିରୁ ସୂଚନା ମିଳେ । ବିଶେଷତଃ କୌଣସି ମୂର୍ତ୍ତି ବଦଳରେ ଏପରି ଲିଙ୍ଗ ଓ ଯୋନିର ବିଦ୍ୟମାନତା ସର୍ବତ୍ର ଦୃଷ୍ଟ । ଏଣୁ ଏଥିରେ ପ୍ରଚ୍ଛନ୍ନ ରୂପକରୁ ଅର୍ଥାତ୍ ଲିଙ୍ଗ ଓ ଯୋନିର ସାର୍ଥକ ମିଳନାହିଁ ଜୀବ ସୃଷ୍ଟିର ହେତୁ । ବିଶେଷତଃ ଆଜକାଲିର ବହୁକୁଟମ୍ବୀ ଯୁଗରେ ଲିଙ୍ଗ ଓ ଶକ୍ତିଙ୍କର ପ୍ରଚ୍ଛନ୍ନ ସତର୍କବାଣୀ ଭାରତୀୟ ସମାଜକୁ ଚେତେଇ ଦେଉଛି । ଯୌନ ମିଳନରେ ଯଥେଚ୍ଛାଚାରିତା ପରିହାର କରି ସଂଯମ ଆଚରଣ କର; ତାହେଲେ 'ପରିବାର ନିୟନ୍ତ୍ରଣ'ର ଆହ୍ୱାନ—'ଦୁଇଟି ସନ୍ତାନ ଯଥେଷ୍ଟ' ( ପୁଣି କାର୍ତ୍ତିକେୟ ଓ ଗଣେଶଙ୍କ ପରି ଗୁଣବାନ୍ ପୁତ୍ର ) ରକ୍ଷାକରି ପାରିବ ।

ମହାଦେବ ସଂଯମୀ, ସେ ଊର୍ଦ୍ଧ୍ୱରେତା, ଏଣୁ ପାର୍ବଜାୟା ଓ ମୀରେଗ । ସଂଯମର ପ୍ରଭାବରୁ ତାଙ୍କର ଅଗ୍ନିନେତ୍ରର ଉନ୍ମୀଳନ ଦ୍ୱାରା ମଦନ ଦହନ ହୋଇଥିଲା । ଏଣୁ ଏହି ତୃତୀୟ ନେତ୍ର ବୀର୍ଯ୍ୟଧାରୀ ଓଜଃପୂର୍ଣ୍ଣ ପୁରୁଷର ଦିବ୍ୟଦୃଷ୍ଟି ତୁଲ୍ୟ । ଲକ୍ଷ୍ମୀଙ୍କର ସ୍ତନ-ପଦ୍ମ କଳ୍ପନ ମଧ୍ୟ ଏକ ରୂପକ । ସ୍ତ୍ରୀମାନେ ଅଚଳାଭକ୍ତି ପୋଷଣ କରନ୍ତୁ, ବ୍ରତଭଗ୍ନା ନ ହୁଅନ୍ତୁ । କାମୋଦ୍ଦୀପକ ନବ ବସନ୍ତର ଆରମ୍ଭରେ ଗୃହକର୍ତ୍ତ୍ରୀମାନଙ୍କୁ ସଂଯମ କରି ବ୍ରହ୍ମଚର୍ଯ୍ୟ ଧାରଣ କରିବାକୁ ହେବ, କାରଣ ସ୍ତ୍ରୀମାନଙ୍କର କାମପିପାସା ପୁରୁଷ ଅପେକ୍ଷା ଆଠଗୁଣ; ପୁଣି ବସନ୍ତରେ ସେମାନେ

ବେଣି ମଦନମଦଜର୍ଜର । ଏଣୁ 'ସ୍ତନ-କର୍ତ୍ତନ'—ଅର୍ଥାତ୍ ନଜେ କାମଲାଳସାକୁ କର୍ତ୍ତନ କର ସଂଯମ ଆଚରଣ କର ସ୍ୱାମୀଙ୍କୁ ସଂଯତ କରିବା ବଧେୟ । ଶିବଙ୍କ ପରିବାରର ଆଦର୍ଶ ଆଜକାଲର ଯୁଗ ପାଇଁ ଏକ ଆହ୍ୱାନ, ଭାରତୀୟ ଆର୍ଯ୍ୟ ସଂସ୍କୃତିର ଏକ ସାର୍ଥକ ରୂପାୟନ । ସିଂହ, ବୃଷଭ, ମୟୁର ମୂଷିକଙ୍କ ଏକତ୍ର ଅବସ୍ଥାନ ଭାରତୀୟ ଶ୍ରୀମୂର୍ତ୍ତି ସହାବସ୍ଥାନ ନୀତିର ପରିପୋଷକ । ନଜେ ଶିବ ନରାଡ଼ମ୍ବର ଏକ ମୂର୍ତ୍ତିମାନ ପ୍ରତୀକ ।

ସେହି ପୁଣ୍ୟ ତିଥି ମହାଶିବ ରାତ୍ର ଆଜ ସମୁପାଗତ । ଏକାମ୍ରକାନନର ଲିଙ୍ଗରାଜ, ପୁରୀର ଲୋକନାଥ, କଟକର ଅମରେଶ୍ୱର ଚନ୍ଦ୍ରେଶ୍ୱର, ଶରଣକୂଳରେ ଲଡ଼ୁବାବା, ଢେଙ୍କାନାଳର କପିଳାସ, ବାଲେଶ୍ୱରର ଲିଙ୍ଗଳେଶ୍ୱର, ଭଦ୍ରକସ୍ଥ ଆରେଡ଼ିର ଆଖଣ୍ଡଳମଣି, ଆଠଗଡ଼ର ସର୍ବେଶ୍ୱର, ପଟିଆର ଲକ୍ଷେଶ୍ୱର ମହାଦେବଙ୍କ ମନ୍ଦିରରେ ଓ ଉତ୍କଳର ଅନ୍ୟାନ୍ୟ ଶୈବପୀଠରେ ସମବେତ ସହସ୍ର ନରନାରୀଙ୍କ କଣ୍ଠରେ କଣ୍ଠ ମିଶାଇ ଶିବଙ୍କ ଗୋଟିଏ 'ଶିବତତ୍ତ୍ୱସାର'ର ନମସ୍କାର ମନ୍ତ୍ର ଦ୍ୱାରା ଏ ପ୍ରବନ୍ଧର ଉପସଂହାର କରୁଛି ।

ମୃଡ଼ାମୀନାଥ ମେ ଦର୍ପାଣ୍ୟପରାଧାନ୍ୟ-ନେକଧା
କ୍ଷମସ୍ୱେତ ପ୍ରଣାମଂ ମେ ଗୃହାଣାଷ୍ଟାଙ୍ଗ-ସଂଯୁକ୍ତା

ହିରଣ୍ୟଗର୍ଭ

ଲୋକେଶ ହେମରାଜ ବସୁବସୋ ଅନନ୍ତପୁଣ୍ୟ ଫଳଦ ତପଃ ଶାନ୍ତିଂ ପ୍ରଯଚ୍ଛ ମେ ।

'ହେ ପାର୍ବତୀପତି ! ମୋର ଶତ ତଥା ବହୁବିଧ ଅପରାଧକୁ କ୍ଷମାକର, ମୋର ସାଷ୍ଟାଙ୍ଗ ପ୍ରଣିପାତକୁ ଗ୍ରହଣ କର, ହେ ହିରଣ୍ୟଗର୍ଭ । ଲୋକେଶ ! ହେମରାଜ ! ବସୁବସୋ ! ହେ ଅନନ୍ତପୁଣ୍ୟଫଳଦ ମୋତେ ଶାନ୍ତି ପ୍ରଦାନ କର ।



# ଦୋଳ ଆସିଲାଣି

**ଆମ୍ର**, ମଞ୍ଜରୀରେ ପୁଲକ ଖେଳାଇ, ମନ୍ଦ ମଳୟକୁ ଛନ୍ଦ ଚପଳ କରି, କୁସୁମ ଗନ୍ଧରେ ତନୁ ମନକୁ ଅନ୍ଧକରି ଫଗୁ ଫଗୁଣର ସ୍ମାରକ ଅବିର-ବାନା ଉଡ଼ାଇ ଦୋଳ ଆସିଲାଣି । ଚତୁର୍ଦ୍ଦିଗରେ ଏବେ ବାସନ୍ତିକ ବୈଭବ ବଞ୍ଚି ହୋଇଗଲାଣି । ପ୍ରକୃତି ଆଜି ଉନ୍ମନା, କବି କଣ୍ଠ ଆଜି ମୁଖର, ଭାବୁକ ଏବେ ଭାଷା ପାଗଳ । ପାଦପ ବଲ୍ଲରୀରେ ନବଯୌବନ ଲାଗିଲାଣି, କୁରୁବେଲି ଭ୍ରମର ଡାକିଲାଣି । ବସନ୍ତ ରାଜା ଆସୁଛି । କୁସୁମ ସେବାକାରୀ ରୂପେ ଫଗୁ ପରି ପରାଗରେଣୁ ଉଡ଼ାଉଛି । କମଳିନୀ ଭୃଙ୍ଗଧ୍ୱନି ଛଳରେ ହୁଳହୁଳି ଦେଲାଣି । ନାଗେଶ୍ୱରଫୁଲ ବସନ୍ତରାଜା ପାଇଁ ଛତ୍ରଧାରୀ ବେଶ ଧରିଛି । ମଳୟପବନ ଯାହାର ପରିଚର, ପିକ ଯାହାର ଭୃତ୍ୟ, କେତକୀ ଯାହାର ଅସ୍ତ୍ର, ତାହାର ପୁଣି ଡର କାହାକୁ ? ଓଡ଼ିଆ କବିର କି ଚମତ୍କାର କଳ୍ପନା ! ରସରେ ରସାଇ, ହସରେ ହସାଇ ଜୀବଜଗତକୁ ସ୍ୱପ୍ନବିଭୋର କରି ଫଗୁଣ ଆସିଲାଣି । ଦୋଳ ଆସିଲାଣି ।

ଦୋଳ ପୂର୍ଣ୍ଣିମା । ବରଷେ ବାର ମାସରେ ସାର ଆଜି ଗୋଟିଏ ଦିନ ପରି । ବିଶେଷତଃ ଓଡ଼ିଶାର ପର୍ବ ରାଜ୍ୟର ଏ ମଉଡ଼ମଣି । ବର୍ଷକ ପାଇଁ କୋଠିଆ ତାର ଜୀବିକା ଆରମ୍ଭ କରେ । ବେତନଭୋଗୀ ଶ୍ରମିକ ବର୍ଷକ ପାଇଁ ଏହି ଦିନରୁ ତାର କର୍ମ ସଂସ୍ଥାନ ଯୋଗାଡ଼ କରେ । କୃଷି ବର୍ଷର ଏହିଠାରୁ ହିଁ ସାଧାରଣତଃ ମୂଳନ୍ୟାସ ହୁଏ । ଗାଁ ଗାଁରେ ଏବେ ଚହଳ । କୈବର୍ତ୍ତମାନେ ଆଗାମୀ ଚଇତି ନାଚ ପାଇଁ ପ୍ରସ୍ତୁତ ହେଲେଣି । ଗଉଡ଼ପୁଅ ଚଉଡ଼ପୁଅଣୀ ପୂର୍ବ ସ୍ମୃତିକୁ ଧରି ଦ୍ୱାରେ ଦ୍ୱାରେ ଗୀତବୋଲି ଆରମ୍ଭ କଲେଣି । ନାମ ସଂକୀର୍ତ୍ତନରେ ଗାଁ ଦାଣ୍ଡ ଉଚ୍ଛୁଳିଲାଣି । ନଦିଆ ନବଦ୍ୱୀପର ଚୈତନ୍ୟଙ୍କ ଜନ୍ମତିଥି ପାଳିତ ହେବାକୁ ବସିଲାଣି । ଦୋଳ ଆସିଲାଣି ।

ଗୋପାଳ ସମ୍ପ୍ରଦାୟ ଆଜି ସ୍ୱପ୍ନ ପାଗଳ । ଅଣ୍ଟାରେ ତାଙ୍କର କାଛୁଟା ପୁଣି ଘାଗୁଡ଼ି ହାତରେ ଲମ୍ବା ବାଡ଼ି । ମସ୍ତକରେ ଜାମୁଡାଳ

ହାତରେ ବଂଶୀ ପୁଣି ଝିଙ୍କାର ଗଦ ଗଦ ନାଦ—ସାଇଦାଣ୍ଡ ଉଚ୍ଛୁଳିଲାଣି । ସେ ବଂଶୀ ଯେ ସେ ବଂଶୀ ନୁହେଁ । ଖୋଦ୍ ଗୋପାଳଚନ୍ଦ୍ର କୃଷ୍ଣଙ୍କ ବଂଶୀ । ତାର ସପ୍ତରନ୍ଧ୍ରରେ ସପ୍ତସ୍ୱର ଉଚ୍ଛୁଳି ଉଠେ ।—

"ପ୍ରଥମ ରନ୍ଧ୍ରେ ବାଜିଲେ 'ରାଧାନାମ ଉଠେ ।
ଦ୍ୱିତୀୟ ରନ୍ଧ୍ରେ ବାଜିଲେ ମାଘ ଫୁଟି ଉଠେ ।
ତୃତୀୟ ରନ୍ଧ୍ରେ ବାଜିଲେ ପାଷାଣ ମିଳାଇ ।
ଚତୁର୍ଥ ରନ୍ଧ୍ରେ ବାଜିଲେ ଧେନୁ ତୃଣ ଖାଇ ।
ପଞ୍ଚମ ରନ୍ଧ୍ରେ ବାଜିଲେ ଯମୁନା ଷ୍ଟଳିତ ।
ଷଡ଼ରନ୍ଧ୍ରେ ଶୁଷ୍କତରୁ ହୁଏ ପଲ୍ଲବିତ ।
ସପ୍ତମ ରନ୍ଧ୍ରେ ପତିବ୍ରତା ମତିହରେ ।
ବଂଶୀବାନ-ଶୁଣି ଉନ୍ମୋହିତ ତ୍ରିପୁରେ ।"

୬ ଅଚ୍ୟୁତାନନ୍ଦଙ୍କର ଏ କଳ୍ପନା ଯୁଗେ ଯୁଗେ ବଂଶୀକୁ ଅମର କରି ରଖିଛି । ଗୋପାଳ ତରୁଣମାନେ ଲଉଡ଼ି ଖେଳରେ ବ୍ୟସ୍ତ । ବାଡ଼ି ବୁଲାଇବାରେ ଧୁରନ୍ଧର । ଏ ପୂର୍ବସ୍ମୃତି ଆଜି ହଜିଯିବାକୁ ବସି-ଲାଣି; କିନ୍ତୁ ପରମ୍ପରା ଗଡ଼ି ଚାଲିଛି । ଗୋପାଳ ପିଲା ବାଡ଼ି ବୁଲାଇ ବୁଲାଇ କହୁଛି—

—"ରେ ରେ ରେ ରାହାକୁ ରାହାଦେଇ, ବାହାକୁ ବାହାଦେଇ, ସେଇଗୋଡ଼ ସେଇଠି ଥିବ, ସେଇ ହାତ ସେଇଠି ଥିବ, ଅଣ୍ଟା ହଲାଇ ଛାତି ଫୁଲାଇ, ଆସିବୁ ମୋର ଭାଇ, ଯାକି ଯୁକ ହୋଇ, ରାଧାକୃଷ୍ଣ ନଟ୍ୟକେଳି କଦମ୍ବମୂଳେ ଭେଟ ।" (ଗୋପାଳଙ୍କ ଓଗାଳ) ପଲ୍ଲୀଭୂଇଁରେ ଚହଳ । ସମସ୍ତଙ୍କ ମନରେ ନୂଆ ଫଗୁଣ । ଦୋଳ ଆସିଲାଣି ।

ଫଗୁଣ ଏ-ମଧୁମାସ । ଚୈତ୍ର ଅଡ଼େ ମଧୁ ମହୋତ୍ସବର ପ୍ରାରମ୍ଭିକ ଆୟୋଜନ । ରାଧାକୃଷ୍ଣ ଆଜି ଦୋଳକୁ ଆସିବେ । ଗମ୍ଭୀରା ଛାଡ଼ିବେ । ବସନ୍ତ ରାସ ରଚିବେ । ଏ ପାପ ଆଖି ଦେଖିବ—ରାଧାକୃଷ୍ଣ-ଙ୍କର ଯୁଗଳ ମିଳନ । ଅନ୍ତର ବାଞ୍ଛା ବାଞ୍ଛା ହେବେ । ଭାବଥିଲି, ବୃନ୍ଦା-ବନରେ ଏ ବସନ୍ତରାସ ପ୍ରାଣବନ୍ତ ହୋଇଥିଲା । ଗୋପାଙ୍ଗନାମାନେ ଥିଲେ

ଏହାର ସୂତ୍ରଧର । 'ଝୁଲୁଅ ଗୋ ଝୁଲଣ ଦୋଳ'' ଗୀତ ଗାଇ ସମସ୍ତେ ଆତ୍ମହରା ହେଉଥିଲେ । ଆଜ ସେଇ ଦିନ ଆସିଲାଣି । ଶ୍ରୀ ଉଦ୍ଧବଚରଣ ପଟ୍ଟନାୟକ ଲେଖିଛନ୍ତି—ପୁରାଣରେ ଅଛି ।

—''ବୃନ୍ଦାବନରେ ଯମୁନାକୂଳରେ ପ୍ରେମମୟୀ ଭକ୍ତିମତୀ ଗୋପିକାମାନେ ଦୋଳପୂର୍ଣ୍ଣିମା ଦିନ ଶ୍ରୀକୃଷ୍ଣଙ୍କୁ କୁଞ୍ଜ ମଧ୍ୟରେ ଲତା ଦୋଳରେ ବସାଇ ପ୍ରେମରେ ଚର୍ଚ୍ଚରୀ ( ଗୃତେଶ୍ୱ ) ଖେଳିଥିଲେ । ସେ ଦିନ ଫଗୁଣ ପୂର୍ଣ୍ଣିମାର ଜ୍ୟୋତ୍ସ୍ନାବଧୌତ ରଜନୀ ହସି ଉଠିଥିଲା । ଗୋପିକା ଓ ଗୋପୀନାଥଙ୍କର ଅପୂର୍ବ ରସୋତ୍ସବରେ ଯତେ ଯେପରି ସେହି ଶୁଭ୍ରରଜନୀରେ ଋତୁ ରାଜ ବସନ୍ତ ଦେବରାଜ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ମଳୟସମୀର ଚାଳିତ ନବ ପଲ୍ଲବର ବ୍ୟଜନ ପକାଇ କୋକିଳ କଣ୍ଠରେ ବନ୍ଦନ ଗୀତିକା ଶୁଣାଇ ଓ ଉପରେ ପୂର୍ଣ୍ଣଚନ୍ଦ୍ର ରୂପକ ଶ୍ୱେତ ଛତ୍ର ଟେକି ରାଜ ଉପଚାରରେ ପରିଚର୍ଯ୍ୟା କରିଥିଲେ । ଏହାକୁ ବାସନ୍ତିକ ରାସ କୁହାଯାଏ ।'' ବାସ୍ତବିକ୍ ସେଇ ସ୍ମୃତି ଏବେ ମନେ ପଡ଼ୁଲାଣି । ଦୋଳ ଆସିଲାଣି ।

ଆଜ ଦୋଳପର୍ବ । ଗାଆଁ ଅବଧାନ କୋଟରଗତ ଆଖି ଉପରେ ଚଶମା ଲଗାଇ ନୂଆପାଞ୍ଜି ଖୋଲିଲାଣି । କୈଳାସ ଶିଖରାଧୀନ ହରଙ୍କୁ ପାର୍ବତୀ ପଚାରୁଛନ୍ତି ନବବର୍ଷ ଶୁଭାଶୁଭ । ଶଙ୍କର କହୁଛନ୍ତି—

''ଶୃଣୁ ଦେବ ! ପ୍ରବକ୍ଷ୍ୟାମି ନବପଞ୍ଜୀ ଶୁଭାଶୁଭଂ
ଯସ୍ୟ ଶ୍ରବଣ ମାତ୍ରେଣ ଦିବ୍ୟଜ୍ଞାନଂ ଲଭେନ୍ନରଃ ।''

( ଶିବମଙ୍ଗଳମନ୍ତ୍ର )

ତାଙ୍କ ତୁଣ୍ଡ ନିର୍ଗତ ବାଣୀହିଁ ଦିବ୍ୟଜ୍ଞାନ ପ୍ରଦାୟକ । ଏଣୁ ଓଡ଼ିଆର ସାମାଜିକ ଜୀବନରେ ପାଞ୍ଜିର ପ୍ରଭାବ ଗୁରୁତ୍ୱପୂର୍ଣ୍ଣ । ଓଡ଼ିଆଙ୍କର ଧର୍ମ ଜୀବନର ଏହା ନିୟାମକ । ଭଙ୍ଗାରୁଜା ଦୋଳ ମଣ୍ଡପ ଏବେ ସଜାହେଲାଣି । ଦୋଳ ଆସିଲାଣି ।

ମେଳନ ପଡ଼ିଆ ଏବେ ସଫା ହେଲାଣି । ଓଳକଣା, ଧର୍ମଶାଳା, ଯାଜପୁର, ବଳଙ୍ଗା, ବାଲିକାଟୀ, ହରିରାଜପୁର, ଗୋବିନ୍ଦପୁର, ବୈଷ୍ଣ,

ମାଡ଼ାଙ୍ଗା, ବୋଲଗଡ଼, ବାଣପୁର, ରଣପୁର, ବାଲେଶ୍ୱର, ଝଂଝାବଣିଆ ଓ କଳାପଥର ପ୍ରଭୃତି ସ୍ଥାନମାନଙ୍କରେ (ପାଞ୍ଜିମତେ) ମେଳନ ଯାତ୍ରାର ପ୍ରସ୍ତୁତି ଜାକ୍‌ଜମକରେ ଆରମ୍ଭ ହେଲଣି । ଦୋଳ ମହୋତ୍ସବ ନିକଟେଇଲାଣି । କେତେ ବାଣ ଫୁଟିବ । କେତେ ରୋଷଣୀ ହେବ । ମୃଦଙ୍ଗ, ଘଣ୍ଟା, ଘଣ୍ଟ, କାହାଳୀ ନାଦରେ ମେଳନ ପଡ଼ିଆ ମୁଖରିତ ହେବ । ବିକାକିଣା ଧୂମଧାମ ଚାଲିବ । ଗୁଡ଼ିଆପୁଅ ଦିନ ଗଣିଲାଣି । ଗାଁ ପାଟବ ମେଳନ ପଡ଼ିଆରେ ଜାଗା ବାଛିଲାଣି । ଗାଁ ମେଳନ ଦେଖିଯିବାକୁ ଶାଶୁଘରେ ଥିବା ଝିଅ ପାଖକୁ ମାଆ ଖବର ପଠାଇଲାଣି । ଦୋଳ ଆସିଲାଣି ।

ଦୋଳପର୍ବ । ଓଡ଼ିଆ ଜନଜୀବନର ଏକ ମୂର୍ତ୍ତିମନ୍ତ ଆଶା ଓ ଆନନ୍ଦର ପ୍ରତୀକ । ନିଜେ ମହାପ୍ରଭୁ ଆସିବେ ଆମ ଦୁଆରକୁ ଅତିଥି ହୋଇ । ଶ୍ରୀ ପଦ୍ମଚରଣ ପଟ୍ଟନାୟକଙ୍କ ଭାଷାରେ—

"ସବୁ ଦିନ ସିନା ଲୋକ ଢାଁ ଦର୍ଶନ କରିବାକୁ ମନ୍ଦିରକୁ ଯା'ନ୍ତି, କିନ୍ତୁ ଏହି ଦୋଳଯାତ୍ରା ସମୟରେ ଢାଁ ବିମାନରେ ବସି ଲୋକଙ୍କ ଦୁଆରକୁ ଆସନ୍ତି ।" କି ସୁନ୍ଦର ଏ ବ୍ୟବସ୍ଥା । ଭକ୍ତପ୍ରାଣ ଓଡ଼ିଆ ଜୀବନରେ ଏ ଏକ ଅହେତୁକ ଉଲ୍ଲାସ । ମହାପ୍ରଭୁଙ୍କଠାରେ 'ଚଣା' ଭୋଗ ଲାଗେ ସେ ପ୍ରସାଦ ମଧ୍ୟ ଖାଉ । "ଏହା ଖାଇବା ଦ୍ୱାରା ମଣିଷ ଦୁର୍ବାର କାମ ଶକ୍ତିର ପ୍ରଖରତାକୁ ରୋକିପାରେ" ବୋଲି କେତେକ ମତ ବ୍ୟକ୍ତ କରନ୍ତି । ଯା'ହେଉ ଏହି ଚଣା-ଚର୍ବଣରେ ଲୋକେ ସଂଯମ ଶିକ୍ଷା ପାଆନ୍ତି । ସେହି ଚଣାଖିଆ ବେଳ ହେଲାଣି । ଦୋଳ ଆସିଲାଣି ।

ଦୋଳ ପୂର୍ଣ୍ଣିମାର ଫଗୁ ବା ଅବିର ଖେଳ ଏକ ବିଶେଷତ୍ୱ । ଏଣୁ ଏହା ଫଗୁଲ ଫଗୁଣ । ଫଗୁ ବସନ୍ତ ରୋଗର ଏକ ପ୍ରତିଷେଧକ । ସମାଜର ଏହା ଏକ ସୁନ୍ଦର ବିଧାନ । ନିଜେ ଅବିର ବୋଳି ରଙ୍ଗରସରେ ଅନ୍ୟ ଦେହରେ ନାଲିପାଣି ବା ଅବିର ବୋଳିବାରେ ସୁନ୍ଦର ସ୍ୱାସ୍ଥ୍ୟରକ୍ଷା ବିଧି ପ୍ରଚ୍ଛନ୍ନ । ଫଗୁଖେଳ ପ୍ରାଣକୁ ଉତ୍ତଳା ଉନ୍ମାଦ କରେ, ମର୍ମକୁ ଉଦାସ କରେ । ଫଗୁଣର ହୋଲି ଖେଳ ରୂପକୁ ସାଗରରେ ହଜାଇ ଦେବାକୁ ମନ ହୁଏ । ଆନନ୍ଦବାଣୀ କବି ସ୍ୱପ୍ନ ବିଭୋର ହୋଇ ଗାଏ—

"ଫଗୁଣର ହୋଲିଖେଳ ଗୀତ ହେ,
ଆସିଛୁ ଧଇଁରେ ପ୍ରାଣ ମିତ ହେ
ଆଜ ଖାଲି ହସିବାର ଭୁଲିବାର,
ଜୋଛନାରେ ନର୍ତ୍ତନ କରିବାର
ପୋଛ ପୋଛ ନୟନର ଲୁହଧାର,
ବନ୍ଧୁ ହୋଇଛୁ ଉଲ୍ଲସିତ ହେ
ମୋ ମରମ କଥା ସରକତ ହେ,
ଫଗୁଣ ଜୋଛନା ତଳେ ମିତ ହେ ।"

(ଫଗୁଣ ବଂଶୀ-କାଳନ୍ଦୀଚରଣ)

ରୂପସାମ୍ମୀ ରାଧାନାଥଙ୍କ 'ଦୋଳ' ଚଉଁଶାର ଏକ ରସବନ୍ତ ଆଲେଖ୍ୟ ମିଳେ 'ପାର୍ବଣ' ରେ—

—"ଏହା ପରେ ପୁଣି ଦୋଳ ଚଉଁଶାରର ଲାଗିଛୁ ଆଜ ଗହଳ ।

ଫଗୁ ବର୍ଣ୍ଣୋଦକେ
ସର୍ବାଙ୍ଗରଞ୍ଜିତ ବିହରନ୍ତ ଯୁବାଦଳ,
କାଳାତପ ପୁଞ୍ଜ ପ୍ରାୟେ ଫଗୁରାଶି
ଶୋଭେ ପ୍ରତି ବିପଣିରେ
ପ୍ରତି ଯୁବା ହସ୍ତେ , ଶୃଙ୍ଗକୋଷମାନ
ପରିପୂର୍ଣ୍ଣ ବର୍ଣ୍ଣମାରେ ।"

ସେଇ ଚେଁଶା ସମୟ ଏବେ ଆଗତ ପ୍ରାୟ । ରଙ୍ଗରସର ମଳୟରେ ଲୋକଙ୍କୁ ଉଡ଼ାଇ ଦେବ । ଅର୍ଚ୍ଚନା ଓ ଦେବ ଭକ୍ତିରେ ଜନ ମାନସକୁ ବୁଡ଼ାଇ, ସ୍ୱାସ୍ଥ୍ୟରକ୍ଷାର ବିଧି ବିଧାନରେ ଜଡ଼ାଇ ଓ ସମସ୍ତଙ୍କ ତନୁ ମନକୁ ଅପୂରନ୍ତ ପୁଲକରେ ସଢ଼ାଇ ଦୋଳ ଆସିଲାଣି ।



[ ସମାଜ ଓ ପ୍ରଜାତନ୍ତ୍ରରେ ୨୨-୩-୭୪ ]

# ଫଗୁଣ ମାସରେ ଦୋଳଗୋବିନ୍ଦ

ଧରଣୀ ବକ୍ଷରେ ଯୌବନର କାଉଁଶ କାଠି ଛୁଆଁଇ, ପ୍ରକୃତିକୁ ଉନ୍ମନା କରି, ମଳୟ ଦୋଳରେ ଝୁଲି ଝୁଲି ଫଗୁଣ ଆସେ । କୋଇଲି-କଣ୍ଠ ସଫାକରି ସ୍ୱାଗତିକା ଡାକେ । ଚୂତମୁକୁଳ ମୁକୁଳିତ ବୈଭବରେ ଫଗୁଣକୁ ଅଭିନନ୍ଦନ ଜଣାଏ । ଅଶୋକ, ଅରବିନ୍ଦ, ଚୂତ, ନବମଲ୍ଲିକା ଓ ନୀଳୋତ୍ପଳ ସେମାନଙ୍କର ବର୍ଣ୍ଣାଢ଼୍ୟ ମଞ୍ଚ ଉପରକୁ ମୁଖ୍ୟଅତିଥି ଫଗୁଣକୁ ପାଛୋଟି ନିଅନ୍ତି । ଅଭିବାଦନ ମଞ୍ଚ ଉପରେ ଅତିଥି ଶୁଣନ୍ତି ଅଫୁରନ୍ତ ସୁଷମାର ରଙ୍ଗୀନ ରାଜ୍ୟରେ କେବଳ ତାଙ୍କର ଜୟ ଜୟ ଧ୍ୱନି । ବସନ୍ତବାଉଳା ମଳୟ, ଫୁଲ ପ୍ରାଣପ୍ରିୟ ମଧୁପ, ମନଭୁଲାଣିଆ ଜହ୍ନରାତି, ସକଳ ମନ୍ମଥଙ୍କର ପ ଞ୍ଚ ଶ ର—ସମସ୍ତେ ଅର୍ଘ୍ୟ ଢାଳନ୍ତି । ଫଗୁଣ ଅତିଥି ହୁଏ । ସେଇ ଫଗୁବୋଳା ଫଗୁଣର ଗୁଣକୀର୍ତ୍ତନ ସହ କେତୋଟି ମଧୁଝରା ସ୍ମୃତିର ପରଦା ଭିତରକୁ ଏ କ୍ଷୁଦ୍ର ପ୍ରବନ୍ଧ ମାଧ୍ୟମରେ ଫଗୁଣପ୍ରେମୀ ରସିକ ସାହିତ୍ୟିକମାନଙ୍କୁ କିଛିକ୍ଷଣ ପାଇଁ ନେଇ ଯାଉଛି ।

ଆଜି ପରି ସେଦିନ ମଧ୍ୟ ଏଇ ଫଗୁଣ ବୃନ୍ଦାବନକୁ ଆସିଥିଲା । ମାଳତୀ, ଯୂଇ, ଜାଇ, ମଲ୍ଲୀ, ଅଶୋକ ବକ୍ଷରେ ନୂଆ ସ୍ପନ୍ଦନ ଜାଗିଥିଲା । ନୀଳୋତ୍ପଳର ଅକଳନ କାନ୍ତି, 'ସୁନାରି'ର ସୁନାରି ପରି ଅଙ୍ଗଭୂଷଣ, ପାଟଳୀର ରଙ୍ଗ ଶାଢ଼ୀ ପରିଧାନ, ପଳାଶର ଅନଙ୍ଗ ବେଶସଜ୍ଜା ଶ୍ରୀବୃନ୍ଦାବନକୁ କରିଥିଲା ମଧୁଝରା । ପ୍ରଫୁଲ୍ଲିତ ନାଗେଶ୍ୱର ଶ୍ୱେତଛତ୍ର ଟାଣି ଦୂରାଗତ ଫଗୁଣ ଦର୍ଶନ ଆଶାୟୀ ଅତିଥିଙ୍କୁ ଆସନ ଦେଇଥିଲା । ମଧୁଲିଟ୍ ନାଗରା ବଜାଇ, କୋଇଲି କାହାଳୀ ଫୁଙ୍କି, ଝିଙ୍କାରି ହୁଳହୁଳି ଦେଇ ଫଗୁଣର ମଧୁ ଆଗମନୀ ଡାକିଥିଲେ । ଚତୁର୍ଦ୍ଦିଗ ହୋଇଥିଲା ରସସିକ୍ତ, ରସମୟ । ବୃନ୍ଦାବନର କୋଣ ଅନୁକୋଣରେ ମଧୁର ରସ ସଞ୍ଚରି ଯାଇଥିଲା । ସ୍ୱର୍ଗତ ପଣ୍ଡିତ ଶ୍ରୀଚନ୍ଦନଙ୍କ ଲେଖନୀନିଃସୃତ କେତୋଟି ପଦ ସ୍ୱତଃ ଏଠି ସ୍ମୃତିକୁ ଆସେ ।

ମଳୟ ଅଚଳ ସମ୍ପତ୍ତି ପ୍ରଚଳ
ଦକ୍ଷିଣା ପବନ ବହିଲା
ଚତୁଲତାସବ ନୂତନ ପଲ୍ଲବ
ରସାଳ ମୁକୁଳ ଧଇଲା
ନବ ବସନ୍ତ ସମୟ,
ନବ ବୃନ୍ଦାବନ ରସମୟ ହେ ।
ନବ ମାଧବିକା ମଧୁପଗାହିକା
ମଲ୍ଲୀବଲ୍ଲୀ ଫୁଲେ ଭରିଲା
ନଆଣ୍ଣି କମଳ ମାଳ ଉତପଳ
ମନ୍ଦ ଗନ୍ଧ-ବହ ବହିଲା
ସକଳ ପରାଗ ନାଶିୟା ପଳାଶ
କୁସୁମେ ଉଲ୍ଲାସ ହଇଲା
ନିକୁଞ୍ଜ ଭୁବନେ ରମ୍ୟ ଚୂତବନେ
କୋକିଳ ପଞ୍ଚମ ଗାଇଲା
ନବ ବସନ୍ତ ସମୟ,
ନବ ବୃନ୍ଦାବନ ରସମୟ ହେ ।

( ବସନ୍ତରାସ ପୃଷ୍ଠା ୯ )

ରସରାଜ କେଳିକଦମ୍ବ ମୂଳେ ଆରମ୍ଭ କରିଥିଲେ ରାସକ୍ରୀଡ଼ା । ଯମୁନାର ଜଳରେ ଥିଲା ସେଦିନ ମାଦକତା । ଶ୍ରୀକୃଷ୍ଣ ଅଙ୍ଗ-ଲାଳସୀ ଗୋ ପି କା ବୃ ନ୍ଦ ଙ୍କ ପ୍ରାଣରେ ସେଦିନ ଥିଲା ଅଦମ୍ୟ ମିଳନଲାଳସା । ତାଙ୍କୁସବୁ ପାଗଳମା କଲା କିଏ ? ଚୂତମୁକୁଳ । କୋକିଳ କାକଳୀ । ଫଗୁଣ ଜହ୍ନ । ନୀଳମଣି କହ୍ନେଇର ତ୍ରିଭଙ୍ଗୀ ନାଚ, ଶିଖଣ୍ଡୀ ଚୂଳ ? ନା ନା ନା, ତେବେ ସେ କିଏ ? ଅଷ୍ଟସଖୀରୁ ଜଣେ ଉତ୍ତର ଦେଉଛି, 'ହେ ପ୍ରାଣ ସଜନ । ଏ ସାପଖିଆ ମଳୟ ପବନକୁ ମନେରଖ ।'

ମଳୟ ପର୍ବତରୁ ଏ ଜନ୍ମଲଭି ସର୍ପ ଭକ୍ଷଣକୁ ଡରି ଗୋବର୍ଦ୍ଧନ ଗିରିପାଖେ ଏ ଝୁଣ୍ଟି ପଡ଼ିଲା । କ୍ଳାନ୍ତ ମେଣ୍ଟାଇବାକୁ ଯମୁନାକୁ ଗଲା । ସେଠି ଚେତନା ପାଇ ଲବଙ୍ଗଲତା ଓ ଚୂତ ମୁକୁଳ ସଂସ୍ପର୍ଶରେ ଆସି ପିକ ଭୃଙ୍ଗ ସହ ଯୁକ୍ତ ହୋଇ ଏବେ କୃଷ୍ଣ ସହ ସାଥୀ ହୋଇଛି । କେତୋଟି ପଦ ଦେଖନ୍ତୁ—

ଆଉ ଏକ କଥା ଶୁନ ପ୍ରାନେର ସଜନୀ
ମଳୟ ପବନ୍ଙ୍କୁ ମନ୍ଦ ବାତ ଝୀଲ ଧମା ଗୋ
ଭୁଜଙ୍ଗ ଖାବାର ଡରେ ଲୁକାୟ୍ଯା ଲୁକାୟ୍ଯା
ଗୋବର୍ଦ୍ଧନ ଡଗ୍ରମାଙ୍ଗେ ପଡ଼ିଲ ଝୁଣ୍ଟିଆ ରେ
ଝାମ ଯାୟ୍ଯା କ୍ଲେଶଭରେ ଯମୁନା କେ ଗେଲ
ତାତେ ମଲ୍ଲୀ ମନ୍ଦବାତ ଚେତା ପାଇଲ ରେ ।

× × ×

ସେଜ୍ଞ ସାପଖିଆ ବାତ ଆଛେ କୃଷ୍ଣ ସଙ୍ଗେ
ତାକେ ଲୟ୍ଯା ନାଚ୍ଚ ମାଝେ ନାଚେ ନବରଙ୍ଗେ ।

( ବସନ୍ତରସ—ପୃ ୧୮ )

ଏହି ବସନ୍ତରସର ରସେଶ୍ୱର ସେଇ ଲୀଳାମୟ ଶ୍ରୀକୃଷ୍ଣ ପ୍ରାଣାଧିକ ରାଧିକା ସହ ଗୋପୀଙ୍କ ଗହଣରେ ଫଗୁଖେଳରେ ମାତିଥିଲେ । ଅବିରତେ ଅବିରତ ଅବିର ହିଡ଼ାରେ ବୃକ୍ଷ, ଲତା, ଯମୁନାବନ୍ଧ, କଦମ୍ବତଳ ସବୁ ନାଲି ହୋଇଯାଇଥିଲା । ଶ୍ରୀ ବୃନ୍ଦାବନ ସିନ୍ଦୂରିତ । ପଶୁ, ପକ୍ଷୀ, ହରିଣ, ହରିଣୀ ସମସ୍ତେ ଏକାକାର, ନାଲି ଗୁଲାଲ କୃଷ୍ଣଚନ୍ଦ୍ର ଫଗୁଣ ପୂର୍ଣ୍ଣିମାରେ ଦୋଳରେ ରମିଲେ । ନାମ ହେଲା ଦୋଳଗୋବିନ୍ଦ । ଦୋଳରେ ଦୋଳଗୋବିନ୍ଦ, ଚାପରେ ମଧୁସୂଦନ ଓ ରଥରେ ବାମନଙ୍କୁ ଦେଖିଲେ ପୁନର୍ଜନ୍ମ ହୁଏ ନାହିଁ ବୋଲି ସଂସ୍କୃତ କବି ଲେଖିଛନ୍ତି

'ଦୋଳେ ତ ଦୋଳ ଗୋବିନ୍ଦଂ
ଚାପେ ତ ମଧୁସୂଦନଂ
ରଥେ ତୁ ବାମନଂ ଦୃଷ୍ଟ୍ୱା
ପୁନର୍ଜନ୍ମ ନ ବିଦ୍ୟତେ' ।

ଫଗୁଣ ମାସରେ ଫଗୁଖେଳ ସହ ଯୁଗଯୁଗାନ୍ତର ଏ ସ୍ମୃତି ସ୍ୱତଃ ମନକୁ ଆସେ । ଅଚ୍ୟୁତାନନ୍ଦ ଦାସ ମଧ୍ୟ ତାଙ୍କ ବାରମାସୀ କୋଇଲିରେ ଲେଖିଛନ୍ତି—

"ଫଗୁଣ ମାସରେ ଦୋଳଗୋବିନ୍ଦ
ଫଗୁ ଖେଳୁଛନ୍ତି ପରମାନନ୍ଦ
ଅବିର ସଙ୍ଗେ ଝାଲେଇ ମିଶାଇ
ଫଗୁ ଖେଳୁଛନ୍ତି ଯଦୁ ଗୋସେଇଁ,
ମୋ କାହ୍ନୁରେ"

ଫଗୁଳ ଏ, 'ଫଗୁଣ' ଉପାଧ ଏହାର ପ୍ରାପ୍ୟ । ଶ୍ରୀକୃଷ୍ଣଙ୍କ ଏହି ଦୋଳାରୋହଣ ଉତ୍ସବ ଫଲ୍‌ଗୁ ଉତ୍ସବ ନାମରେ ନାମିତ ଏବଂ ଯାହା ନେତ୍ରପଥରେ ଏହା ପଡ଼ିଛି ସେ ଧନ୍ୟ ଓ ଦେବଲୋକର ଯାତ୍ରୀ ବୋଲି ପ୍ରାଚୀନ ପୁରାଣ ପୃଷ୍ଠାରେ ଲିପିବଦ୍ଧ ହୋଇଛି । ବ୍ରହ୍ମପୁରାଣରେ ଅଛି—

'ନରେ ଦୋଳାଗତଂ ଦୃଷ୍ଟ୍ୱା
ଗୋବିନ୍ଦଂ ତ୍ରିଦଶାର୍ଚ୍ଚିତଂ
ଫାଲ୍‌ଗୁନ୍ୟଂ ସଂଯତୋ ଭୂତ୍ୱା
ଗୋବିନ୍ଦସ୍ୟ ପୁରଂ ବ୍ରଜେତ୍'

ପୁନଶ୍ଚ ଶତାନନ୍ଦ ସଂହିତାରେ

ଉଲ୍ଲେଖ ଅଛି:—

'ଫାଲଗୁନେ ପୌର୍ଣ୍ଣମାସ୍ୟାଂ ତୁ
କାର୍ଯ୍ୟଃ ଫଲ୍‌ଗୁ ମହୋତ୍ସବଃ
ଗୋବିନ୍ଦଃ ଦୋଳସ୍ଥୋ
କ୍ରୀଡ଼େତ୍ରହ ସସ୍ତ ଗତେ ରବୌ'

ଏଣୁ ଫାଲ୍‌ଗୁନ ପୌର୍ଣ୍ଣମାସୀ ତିଥିରେ ସେ ଫଗୁଖେଳ ସହ ଗୋବିନ୍ଦଙ୍କୁ ଦୋଳରେ ଝୁଲାଇବା ଏକାନ୍ତ କରଣୀୟ ଏହା ଶାସ୍ତ୍ରସମ୍ମତ । ଦଶମୀ ପର ଏକାଦଶୀଠାରୁ ଆରମ୍ଭ କରି ପୂର୍ଣ୍ଣିମା ପର୍ଯ୍ୟନ୍ତ କପୂର ଏବଂ ଫଗୁଖେଳ ହୁଏ, ଚତୁର୍ବିଧ ଫଲ୍‌ଗୁ କପଡ଼ି ବ୍ୟବହାର୍ଯ୍ୟ, ବିଶେଷତଃ ହରିଦ୍ରା ରଙ୍ଗର ପ୍ରାଧାନ୍ୟ କପୂର ରଙ୍ଗ ମାଧୁର୍ଯ୍ୟ ବଢ଼ାଇ ଦିଏ ଓ ଶ୍ରୀକୃଷ୍ଣଙ୍କ ପ୍ରୀତ୍ୟର୍ଥେ ଏହା ବିଧିଯୁକ୍ତ ହୁଏ, ତାହାର ଏକ ସୁନ୍ଦର ବର୍ଣ୍ଣନା ପଦ୍ମପୁରାଣର ପାତାଳ ଖଣ୍ଡରେ ଦୋଳଯାତ୍ରା ସମ୍ବନ୍ଧରେ ବର୍ଣ୍ଣିତ ହୋଇଛି ।

"ବିଂଶତିତଃ କଳିଯୁଗେ
ଦୋଳୋତ୍ସବୋବିଧୀୟତେ
ଫାଲ୍‌ଗୁନେ ଚ ଚତୁର୍ଦ୍ଦଶ୍ୟାମଷ୍ଟମେ
ଯାମ ସଞ୍ଜ୍ୟକେ
ଅଥବା ପୌର୍ଣ୍ଣମାସ୍ୟାଂ ତୁ
ପ୍ରତିପତ୍ ସନ୍ଧି ସନ୍ନିଧୌ

ପୂଜୟେତ୍ ବଧିବତ୍ ଭକ୍ତ୍ୟା
ଫଲ୍ଗୁ ଚୂର୍ଣ୍ଣୈଃ ଚତୁର୍ବିଧୈଃ
ସିତ ରକ୍ତ ଗୌର ପୀତୈ
କର୍ପୂରାଢ ସମିଶ୍ରିତୈଃ
ହରାଦ୍ରାର୍ଷର ଯୋଗାତ ରଙ୍ଗୈଃ
ରମ୍ୟୈ ମନୋହରୈଃ”

ଫଗୁଣରେ ଫଗୁଖେଳ କାହିଁକ ହୁଏ ଓ କୃଷ୍ଣଙ୍କୁ ଦୋଳଗୋବିନ୍ଦ ନାମରେ ଯଥାର୍ଥତା ଦର୍ଶାଇବାକୁ ଯାଇ ଅଚ୍ୟୁତାନନ୍ଦ ଦାସ ତାଙ୍କର ‘ଗୋପାଳଙ୍କ ଓଗାଳ’ ୨ୟ ଭାଗରେ ଏକ ଉତ୍ତର ଦେଇଛନ୍ତି—

‘ଶୁଣ ଲଜଡ଼ଆ ଭାଇ କହୁଛି ଉତ୍ତର
ପୂର୍ବଜନ୍ମେ ରାଧିକା ଯେ
ମାଗିଥିଲେ ବର
ଫଗୁଣ ମାସେ ତପସ୍ୟା
ହୋଇଲାକ ପୂର୍ଣ୍ଣ
ପୁଷ୍ପମନେବକଣି ହସନ୍ତ ରଙ୍ଗବର୍ଣ୍ଣ
ଚନ୍ଦ୍ରମୁଖୀ ବୋଇଲେ ହେ
ଶୁଣ ନାରାୟଣ
ଦ୍ୱାପରେ ଯାହା ହୋଇବ
କହିଲେ ଆପଣ
ଯେତେବେଳେ ଆମ୍ଭେ
ଗୋପପୁରେ ରହୁଥିବା
କହୁଅଛୁ ବୃନ୍ଦାବନେ
କେଳ ଆଚରିବା
ଏହି ଫଗୁଣରେ
ଦୋଳଗୋବିନ୍ଦ ବୋଲାଇ
ଫଗୁ ଖେଳୁଥିବା ଆମ୍ଭେ
ଚଉଦୋଳେ ରହି”

( ଗୋ: ଓଗାଳ ପୃ୨୬ )

ଫଗୁଣର ଏ ଫଗୁବୋଳା ମୂହୂର୍ତ୍ତରେ ଦୋଳଗୋବିନ୍ଦ ଦୋଳକୁ ଆସୁଛନ୍ତି । ଅମାନଆ ଏ ଫଗୁଣ, ପ୍ରତ୍ୟେକ ରସଘନ ମୁହୂର୍ତ୍ତରେ ଭରି ଦେଇଛି ମାଦକତା । ଗୋପାଳଙ୍କ କଣ୍ଠ ଉଚ୍ଛୁଳା ଲଉଡ଼ି ଖେଳରେ, ଶଙ୍ଖ ବାଦନରେ, ଭୁଷାର ଘନ ଘନ କମ୍ପନରେ ଫଗୁଣ ଆଜି ପଥହରା । 'ଦଶହରାରେ କ୍ଷତ୍ରିୟ, ଚଇତ ପୂନେଇରେ କୈବର୍ତ୍ତମାନେ ମତୁଆଲା ହେବାପରି ଆଜି ଫଗୁଣରେ ଗୋପାଳମାନେ ଉନ୍ମତ୍ତ । କୃଷ୍ଣ ଗୋପାଳଙ୍କର ପୁଣ୍ୟ ଉତ୍ସବ, ବରଷକେ ଥରେ ଆସିଛି । ତାଙ୍କ ହାତରେ ଥିବା ଶଙ୍ଖ ସାମାନ୍ୟ ନୁହେଁ । ବେଦରକ୍ଷେ ଶଙ୍ଖାସୁର ବଧ ପରେ ସ୍ୱୟଂ ହରି ଏହାକୁ ପ୍ରଦାନ କରିଛନ୍ତି । ଏହାଛଡା ସେମାନଙ୍କ ଯୁକ୍ତି ହେଉଛି—

କାଛାଟା ଦେଲେ ପାବନ    ଗଣେଶ ଘାଗୁଡ଼ି
ମହାଦେବ ଦେଲେ ସେ    ଭୃମ୍ଭକ୍କୁ ଲମ୍ବବାଡ଼ି
ଶିକା ବାହୁଙ୍ଗୀ ପାର୍ବତୀ    ଦେଲେ ତୋଷହୋଇ
ମଙ୍ଗଳ ନମନ୍ତେ ଜାମୁଡାଳ    ଥାଉଁ ବନ୍ଧ
ବାରଗୁଣେ ଖେଳୁ ଆମ୍ଭେ    ଷୋଳଗୁଣେ ନୃତ୍ୟ
ଗୋଷ୍ଠୀରେ ବସିଲେ କାନ୍ତୁ    ଶ୍ରୀ ଗୋପାଳ ମନ୍ତ୍ର

( ଗୋ: ଓଗାଳ, ୧ମ ଖଣ୍ଡ )

ଆଜ ସମସ୍ତଙ୍କ ମନବୃନ୍ଦାବନ ରସମୟ । ମଧୁମାସ ଚୈତ୍ର ଆଗେଇ ଆସୁଛି । ନବବସନ୍ତର ଏ ଆୟୁମାରମ୍ଭ ମାତ୍ର । ଆଜର ଏ ଫଗୁଳ ଫଗୁଣ ଓ ତାହାର ପୃଷ୍ଠପଟ୍ଟ ରସରାଜ ନାୟକ ଏହିପରି ରସିକ ସାହିତ୍ୟିକଙ୍କ ମନଗହନରେ ନିତ୍ୟ ବୃନ୍ଦାବନ ଲୀଳା ସୃଷ୍ଟି କରୁଥାନ୍ତୁ, ଏତିକି କାମନା ।



# ଦୋଳୋତ୍ସବ 'ହୋଲି'

ବସନ୍ତ ଉତ୍ସବ ହୋଲି ଏକ ଆନନ୍ଦମୁଖର ପର୍ବ । ଏହା ଭାରତର ଅନ୍ୟତମ ଜାତୀୟ ପର୍ବ । ଏହାର ପ୍ରାଚୀନତା ମୂଳରେ ପୌରାଣିକତା ଯେପରି ଚମତ୍କପ୍ରଦ, ଐତିହାସିକତା ମଧ୍ୟ ତଦନୁରୂପ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରାଚୀନ ପଦ୍ମପୁରାଣ, ସ୍କନ୍ଦପୁରାଣ, ହରିଭକ୍ତି ବିଳାସ, ଲିଙ୍ଗପୁରାଣ, ଶତାନନ୍ଦ ସଂଗ୍ରହ, ବ୍ରହ୍ମାଣ୍ଡ ପୁରାଣ ପ୍ରଭୃତିରେ ବସନ୍ତ ଉତ୍ସବର ବହୁଳ ବର୍ଣ୍ଣନା ଯେପରି ଦେଖାଯାଏ, ଭାରତ ଭ୍ରମଣରେ ଆସିଥିବା ବିଦେଶୀ ପରିବ୍ରାଜକ ତଥା ଐତିହାସିକଙ୍କ ଦୃଷ୍ଟିରେ ଏହି ଦୋଳୋତ୍ସବ ହୋଲିର ପୁଙ୍ଖାନୁପୁଙ୍ଖ ବିବରଣୀ ମଧ୍ୟ ପାଠକମାନଙ୍କ ଦୃଷ୍ଟିକୁ ଆସେ । ଉକ୍ତ ପ୍ରବନ୍ଧରେ କେତେକ ଲେଖକଙ୍କ ଲେଖାକୁ ଉପଜୀବ୍ୟ କରି ଇତିହାସ ଭିତ୍ତିକ ସଂକ୍ଷିପ୍ତ ଆଲୋଚନା କରାଯାଇଛି । ପ୍ରକୃତି ଯେତେବେଳେ ବାସନ୍ତୀ ସୁଷମାରେ ସୁଷମାମୟତା, ଅନଙ୍ଗର ଲୀଳାଗାର ଧରଣୀ ଯେତେବେଳେ ମଧୁ ମାସରେ ମଧୁଗର୍ଭା, ସ୍ଥାବର ଜଙ୍ଗମ ସମସ୍ତେ ଯେତେବେଳେ ଆହ୍ଲାଦ ମଦିରା-ପାନରତା, ଚନ୍ଦ୍ରିକା ବିଧୌତ ଫାଲ୍‌ଗୁନ ପୌର୍ଣ୍ଣମାସୀ ରଜନୀ ଯେତେବେଳେ ମଳୟ ଦୋଳରେ କୋକିଳ ସହ କ୍ରୀଡ଼ାତତ୍ପରା, 'ହୋଲି' ବା 'ହୋରି' ବର୍ଷକେ ଥରେ ଠିକ୍ ଏହି ଶୁଭଲଗ୍ନରେ ଆର୍ଯ୍ୟଭୂମି ଭାରତରେ ତାର ଅଳସ ପଦ ପକାଏ ।

ଐତିହାସିକଙ୍କ ମତରେ 'ହୋଲି' ବୈଦିକ ଯୁଗରେ ଆରମ୍ଭ । ସେ ଯୁଗର 'ନବଶସ୍ୟଯଜ୍ଞ' ଏହି ଫାଲ୍‌ଗୁନ୍ ମାସ ଶେଷ ଭାଗରେ ହିଁ ପାଳିତ ହେଉଥିଲା । ଆର୍ଯ୍ୟ ଶବ୍ଦର ଅର୍ଥ 'କୃଷିକାର୍ଯ୍ୟ' ଓ ଏହି କୃଷି-ଜୀବୀଗଣ ଶସ୍ୟ ଅମଳ ପରେ ଆନନ୍ଦ ମନରେ ଏ ପ୍ରକାର ଏକ ଗଣ-ଉତ୍ସବ ମାଧ୍ୟମରେ ବସନ୍ତ ଆବାହନ କରିବା ସଙ୍ଗେ ସଙ୍ଗେ ନାନାବିଧ ହାସ୍ୟକୌତୁକରେ ମାତୁଥିଲେ । ଅନ୍ୟମାନେ ବିଶେଷତଃ 'ପ୍ରକୃତି' ପୂଜକ ନ ଥିବାରୁ ଅଗ୍ନି, ସୂର୍ଯ୍ୟ, ଇନ୍ଦ୍ର, ବରୁଣ ଓ ଅନ୍ୟାନ୍ୟ ଦେବତାଙ୍କୁ ପୂଜା କରୁଥିଲେ । ସୂର୍ଯ୍ୟଙ୍କର ପରିବର୍ତ୍ତିତ ଗତିକୁ କେନ୍ଦ୍ର କରି

ସେମାନଙ୍କର ନୂତନ ବର୍ଷ ଆରମ୍ଭ ହେଉଥିଲା । ଦୋଳ ଏହି ଶବ୍ଦ ('ଦୋଲ୍ୟତେ ଇତି ଦୋଳଃ )''ର ଅର୍ଥ ଦୋଳନ ( Oscillation ) ଓ ଯାହା ଅର୍ଥ ଗତି ( Movement ) । ଏଣୁ ସୂର୍ଯ୍ୟଙ୍କର ମଧ୍ୟ ଯାହା ଏହି ସମୟରେ ଉତ୍ତରାଭିମୁଖୀ ହୁଏ । ଅନନ୍ତ ଅନ୍ତରୀକ୍ଷ ମାର୍ଗରେ ସୂର୍ଯ୍ୟଙ୍କ ଏହି ଅଗ୍ରଗାମୀ ଯାତ୍ରା ଦୋଳ ବା ହୋଲି ପର୍ବର ମୂଳହେତୁ ପଣ୍ଡିତମାନଙ୍କ ମତରେ ସୂର୍ଯ୍ୟଙ୍କ ରଥ ସ୍ୱର୍ଣ୍ଣବର୍ଣ୍ଣ । ଉଦୟକାଳୀନ ସୂର୍ଯ୍ୟଙ୍କର କିରଣ ମଧ୍ୟ ଲାଲ । ଏଣୁ 'ହୋଲି'ରେ ବା ଦୋଳ ପର୍ବରେ ବ୍ୟବହୃତ ଅବିର ଓ ରଙ୍ଗ ଖେଳାଯାଏ । ସେହି ସୂର୍ଯ୍ୟ ପୂଜାର ସଙ୍କେତ ।

ହୋଲିର ପ୍ରଥମ ବର୍ଣ୍ଣନା ଦେଖିବାକୁ ମିଳେ ସପ୍ତମ ଶତାବ୍ଦୀର ଅନ୍ୟତମ ନାଟ୍ୟକାର ଓ କବିସମ୍ରାଟ ହର୍ଷଙ୍କ ଲିଖିତ ରତ୍ନାବଳୀରେ । ତାଙ୍କ ସମସାମୟିକ ଦଣ୍ଡୀ ମଧ୍ୟ 'ଦଶକୁମାର ଚରିତ'ରେ ହୋଲିର ବର୍ଣ୍ଣନା କରିଛନ୍ତି । ଏ ଦୁହିଙ୍କଠାରୁ ଆହୁରି ପ୍ରାଚୀନତରେ ଗଣ୍ୟ ମହର୍ଷି ବାତ୍ସ୍ୟାୟନଙ୍କ 'କାମସୂତ୍ର'ର ଚତୁର୍ଥ ଅଧ୍ୟାୟରେ ନାଗରିକମାନଙ୍କର ଯେଉଁ ଜୀବନ ଚିତ୍ର ଦିଆଯାଇଛି ସେଥିରେ ପାଠକ ୧୭ଟି ବିଭିନ୍ନ ପର୍ବ ପର୍ବାଣି ଦେଖିବାକୁ ପାଏ । ସେଥିରେ ମଧ୍ୟ ମଦନ ମହୋତ୍ସବ (ବସନ୍ତ ଋତୁର) ପରେ ହୋଲି ଏକ ଜନପ୍ରିୟ ବସନ୍ତ ଉତ୍ସବ ବୋଲି ସ୍ପଷ୍ଟ ଉଲ୍ଲେଖ ଅଛି । ମହାକବି କାଳିଦାସ ଶୃଙ୍ଗାର ବର୍ଣ୍ଣନାରେ ବାତ୍ସ୍ୟାୟନଙ୍କ କାମସୂତ୍ର ଅନୁଯାୟୀ ଲିଖିତ । ପୁନଶ୍ଚ 'ସୁବନ୍ଧୁ' ମଧ୍ୟ ସିଧାସଳଖ ବାତ୍ସ୍ୟାୟନଙ୍କ କାମସୂତ୍ର ସମ୍ବନ୍ଧରେ ଉଲ୍ଲେଖ କରିଅଛନ୍ତି । ଏ ଦୁଇଜଣ ଯଦି ଚନ୍ଦ୍ରଗୁପ୍ତ ୨ୟଙ୍କର ଗୁପ୍ତଯୁଗର ସମସାମୟିକ ବୋଲି ଇତିହାସସମ୍ମତ, ତେବେ ଏ ଦୁହିଁଙ୍କ ପୂର୍ବବର୍ତ୍ତୀ ରୂପେ ପରିଚିତ । ପଞ୍ଚମ ଶତାବ୍ଦୀ ପୂର୍ବରୁ ମଧ୍ୟ ବାତ୍ସ୍ୟାୟନ ଜୀବିତ ଥିବାର ଅର୍ଥାତ୍ 'ହୋଲି' ପର୍ବ ଗୁପ୍ତଯୁଗ ପୂର୍ବେ ( ଖ୍ରୀ: ୩୦୦ରୁ ୫୦୦ ) ମଧ୍ୟ ଜନପ୍ରିୟତା ଅର୍ଜନ କରିଥିବାର ଜଣାଯାଏ ।

ବିଦେଶୀ ପରିବ୍ରାଜକଗଣ ଏହି ହୋଲିର ଜୀବନ୍ତ ବର୍ଣ୍ଣନା କରିଯାଇଛନ୍ତି । ଏହି ବିବରଣୀ ଗୁଡ଼ିକରୁ ମଧ୍ୟ ପର୍ବଟିର ଐତିହାସିକତା ସହ ପ୍ରାଚୀନତା ସମ୍ବନ୍ଧରେ ସ୍ପଷ୍ଟ ଧାରଣା ମିଳେ ।

ଏକାଦଶ ଶତାବ୍ଦୀରେ ପ୍ରସିଦ୍ଧ ବିଦେଶୀ ପର୍ଯ୍ୟଟକ ଆଲ୍‌ବିରୁଣୀ ଜଣେ ଐତିହାସିକ ଥିଲେ । ସେ ଲେଖିଛନ୍ତି, ଏହି ଉତ୍ସବ ମହା-ଆଡ଼ମ୍ବରରେ କଣ୍ଠ ଉଚ୍ଛୁଳା ଗୀତ ଓ ମନମତାଣିଆ ନୃତ୍ୟ ସହ ନାନା ହାସପରିହାସରେ ପାଳିତ ହୁଏ । ଆଲବିରୁଣୀ ଏହି ଉତ୍ସବକୁ 'ଓଥବାଦ' ବା 'ଙ୍ଗୋଲ' ବୋଲି କେହି କେହି କହୁଥିବାର ସେ ଲେଖିଛନ୍ତି । ସମ୍ଭବତଃ ଭୁଲବଶତଃ ସେ 'ଦୋଳ'କୁ 'ଦୋଲ' ବୋଲି ଲେଖିଛନ୍ତି ଓ ଅଗ୍ନିଉତ୍ସବ ଅନୁଷ୍ଠିତ ହେଉଥିବାର ସୂଚନା ଦେଇ ଅଛନ୍ତି । ଏହାଛଡ଼ା ବସନ୍ତ ଉତ୍ସବ 'ବସନ୍ତ' ସ୍ୱତନ୍ତ୍ର ପାଳିତ ହେଉ ଥିବାରୁ ଏହାର ଅନ୍ୟନାମ ମହାବିଷ୍ଣୁ ଥିବାର ଉଲ୍ଲେଖ କରିଛନ୍ତି ।

ଆଲବିରୁଣୀଙ୍କ ପରେ ହୋଲି ସମ୍ବନ୍ଧରେ ଏକ ଚମତ୍କାର ବର୍ଣ୍ଣନା ଆମେ ଦେଖୁ ଐତିହାସିକ 'ନିକୋଲି'ଙ୍କ ଲେଖାରେ । ଦକ୍ଷିଣର ହିନ୍ଦୁ ରାଜା ବିଜୟନଗରରେ ୩ଦିନ ଧରି ଏହା ପାଳିତ ହେଉଥିବାର ସେ ଲେଖିଛନ୍ତି । ରଙ୍ଗିନ୍ ଜଳ ସବୁ ପଥିକଙ୍କ ଉପରେ ନିକ୍ଷେପ କରାଯାଏ । ରାଜାରାଣୀ କେହି ବାଦ୍ ଯାଆନ୍ତି ନାହିଁ । ସମସ୍ତେ ଖୁସିରସରେ ମାତନ୍ତି । ରାସ୍ତାର ଦୁଇ ପାର୍ଶ୍ୱରେ ଠାଏ ଠାଏ ଜଳ ସଞ୍ଚିତ ହୋଇ ରହିଥାଏ ।

ଆଇନ୍ ଆକବ୍‌ରୀର ୩ୟ ଭାଗ ୩୨୧ ପୃଷ୍ଠାରେ ଆବୁଲଫାଜଲ ଲେଖିଛନ୍ତି । ହୋଲି ଏକ ପ୍ରାଚୀନ ପର୍ବ ଓ ଏହି ସମୟରେ ହସ ଖୁସି ନାଚ ଗୀତ ଭୋଜି ଚାଲିଥାଏ । ଆକବର ମଧ୍ୟ ହିନ୍ଦୁଙ୍କ ହୋଲି ପର୍ବରେ ବିଶେଷ ଭାଗ ନେଉଥିଲେ । ଜାହାଙ୍ଗୀର, ଆଉରଙ୍ଗଜେବ ପ୍ରଭୃତି ପରବର୍ତ୍ତୀ ମୋଗଲ ସମ୍ରାଟଗଣ ଏହାକୁ ପସନ୍ଦ କଲେ ମଧ୍ୟ ହୋଲି ମନା ମାନି ନ ଥିଲେ । ପରବର୍ତ୍ତୀ ବହୁ ବିଦେଶୀ ପରିବ୍ରାଜକ ହାମିଲଟନ୍, ଫେରୁମୁଣ୍ଡୀ ପ୍ରମୁଖ ଉକ୍ତ ଉତ୍ସବର ଭୂୟସୀ ବର୍ଣ୍ଣନା କରି ଯାଇଅଛନ୍ତି । ସମ୍ରାଟ୍ ଜାହାଙ୍ଗୀର ମଧ୍ୟ ନିଜ ଆତ୍ମଜୀବନୀରେ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି, "ବର୍ଷର ଏହା ଶେଷ ଭାଗକୁ ପରିବ୍ୟକ୍ତ ହୁଏ ।" ଆଉରଙ୍ଗ୍‌ଜେବ୍‌ଙ୍କ ବଡ଼ଭାଇ, ଦାରା ସୁକସ୍ ମଧ୍ୟ ଏହି ହୋଲି ଉତ୍ସବରେ ଯୋଗ ଦେଇଥିଲେ ।

କର୍ଣ୍ଣେଲ ସମ୍ରାଟ ଜେମସ୍ ଟଡ଼ଙ୍କ ଲେଖାରେ ହୋଲିର ବିବରଣୀ ସବୁଠାରୁ ବେଶୀ ଜୀବନ୍ତ ଓ ସ୍ପଷ୍ଟ । ଊନବିଂଶ ଶତାବ୍ଦୀରେ ରାଜପୁତନାରେ ଏହା ପାଳିତ ହେବାର ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—କପରି ଫାଲ୍‌ଗୁନ ପ୍ରବେଶିଲା ମାତ୍ରେ ଦଳଦଳ ହୋଇ ଯୁବକ ପାଟିଭୁଣ୍ଡ କରି ଗଳିକନ୍ଦିରେ ଧାଁ ଧପଡ଼ କରନ୍ତି, ଯାହା ଦାଣ୍ଡି ସବୁ ସମେ ସମେ ଉଚ୍ଛୁଳ ଉଠେ । ଅବିରଗୁଣ୍ଡ ହାତରେ ଧରି ସମସ୍ତେ ସମସ୍ତଙ୍କୁ ଫୋପାଡ଼ନ୍ତି । ପିଚକାରୀରେ ନାଲିପାଣି ପୂରେଇ ଏଣେ ତେଣେ ଧାଆନ୍ତି । ଘୋଡ଼ା ପିଠିରେ ବସି ସୈନ୍ୟ ଓ ସେନାପତିମାନେ ଏକାଠି ହୁଅନ୍ତି । ସମସ୍ତଙ୍କୁ ଗୋଟିଏ ଗୋଟିଏ ଥାଳି ଅବିର ଓ ଅଭ୍ର ଯୋଗାଇ ଦିଆଯାଏ । ଛପୂରେ ପରସ୍ପର ମଧ୍ୟରେ ଫୋପଡ଼ା ଫୋପଡ଼ି ଆରମ୍ଭ ହୁଏ । ଏହା ଠିକ୍ ରୋମ୍‌ର "ସାଟିର ନାଲିଆ" ପର୍ବପରି ଜଣାଯାଏ ।

ସମ୍ରାଟ ବିକ୍ରମାଦିତ୍ୟ ଶକ୍‌ମାନଙ୍କ ଉପରେ ବିଜୟ ହାସଲ କରି ଫାଲ୍‌ଗୁନ ପୂର୍ଣ୍ଣିମାଦିନ ସଫଳ କାମ ହୋଇଥିବାରୁ "ହୋଲିକା" ବା ହୋଲି ଉତ୍ସବ ଅନୁଷ୍ଠିତ ହୋଇ ଆସୁଥିବାର କେତେକ ମଧ୍ୟ ମତବ୍ୟକ୍ତ କରନ୍ତି ।

ହୋଲି ବୈଦିକ ଯୁଗର ଆରମ୍ଭ ହୋଇଥିଲେ ମଧ୍ୟ ଏଥିରେ ବ୍ୟବହୃତ କାଦୁଅ ପିଙ୍ଗା, ଅଶ୍ଳୀଳ ଗୀତ ବୋଲା, ଅସଂଗତ ନାଚଗୀତ ଅନାର୍ଯ୍ୟ ସଂସ୍କୃତି ବୋଲି କହନ୍ତି ।

ବର୍ଷକେ ୩୬୫ ଦିନରୁ ଏହି ଗୋଟିଏ ଦିନ ଲୋକ ଏତେ ଅସ୍ଥିର, ଅସଂଯତ ଓ ଅନିୟନ୍ତ୍ରିତ ହେଉଥିବାର ବଙ୍ଗଳା ବିଶ୍ୱକୋଷରେ ଲେଖାଅଛି—"ଆବାଲ ବୃଦ୍ଧବନିତା ମାନସମ୍ଭ୍ରମ ବିସର୍ଜନଦିଯ୍ବା, ଏହି ଉତ୍ସବେ ଉନ୍ମତ୍ତ ହୋଇୟା ଥାକେ । ଆବିର ମାଖିଆଁ ନାନାରଙ୍ଗେ ଭୂଷିତ ହଇୟା, ଅକଥ୍ୟ ଭାଷାୟ ଗାନା ଗାଇୟା ମାଦଲା ବଜାଇୟା ସ୍ତ୍ରୀ ପୁରୁଷ ପଥେ ପଥେ ବେଡ଼ାଇୟା ଥାକେ । ଏ ରୂପ ହୋଟା ହୋଟି, ଏରୂପ ଲ୍ଲୋଟାଲ୍ଲୋଟୀ, ରୂପ ମାତାମାତି ହିନ୍ଦୁର ଆଉ କୋନ ଉତ୍ସବେ ଦେଖାଯାଏନା ।"

(ବିଶ୍ୱକୋଷ ନବମ ଖଣ୍ଡ ପୃଷ୍ଠା—୬୧)

ଅବଶ୍ୟ ନାଚ, ଗୀତ, ମଜଜମଜଲିସ୍ ପଞ୍ଚାନ୍ତରରେ ଶାସ୍ତ୍ର-ସମ୍ମତ । କାରଣ ଉଲ୍ଲେଖ ଅଛି—

"ଗୀତୈଃ ବାଦ୍ୟୈଶ୍ଚ ନୃତ୍ୟୈଶ୍ଚ ଚରେତ୍ ବାସନ୍ତକୋତ୍ସବେ ।
ଫାଲ୍‌ଗୁନେ ଚ ସିତେ ପକ୍ଷେ ଭୈଷଜ୍ୟ ପାଂଶୁ ଯୋଗତଃ'

ତଥାପି ଏ ଦଗରେ ସ୍ମରଣୀୟ ଫଗୁଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅବିର ସେବନ ମୂଳରେ ପରସ୍ପର ପ୍ରତି ଯେଉଁ ସୌଜନ୍ୟ, ସ୍ନେହ ଓ ଶ୍ରଦ୍ଧା ଦେଖାଯାଏ 'ପାହା ସ୍ୱାସ୍ଥ୍ୟରକ୍ଷାଦୃଷ୍ଟିରୁ ବସ୍ତୋଃକ ପ୍ରତିକାରକ ହେଲେ ମଧ୍ୟ ପରସ୍ପରକୁ ପିଚକାରୀରେ ମନ ଆନନ୍ଦରେ ରଙ୍ଗବେରଙ୍ଗ କରିବା ମୂଳରେ ବର୍ଷକେ ଗୋଟିଏ ଦିନ ଅନ୍ତତଃ ଜାଗ୍ରତ ସଦ୍‌ଭାବ ସମ୍ବନ୍ଧରେ ଚେତାଇ ଦିଏ । 'ପାଶୁ' ଶବ୍ଦର ଅର୍ଥ ରଜ ବା ଧୂଳି । ଅବିରକୁ ଏଠାରେ 'ଭୈଷଜ୍ୟ ପାଂଶୁ' ବୋଲି ଗ୍ରହଣ କରାଯାଇଅଛି ।



# ଚାନ୍ଦ୍ର-ପର୍ବ

**୧ ଚୈତ୍ର**—କୃଷ୍ଣପକ୍ଷ ୧-ବସନ୍ତୋତ୍ସବ, କୃ ୬-ସ୍କନ୍ଦ ଷଷ୍ଠୀ, କୃ୧୧-ପାପମୋଚନୀ ଏକାଦଶୀ, ଶୁକ୍ଳପକ୍ଷ-୧-ନବବର୍ଷାରମ୍ଭ,ଶୁ ୮-ଅଶୋକାଷ୍ଟମୀ, ଶୁ ୯-ରାମନବମୀ, ରାମଜୟନ୍ତୀ, ଶୁ ୧୧-କାମଦା ଏକାଦଶୀ, ଶୁ୧୨-ଦମନୋତ୍ସବ, ଶୁ ୧୩-ଅନଙ୍ଗ ତ୍ରୟୋଦଶୀ, ମହାବୀର ଜୟନ୍ତୀ, ଶୁ୧୪-ମଦନଭଞ୍ଜି, ଦମନକ ଚତୁର୍ଦ୍ଦଶୀ, ଶୁ୧୫-ଚୈତ୍ରୀ ପୂର୍ଣ୍ଣିମା, ହନୁମାନ ଜୟନ୍ତୀ ।

**୨ ବୈଶାଖ**—କୃ୧୧-ବରୁଥିନୀ ଏକାଦଶୀ, ଶୁ୩-ଅକ୍ଷୟ-ତୃତୀୟା, ଚନ୍ଦନ ଯାତ୍ରା, ପରଶୁରାମ ଜୟନ୍ତୀ, ଶୁ୫-ଶଙ୍କର ଜୟନ୍ତୀ, ଶୁ୭-ଗଙ୍ଗୋତ୍ପତ୍ତି, ଜହ୍ନୁ ସପ୍ତମୀ, ଶର୍କର ସପ୍ତମୀ; ଶୁ୯-ସୀତାନବମୀ, ଶୁ୧୧-ମୋହିନୀ ଏକାଦଶୀ, ପର୍ଶୁରାମ ଏକାଦଶୀ, ଶୁ୧୨-ପର୍ଶୁରାମ ଦ୍ୱାଦଶୀ, ରୁକ୍ମିଣୀ ଦ୍ୱାଦଶୀ; ଶୁ୧୪-ନୃସିଂହ ଚତୁର୍ଦ୍ଦଶୀ, ଶୁ୧୫-ସମ୍ପତ୍ତି ଗୌରୀବ୍ରତ, ବୁଦ୍ଧ ପୂର୍ଣ୍ଣିମା, ବୈଶାଖୀ ପୂର୍ଣ୍ଣିମା ।

**୩ ଜ୍ୟେଷ୍ଠ**—କୃ୧୧-ଅପରା ଏକାଦଶୀ, ଜଳକ୍ରୀଡ଼ା ଏକାଦଶୀ, ଅମାବାସ୍ୟ—ବଟ ସାବିତ୍ରୀ ବ୍ରତ, ସାବିତ୍ରୀ ଅମାବାସ୍ୟା, ଶୁ୩-ରମ୍ଭା ତୃତୀୟା, ଶୁ୪-ଉମା ଚତୁର୍ଥୀ, ଶୁ୫-ମହାଦେବ ବିବାହ, ଶୁ୬-ଆରଣ୍ୟ ଷଷ୍ଠୀ, ଆରଣ୍ୟ ଗୌରୀବ୍ରତ, ଶୀତଳ ଷଷ୍ଠୀଯାତ୍ରା, ଶୁ୧୦-ଗଙ୍ଗା ଦଶହରା ଶୁ୧୧-ନିର୍ଜଳା ଏକାଦଶୀ, ଦେବ ବିବାହ ଏକାଦଶୀ, ଶୁ୧୨-ଶ୍ରୀରାମ ଦ୍ୱାଦଶୀ, ଚମ୍ପକ ଦ୍ୱାଦଶୀ, ଶୁ୧୫-ଦେବସ୍ନାନ ପୂର୍ଣ୍ଣିମା ।

**୪ ଆଷାଢ଼**—କୃ୧୧-ଯୋଗିନୀ ଏକାଦଶୀ, ଶୁ୨-ରଥଯାତ୍ରା, ଶୁ୫-ସ୍କନ୍ଦପଞ୍ଚମୀ, ଶୁ୮-ପର୍ଶୁରାମାଷ୍ଟମୀ; ଶୁ୧୦-ପୁନର୍ଯାତ୍ରା (ବାହୁଡ଼ା), ଶୁ୧୧-ହରିଶୟନୀ ଏକାଦଶୀ, ଶୁ୧୨-ବିଷ୍ଣୁଶୟନୋତ୍ସବ, ଶୁ୧୪-ଶିବଶୟନ ଚତୁର୍ଦ୍ଦଶୀ, ଶୁ୧୫-ଗୁରୁପୂର୍ଣ୍ଣିମା, ବ୍ୟାସପୂଜା ।

୫ ଶ୍ରାବଣ—କୃ ୫-ନାଗ ପଞ୍ଚମୀ ବା ମନସା ପଞ୍ଚମୀ, କୃ୭-ଶୀତଳା, ସପ୍ତମୀ·କୃ୧୧-କାମିକା ଏକାଦଶୀ, ଅମାବାସ୍ୟା ଚିତାଉ ଅମାବାସ୍ୟା, ଶୁ୫ ନାଗଚ ଗୌଶ୍ର ପଞ୍ଚମୀ, ଶୁ୧୧-ପୁତ୍ରଦା ଏକାଦଶୀ, ଝୁଲଣଯାତ୍ରା, ଶୁ୧୨-ଭକ୍ତ ପବିତ୍ରା ରୋପଣ ଦ୍ୱାଦଶୀ; ଶୁ୧୩-ଆଖେଟକ ତ୍ରୟୋଦଶୀ, ଶୁ୧୪-ଶିବ ପବିତ୍ରାରୋପଣ, ଶୁ୧୫-ରକ୍ଷୀପୂର୍ଣ୍ଣିମା ବା ଗହ୍ମା-ପୂର୍ଣ୍ଣିମା, ରକ୍ଷାବନ୍ଧନ, ଋଷିତର୍ପଣ, ହୟଗ୍ରୀବ ଜୟନ୍ତି, ଝୁଲଣଯାତ୍ରା ସମାପନ, ବଳଭଦ୍ର ପୂଜା, ଉପାକର୍ମ ।

୭ ଭାଦ୍ରବ—କୃ୩-ଅଙ୍ଗଭେଟ ତୃଣୀୟା, କୃ୫-ରକ୍ଷାପଞ୍ଚମୀ ବା ରେଖା ପଞ୍ଚମୀ, କୃ୮-ଜନ୍ମାଷ୍ଟମୀ, କୃ୧୧-ଅଜା ଏକାଦଶୀ, ଶ୍ରୀଜଗନ୍ନାଥଙ୍କ କାଳୀୟ ଦଳନ ବେଶ, କୃ୧୨-ଜଗନ୍ନାଥଙ୍କ ପ୍ରଲମ୍ବାସୁର ବଧ ବେଶ, କୃ୧୩-ଜଗନ୍ନାଥ ବଳଭଦ୍ରଙ୍କ କୃଷ୍ଣ ବଳରାମ ବେଶ, କୃ୧୪ ଅଘୋର ଚତୁର୍ଦ୍ଦଶୀ, ଅମାବାସ୍ୟା, ସାତପୁରି ଅମାବାସ୍ୟା, ବୁଧେଇଓଷା ଶୁ୩-ବାଲତୃଣୀୟା, ଗୌରୀବ୍ରତ, ଶୁ୪-ବରଦା ଚତୁର୍ଥୀ, ସୌଭାଗ୍ୟ ଚତୁର୍ଥୀ, ଶୁ୫-ଋଷି ପଞ୍ଚମୀ, ଶୁ୬-ଷଷ୍ଠୀଓଷା, ସୋମନାଥବ୍ରତ ଆରମ୍ଭ, ଶୁ୭-ଲଳିତା ସପ୍ତମୀ, ଶୁ୮-ଦୁର୍ବାଷ୍ଟମୀ କୁକୁଟୀବ୍ରତ, ଦୁର୍ଗାଶସ୍ତୁନାଷ୍ଟମୀ, ଶୁ୯-ନନ୍ଦା ନବମୀ, ତାଳନବମୀ, ଶୁ୧୧-ପାର୍ଶ୍ୱ ପରିବର୍ତ୍ତନ ଏକଦଶୀ, ବଳି ବାମନ ବେଶ, ସୁନିଆ, ଶୁ୧୪-ଅନନ୍ତ ଚତୁର୍ଦ୍ଦଶୀ, ଶୁ୧୫-ଇନ୍ଦ୍ରଗୋବିନ୍ଦ ପୂଜା ଛତ୍ରୋତ୍ସବ, ଭଗବତ ଜନ୍ମ ।

୭ ଆଶ୍ୱିନ—କୃ୧-ଅପରପକ୍ଷ ବା ମହାଳୟାରମ୍ଭ, କୃ୫-ଅଶ୍ବପଞ୍ଚମୀ, କୃ୬-ଗଜଷଷ୍ଠୀ, କୃ୮-ଜୀମୁତବାହନ ପୂଜା ( ଦୁତିଆ ଓଷା ), ମୂଳାଷ୍ଟମୀ, କୃ୧୧-ଇନ୍ଦିରା ଏକାଦଶୀ, କୃ୧୩-ମଘା ତ୍ରୟୋଦଶୀ ଅମାବାସ୍ୟା-ମହାଳୟା ଅମାବାସ୍ୟା, ଶୁ୧-ନବରାତ୍ରାରମ୍ଭ, ଶୁ୬-ଦୁର୍ଗାଷଷ୍ଠୀ, ଚପଃ ଷଷ୍ଠୀ, ଶୁ ୭-ଦୁର୍ଗା ସପ୍ତମୀ, ଶୁ ୮-ମହାଷ୍ଟମୀ, ଶୁ ୯-ମହାନବମୀ ଶୁ ୧୦-ବିଜୟା ଦଶମୀ ( ଦଶହରା ), ଶୁ୧୧-ପାଶାଙ୍କୁଶା ଏକାଦଶୀ, ଶୁ୧୨-ପଦ୍ମନାଭ ଦ୍ୱାଦଶୀ, ଗୋ ଦ୍ୱାଦଶୀ, ଶୁ୧୫-କୋଜାଗର ଲକ୍ଷ୍ମୀ-ପୂର୍ଣ୍ଣିମା, କୁମାର ପୂର୍ଣ୍ଣିମା ।

**୮ କାର୍ତ୍ତିକ**— କୃ୧-କାର୍ତ୍ତିକବ୍ରତାରମ୍ଭ, କୃ୧୧-ରମାଏକାଦଶୀ, କୃ୧୨-ଗୋବତ୍ସ ଦ୍ୱାଦଶୀ, କୃ୧୪-ନରକ ଚତୁର୍ଦ୍ଦଶୀ, ଭୂତଚତୁର୍ଦ୍ଦଶୀ, ଦୀପ ଦାନ, ଅମାବାସ୍ୟା—କାଳୀପୂଜା, ଦୀପାବଳୀ ବା ଦିଓ୍ୱାଲି, ମହାଲକ୍ଷ୍ମୀ ପୂଜା, ଶୁ୧-ଗୋବର୍ଦ୍ଧନ ପୂଜା, ଅନ୍ନକୂଟ, ବଳିଦୈତ୍ୟରାଜ ପୂଜା, ଶୁ୨-ଭ୍ରାତୃଦ୍ୱିତୀୟା, ଯମଦ୍ୱିତୀୟା, ଶୁ୪-ନାଗଚତୁର୍ଥୀ, ଶୁ୮-ଗୋପାଷ୍ଟମୀ, ଗୋଷ୍ଠାଷ୍ଟମୀ, ଶୁ୯ ଅଁଳାନବମୀ, ଶୁ ୧୧-ଭୀଷ୍ମ ପଞ୍ଚକ, ଦେବୋତ୍ଥାପନ ଏକାଦଶୀ, ଶୁ୧୨-ଗରୁଡ଼ ଦ୍ୱାଦଶୀ, ଶୁ୧୪-ଶିବୋତ୍ଥାପନ ଚତୁର୍ଦ୍ଦଶୀ, ବଡ଼ଓଷା, ଶୁ୧୫-ରାସଯାତ୍ରା, କାର୍ତ୍ତିକୀ ପୂର୍ଣ୍ଣିମା, ବୋଇତ ବନ୍ଦାଣ ଉତ୍ସବ ।

**୯ ମାର୍ଗଶିର**—କୃ୮-ପ୍ରଥମାଷ୍ଟମୀ, କୃ୯-କାଞ୍ଜିଅଁଳାନବମୀ, କୃ୧୧-ଉତ୍ପନ୍ନା ଏକାଦଶୀ, କୃ ୧୪-ଘୃତକମ୍ବଳ ଚତୁର୍ଦ୍ଦଶୀ, ଶୁ ୫-କୁଳାଚଳ ପଞ୍ଚମୀ, ଶୁ ୬-ଓଢ଼ଣଷଷ୍ଠୀ, ପ୍ରାବରଣ ଷଷ୍ଠୀ ଶୁ ୧୧-ମୋକ୍ଷଦା, ଏକାଦଶୀ ଶୁ ୧୨-ବ୍ୟଞ୍ଜନଦ୍ୱାଦଶୀ, ଶୁ୧୩-ହନୁମାନ୍ ବ୍ରତ, ଶୁ୧୪-ପାଷାଣ ଚତୁର୍ଦ୍ଦଶୀ, ଶୁ୧୫-ଦତ୍ତାତ୍ରେୟୋତ୍ପତ୍ତି ( ପ୍ରଦୋଷ )

**୧୦ ପୌଷ**—କୃ୨-ଦାଣ୍ଡପହଁରା ଓ ବାଟଓଷା, କୃ୧୧-ସଫଳା ଏକାଦଶୀ, ଅମାବାସ୍ୟା—ବକୁଳ ଅମାବାସ୍ୟା ଓ ବରାହଜନ୍ମ, ଶୁ୧୦-ଶାମ୍ବଦଶମୀ, ସୂର୍ଯ୍ୟପୂଜା, ଶୁ୧୧-ପୁତ୍ରଦା ଏକାଦଶୀ, ଶୁ୧୨-କୂର୍ମଦ୍ୱାଦଶୀ ଶୁ୧୫-ପୁଷ୍ୟାଭିଷେକଯାତ୍ରା ।

**୧୧ ମାଘ**—କୃ୪-ସଙ୍କଟଚତୁର୍ଥୀ, କୃ୧୧-ଷଟ୍‌ତିଳା ଏକାଦଶୀ, କୃ ୧୪-ରଟନ୍ତୀ-ଚତୁର୍ଦ୍ଦଶୀ, ଯମତର୍ପଣ, ଅମାବାସ୍ୟା—ତ୍ରିବେଣୀ ଅମାବାସ୍ୟା, ଶୁ୨-ଜଗନ୍ନାଥଙ୍କ ପଦ୍ମବେଶ, ଶୁ୪-କୁନ୍ଦଚତୁର୍ଥୀ, ବରଦା ଗଣେଶ ଚତୁର୍ଥୀ, ଶୁ୫-ଶ୍ରୀପଞ୍ଚମୀ, ସରସ୍ୱତୀ ପୂଜା, ବସନ୍ତପଞ୍ଚମୀ, ମଦନ ପଞ୍ଚମୀ, ଶୁ୭-ମାଘ ସପ୍ତମୀ, ଚନ୍ଦ୍ରଭାଗା ସ୍ନାନ, ଭୀଷ୍ମାଷ୍ଟମୀ ଶୁ୯-ମହାନନ୍ଦାନବମୀ ଶୁ୧୧-ଜୟା ଏକାଦଶୀ, ଭୈମୀ ଏକାଦଶୀ, ଶୁ୧୨-ବରାହ ଦ୍ୱାଦଶୀ ଶୁ୧୫-ମାଘୀପୂର୍ଣ୍ଣିମା, ଅଗ୍ନିଉତ୍ସବ (ରଜି), ଜଗନ୍ନାଥଙ୍କ ଗଜ ଉଦ୍ଧାରଣ ବେଶ, ଯୋରନ୍ଦା ମେଳ ।

୧୨ ଫାଲଗୁନ—କୃ୮-ସୀତାଷ୍ଟମୀ ( ସୀତାଙ୍କ ଜନ୍ମଦିନ ), କୃ୧୧-ବିଜୟା ଏକାଦଶୀ ବା ପଙ୍କୋଦ୍ଧାର ଏକାଦଶୀ, କୃ୧୪-ମହାଶିବ ରାତ୍ରି, ଶୁ୧୦-ଫଗୁଦଶମୀ, ଶୁ୧୧-ଅମଳକୀ ଏକାଦଶୀ, ଶୁ୧୨-ନୃସିଂହ ଦ୍ୱାଦଶୀ, ଗୋବିନ୍ଦ ଦ୍ୱାଦଶୀ, ଶୁ୧୫-ହୋଲିକାଦହନ, ପୂର୍ଣ୍ଣିମା, ଦୋଳ ଯାତ୍ରା, ହୋଳି, (ହୋଭ) (ହୋଲିକା ଦହନ ପରଦିନ)



# ସହାୟତା


୧ । ଭାରତୀୟ ବ୍ରତୋତ୍ସବ
୨ । ଗଦାଧର ପଦ୍ଧତି
୩ । ଶ୍ରୀ ମଢର ସମାଗ୍ରର
୪ । ଶ୍ରୀ କୃଷ୍ଣ ପୁରାଣ
୫ । ବ୍ରତାର୍କ
୬ । ଏକାମ୍ର ଚନ୍ଦ୍ରିକା
୭ । ଅଧ୍ୟାତ୍ମ ରାମାୟଣ
୮ । ମହାନାଟକ
୯ । ବାଲ୍ମୀକି ରାମାୟଣ
୧୦ । ରସିକ ହାରାବଳୀ
୧୧ । ପଲ୍ଲୀଗୀତି ସଞ୍ଚୟନ
୧୨ । ବ୍ରତବିଧାନ ପଦ୍ଧତି
୧୩ । ବର୍ଷକୃତ୍ୟ
୧୪ । ଓଡ଼ିଆ ଲୋକଗୀତ କାହାଣୀ
୧୫ । ରଜଦୋଳି ଗୀତ
୧୬ । ଓଡ଼ିଆ ମହାଭାରତ (ମୁରଲୀ ପର୍ବ)
୧୭ । ଅମର କୋଷ
୧୮ । ସାବିତ୍ରୀ ବ୍ରତକଥା
୧୯ । ଭାଷାକୋଷ
୨୦ । କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ
୨୧ । ସାଲବେଗଙ୍କ ଜଣାଣ
୨୨ । ବାମଦେବ ସଂହିତା
୨୩ । ଗୋ-ମାହାତ୍ମ୍ୟ
୨୪ । ଗୋ-ବିଳାପ
୨୫ । ରଘୁବଂଶ
୨୬ । ନୃସିଂହ ପୁରାଣ
୨୭ । ଭାଗବତ
୨୮ । ହରିବଂଶ
୨୯ । Festival and Holidays of India.
୩୦ । Cultural Heritage of India Vol—, Vol
୩୧ । Femina-ଅଗଷ୍ଟ’ ୭୫
୩୨ । ଉତ୍କଳ ଜର୍ଣ୍ଣାଲ, ଜୁଲାଇ,
୩୩ । ,, ସେପ୍ଟେମ୍ବର’ ୩’ ୭୨
୩୪ । ,, ସେପ୍ଟେମ୍ବର ୬’ ୭୦
୩୫ । ,, ଅଗଷ୍ଟ ୨୩, ୭୦
୩୬ । Report of the Calender Refoım Committee, (Year of India)
୩୭ । ବ୍ରହ୍ମବୈବର୍ତ୍ତ ପୁରାଣ
୩୮ । ଉତ୍କଳୀୟ ପର୍ବ ଓ ତାହାର ଉଦ୍ଦେଶ୍ୟ
୩୯ । ହିନ୍ଦୁ ଆଶ୍ରମର ବସ୍ତୁର
୪୦ । ମନୁସଂହିତା

## ମୁକ୍ତି ପ୍ରତୀକ୍ଷାରେ ଲେଖକଙ୍କ ଅନ୍ୟାନ୍ୟ ପୁସ୍ତକାବଳୀ

୧ । 'ତୁଳସୀ ଦୁଇପତ୍ରରୁ ବାସେ' ( ଶିଶୁ ସାହିତ୍ୟ )

୨ । ବଡ଼ ଧୁମୁଷୁ ଓ ସାନ ଧୁମୁଷୁ ଓ ଅନ୍ୟାନ୍ୟ ଗଳ୍ପ ( ଶିଶୁ ସାହିତ୍ୟ )

୩ । ପଶ୍ଚିମ ଓଡ଼ିଶାର ପର୍ବ ପର୍ବାଣି

୪ । ସାହିତ୍ୟିକ-ପ୍ରବନ୍ଧାବଳୀ ( ପତ୍ର-ପତ୍ରିକା ପ୍ରକାଶିତ ବିଭିନ୍ନ ପ୍ରବନ୍ଧ )

୫ । ଭାରତୀୟ ସଂସ୍କୃତିରେ 'କାଳ' ( ଆଲୋଚନା ମୂଳକ )

୬ । ଭଜନାବଳୀ—ଶ୍ରୀମତୀ କମଳାକୁମାରୀ ମହାନ୍ତି ।

